# ଜଗନ୍ନାଥ-ଚେତନାର ଉଦ୍ଭବ ଓ ବିକାଶ









ଡକ୍ଟର ବାସୁଦେବ ସାହୁ

# ଜଗନ୍ନାଥ ଚେତନାର ଉଦ୍ଭବ ଓ ବିକାଶ

ଡକ୍ଟର ବାସୁଦେବ ସାହୁ (ସ୍ୱବ୍ରତ)
ପ୍ରାଧ୍ୟାପକ, ଓଡ଼ିଆ ଭାଷା-ସାହିତ୍ୟ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ
ବାଣୀ ବିହାର, ଭୁବନେଶ୍ୱର

# ଜଗନ୍ନାଥ ଚେତନାର ଉଦ୍ଭବ ଓ ବିକାଶ


ଲେଖକ :

**ଡକ୍ଟର ବାସୁଦେବ ସାହୁ (ସୁବ୍ରତ)**

ରିଡର୍, ଓଡ଼ିଆ ବିଭାଗ

ଉତ୍କଳ ବିଶ୍ୱବିଦ୍ୟାଳୟ

ଭୁବନେଶ୍ୱର-୪



ପ୍ରକାଶିକା ଓ ସତ୍ତ୍ୱାଧିକାରିଣୀ :

**ଶ୍ରୀମତୀ ସତ୍ୟଶାନ୍ତି ସାହୁ**

ଗ୍ରାମ/ପୋ:ଅ:-ରଙ୍ଗଣୀ ପାଟଣା

ଭାୟା-ଓଡ଼ଗାଁ

ଜିଲ୍ଲା-ପୁରୀ

ପ୍ରଥମ ପ୍ରକାଶ :

ଶ୍ରୀଗୁଣ୍ଡିଚା ୧୯୮୧

ମୁଦ୍ରଣ :

ଏଲିଟ୍ ପ୍ରେସ୍

୧୯୪, ଶହୀଦ ନଗର

ପ୍ରଚ୍ଛଦପଟ :

ପ୍ରସନ୍ନ କୁମାର ବରାଳ



*Writer* :

**Dr. Basudeva Sahu** (Subrat)

Reader in Oriya

Utkal University

Bhubaneswar-4



*Publisher & Copyright* :

**Smt. Satya Shanti Sahu**

At/P.O.-Rangani Patna

Via-Orgaon

Dist-Puri

*First Edition* :

**Shree Gundicha, 1981**

*Printed by* :

**Elite Press**

194, Saheed Nagar

*Cover* :

**Prasanna Kumar Baral**

ମୂଲ୍ୟ ପନ୍ଦର ଟଙ୍କା

**Price : Fifteen Rupees**

*Paper used for this book was made available from the Government of Orissa at concessional rate.*

# ଉତ୍ସର୍ଗ

ଯାହା ପରସାଦ ତାକୁ ଅରପିଲେ
ହେବ ସିନା ଅପରାଧ
ତଥାପି ସେ ପଦେ ପ୍ରାଣ-ପରସାଦେ
ଅରପେ ସେ ପରସାଦ ।

ଜଗନ୍ନାଥ-ପଦ-ପଦ୍ମ-ଲଟ
ବାସୁଦେବ

# ସ୍ୱଭାଷ

ମୋ ଭିତରେ କିପରି ଜଗନ୍ନାଥ-ଚେତନାର ଉଦ୍‌ଭବ ଓ ବିକାଶ ଘଟିଲା, ତାର ଇତିବୃତ୍ତ ସଂକ୍ଷେପରେ କେଇ ପଦ ନ ଲେଖି ରହିପାରୁ ନାହିଁ । କୋମଳ ଶୈଶବ କଥା ମନେ ପଡୁଛି, ମୋ ବାପା ପ୍ରତିଦିନ ରାତିରେ ଶୋଇବା ପୂର୍ବରୁ ଜଗନ୍ନାଥଙ୍କୁ ଡ଼ାକନ୍ତି, "ଜଗନ୍ନାଥେ ହେ ! ମୋ ଏକୋଇଶବଳା ବିଷ୍ଣିକେଶନ ଆଗରେ କିମିତି ମୋ ଜୀବନ ଯାଉ ।" ମୋର କିଛି ରୋଗ-ବଇରାଗ ହେଲେ ମା ସ୍ମରଣ କରେ, "ହେ ଜଗନ୍ନାଥ ! ମୋ ଧନକୁ କିମିତି ଭଲ କରିଦିଅ ।" ଏ ଜଗନ୍ନାଥ କିଏ ଜାଣିବାକୁ ବ୍ୟାକୁଳତା ଜାଗୁଥାଏ । ଆଠ ବର୍ଷର ହୋଇଥିଲି, ଗାଁ ଠାରୁ ପ୍ରାୟ ୧୮୦ କିଲୋମିଟର ଦୂର ଶ୍ରୀକ୍ଷେତ୍ରକୁ ବାପା, ମା ଓ କେତେକ ଗ୍ରାମ-ବାସୀଙ୍କ ସହ ଶଗଡ଼ରେ ଆସିଥିଲି । ଶ୍ରୀକ୍ଷେତ୍ରରେ ପହଞ୍ଚିବାର ୮।୧୦ କିଲୋମିଟର ଦୂରରୁ ବାପା ମତେ ନାଲି ନେତ ଦେଖେଇ ଦେବାକୁ କାନ୍ଧରେ ବସେଇ ଦେଇ-ଥିଲେ । ମନ୍ଦିର ଭିତରକୁ ଯିବାବେଳେ ସିଂହଦ୍ୱାର, ପତିତପାବନ ଚିତ୍ର, ବାଇଶି ପାହାଚ, ବାଇଶି ପାହାଚ ଉପରେ ପ୍ରସାଦ ସେବନ ଦୃଶ୍ୟ, ପଣ୍ଡାମାନଙ୍କ ବେତ ମାଡ଼ ସବୁ ଏବେ ବି ସ୍ମୃତିରେ ଆସୁଛି । ପ୍ରଭୁଙ୍କର ଚକା ଚକା କଳା ଆଖି ମୋ ଶିଶୁ ମନକୁ ବାୟା କରି ଦେଇଥିଲା । ଫେରିଲାବେଳେ ବାପାଙ୍କୁ କହିଥିଲି, "ଜଗନ୍ନାଥଙ୍କର କେଡ଼େ କେଡ଼େ ଆଖି ।" ମନ୍ଦିରକୁ ଗଲେ ଛାଡ଼ି ଆସିବାକୁ ଇଛା ହୁଏ ନାହିଁ ।

ପୁରୀରେ ଆଇ. ଏସ୍‌ସି ପଢ଼ିଲି । ଛାତ୍ର ଜୀବନର ଅଧିକାଂଶ ସକାଳ ଓ ସନ୍ଧ୍ୟା ବିତିଛି ବଡ଼ ଦେଉଳରେ । ଅଧିକାଂଶ ଦିନର ଖାଦ୍ୟ ହୋଇଛି ବଜାରୁ ଅଭଡ଼ା ଅନ୍ନ । ତତଲା ଡାଲି, ଆଉ ଅନେକ ସକାଳେ ଦହି ପଖାଳ ଭାତ, ଲୁଣ, ଲଙ୍କା, ଲେମ୍ବୁ । ଗରିବ ଛାତ୍ରମାନଙ୍କର ସବୁଠାରୁ ଶସ୍ତା ମେସ୍ ଥିଲା ଆନନ୍ଦ ବଜାର ।

ବାରିପଦା କଲେଜରୁ ପୁରୀ କଲେଜକୁ ବଦଳି ଅର୍ଡର୍ ପାଇବାର ପୂର୍ବ ରାତିର ସ୍ୱପ୍ନ ଜୀବନରେ କେବେ ଭୁଲି ହେବ ନାହିଁ । ସ୍ୱପ୍ନରେ ଦେଖିଲି–ପତ୍ନୀଙ୍କ ସହ ପୁରୀର ଏକ ରାଜପଥରେ ମାଡ଼ି ଚାଲିଛି । ଆଗରେ ହଠାତ୍ ସମୁଦ୍ର ଲହଡ଼ି ଉଛୁଳି ଆସିଲା, ତା ଭିତରୁ ପ୍ରଥମେ ଦେଖା ଦେଲା ନାଲି ନେତ ସହ ନୀଳ ଚକ୍ର, କ୍ରମଶଃ କ୍ରମଶଃ ସମଗ୍ର ବଡ଼ ଦେଉଳ । ନିଦ ଭାଙ୍ଗିଯିବା କ୍ଷଣି ଅଭଡ଼ା ଅନ୍ନ, ତତଲା ଡାଲି, ବେସର, ମହୁରର ମହମହ ବାସ୍ନା । ମୋର ମନେ ପଡ଼ୁଛି, ଏ ବାସ୍ନା କୁଆଡ଼ୁ ଆସୁଛି ବୋଲି ଟର୍ଚ୍ଚଲାଇଟ ତିନି ଘର ଧାଡ଼ି ଖୋଜିଥିଲି । ପରଦିନ ଅଧ୍ୟକ୍ଷ ଯେତେବେଳେ ପୁରୀ କଲେଜକୁ ମୋର ବଦଳି ଅର୍ଡର୍ ଆସିଛି ବୋଲି ଜଣାଇ ଦେଲେ, ମୋର ସର୍ବାଙ୍ଗ ରୋମାଞ୍ଚିତ ହୋଇ ଯାଇଥିଲା ।

ଉତ୍କଳ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ଚାକିରି ପାଇଁ ଇଣ୍ଟରଭିଉ ଦେବାକୁ ଗଲାବେଳେ ବିଶ୍ୱବିଦ୍ୟାଳୟ ଅଫିସ୍ ବାରଣ୍ଡାରେ ବାମ ପାଖରେ ନୀଳଚକ୍ର ଘୂରି ଘୂରି ଚାଲିଥାଏ, ଆଉ ସେଇ ଚକ୍ର ଭିତରେ ଚକାଡୋଳାଙ୍କର ଚକାଡୋଳା ଢଳ ଢଳ ହେଉଥାଏ ।

ପିଏଚ୍.ଡି. ମୌଖିକ ପରୀକ୍ଷା ଶେଷ ହେବା ଦିନ ରାତିରେ ସ୍ୱପ୍ନ ଦେଖିଲି, ମୋର ସନ୍ତାନ ଭବନରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ମୋ ପାଖକୁ ଆସି ମୋତେ ଗୁଡ଼ ମାଗୁଛନ୍ତି । ଠିକ୍ ତା ପରଦିନ ମୋର ପରମାରାଧ୍ୟ ଗବେଷଣା-ଗୁରୁ ଡକ୍ଟର ବଂଶୀଧର ମହାନ୍ତି ମୋତେ ନିର୍ଦ୍ଦେଶ ଦେଲେ ଶ୍ରୀଜଗନ୍ନାଥଙ୍କ ସମ୍ପର୍କରେ ଗବେଷଣା କରିବାକୁ ହେବ । ତାଙ୍କର ଉତ୍ସାହ ଓ ଦିଗ୍-ଦର୍ଶନରେ ମୁଁ ଜଗନ୍ନାଥଙ୍କ ସମ୍ପର୍କରେ ବହୁ ଗବେଷଣାତ୍ମକ ଓ ତଥ୍ୟ ମୂଳକ ଗ୍ରନ୍ଥ ରେକର୍ଡ ଆଦି ପଢିବାର ସୁଯୋଗ ପାଇଛି ।

ଜଗନ୍ନାଥ-ଚେତନାର ଉଦ୍ଭବ ଓ ବିକାଶ ସମ୍ପର୍କରେ ମୋର ୪ଟି ପ୍ରବନ୍ଧ ଡକ୍ଟର ହରେକୃଷ୍ଣ ମହତାବଙ୍କ ସମ୍ପାଦିତ 'ଝଙ୍କାର'ରେ ୧୯୭୭ ମସିହା ଏପ୍ରିଲ୍ ସଂଖ୍ୟା, ୧୯୭୭ ମସିହା ଅକ୍ଟୋବର ସଂଖ୍ୟା, ୧୯୭୭ ନଭେମ୍ବର ସଂଖ୍ୟା ଓ ୧୯୭୮ ଏପ୍ରିଲ୍ ସଂଖ୍ୟାରେ ପ୍ରକାଶ ପାଇଥିଲା ଓ ଏହି ଲେଖା ପାଇଁ ମୋତେ ୧୯୭୮ ମସିହାର ପ୍ରଜାତନ୍ତ୍ର ପ୍ରଚାର ସମିତି ତରଫରୁ ଅନୁଷ୍ଠିତ ବିଷୁବ ମିଳନରେ ଶ୍ରେଷ୍ଠ ପ୍ରାବନ୍ଧିକ ପୁରସ୍କାର (ଏକ ହଜାର ଟଙ୍କା) ଓ ଉପଢୌକନ ମିଳିଥିଲା ।

ବିଭିନ୍ନ ପତ୍ରପତ୍ରିକାରେ ଶ୍ରୀ ଜଗନ୍ନାଥଙ୍କ ସମ୍ପର୍କିତ ପ୍ରବନ୍ଧ, ଗଳ୍ପ ଓ କବିତା ପ୍ରକାଶ କରାଇବା ଦିଗରେ ମୋ ଭିତରେ ପ୍ରଚଣ୍ଡ ଆଗ୍ରହ ସୃଷ୍ଟି ହୋଇଅଛି ।

'ଜଗନ୍ନାଥ ଚେତନାର ଉଦ୍ଭବ ଓ ବିକାଶ' ଗ୍ରନ୍ଥର ପ୍ରକାଶନ ଅବସରରେ ମୁଁ ମୋର ପିତାମାତା, ଗବେଷଣାଗୁରୁ ଡକ୍‌ଟର ବଂଶୀଧର ମହାନ୍ତି, ଝଙ୍କାରର ମୁଖ୍ୟ ସମ୍ପାଦକ ଡକ୍‌ଟର ହରେକୃଷ୍ଣ ମହତାବ, ଝଙ୍କାରର ପରିଚାଳନା ସମ୍ପାଦକ ଶ୍ରୀ ସର୍ବେଶ୍ୱର ରଞ୍ଜନ ମହାନ୍ତି ପ୍ରଭୃତିଙ୍କ ପାଖରେ ମୋର ଗଭୀର କୃତଜ୍ଞତା ଜ୍ଞାପନ କରୁଅଛି ।

ମୋର ଶ୍ରଦ୍ଧେୟ ଛାତ୍ର କବି, ନାଟ୍ୟକାର ଶ୍ରୀମାନ୍ ଶ୍ରୀକାନ୍ତ ମହାନ୍ତି ଓ ସ୍ନେହାସ୍ପଦା ଛାତ୍ରୀ ସିନ୍ଧି (ପ୍ରମିଳା ମହାନ୍ତି) ଏ ଗ୍ରନ୍ଥଟିକୁ ସର୍ବାଙ୍ଗ ସୁନ୍ଦର କରି ପ୍ରକାଶ କରିବା ଦିଗରେ ଆପ୍ରାଣ ଉଦ୍ୟମ କରିଛନ୍ତି, ଜଗନ୍ନାଥେ ସେମାନଙ୍କର ମଙ୍ଗଳ କରନ୍ତୁ । ମୁଁ ସେମାନଙ୍କୁ ମୋର ସାଧୁବାଦ ଜଣାଉଛି ।

ଗୃହଜଞ୍ଜାଳ ଓ ବ୍ୟାଧି ଭିତରେ ସର୍ବଦା ଘାଣ୍ଟି ହୋଇ ମଧ୍ୟ ମୋର ପତ୍ନୀ ସତ୍ୟଶାନ୍ତି ମହାପ୍ରଭୁଙ୍କ ସମ୍ପର୍କରେ ସବୁବେଳେ କଲମ ଚଳାଇବାକୁ ମୋତେ ପ୍ରେରଣା ଦେଇଥାଏ । ନିଜ ହାତ ଖର୍ଚ୍ଚରୁ ଉଦ୍‌ବୃତ୍ତ ଅର୍ଥରେ ସେ ଏହାର ପ୍ରକାଶନ ଭାର ଗ୍ରହଣ କରିଛି । ତା ପାଇଁ ମୁଁ ମହାପ୍ରଭୁଙ୍କର କରୁଣା ଭିକ୍ଷା କରୁଛି ।

ମହାପ୍ରଭୁ ଅବାଙ୍‌ମାନସଗୋଚର । ଶେଷଦେବ ଅନନ୍ତ ବର୍ଷ ଧରି ସହସ୍ର ମୁଖରେ ତାଙ୍କର କଣିକାଏ ମାହାତ୍ମ୍ୟ ବର୍ଣ୍ଣନା କରିବାକୁ ଅକ୍ଷମ । ଚିର ରହସ୍ୟମୟ ସେ । ତାଙ୍କ ଚେତନାର ଉଦ୍‌ଭବ ଓ ବିକାଶ ମୁଁ ସ୍ୱଳ୍ପମତି ସ୍ୱଳ୍ପଶକ୍ତି କିପରି ବା ବର୍ଣ୍ଣି ପାରିବି ? ତଥାପି ସୂର୍ଯ୍ୟଙ୍କୁ କ୍ଷୁଦ୍ର ପ୍ରଦୀପରେ ବନ୍ଦାପନା କରଯାଏ ତ !

'ଜଗନ୍ନାଥ-ଚେତନାର ଉଦ୍‌ଭବ ଓ ବିକାଶ' ପାଠ କରି କାହାରି ପ୍ରାଣରେ ଯଦି ଜଗନ୍ନାଥ-ଚେତନାର ସାମାନ୍ୟ ଝଲକ ଲାଗିପାରେ, ତେବେ ଶ୍ରମ ସାର୍ଥକ ମଣିବି ।

ବାସୁଦେବ ସାହୁ

# ସୂଚୀପତ୍ର

## ଜଗନ୍ନାଥ-ଚେତନାର ଉଦ୍‌ଭବ ଓ ବିକାଶ



## ଜଗନ୍ନାଥଙ୍କ ଇତିହାସ



## ସୁଭଦ୍ରା ତତ୍ତ୍ୱ



## ବଳଭଦ୍ର ତତ୍ତ୍ୱ

# ଓଡ଼ିଶା ଓ ଶ୍ରୀ ଜଗନ୍ନାଥ

ଓଡ଼ିଶା ଦେବ ଦେବ ଜଗନ୍ନାଥଙ୍କର ଭୂମି ଓ ସେହି ହେତୁ ପବିତ୍ର ଦେଶ ଭାରତ ବର୍ଷରେ ପୁଣ୍ୟତମ ଭୂମି ଭାବରେ ଅଭିହିତ । (୧) ଓଡ଼ିଶାର ଭୂମି, ମନୁଷ୍ୟର ଉଚ୍ଚାକାଂକ୍ଷା ଅଥବା ବିଜୟ ଲାଳସା ଚରିତାର୍ଥ କରିବା ପାଇଁ ଅଭିପ୍ରେତ ନୁହେଁ । ଏହା ଦେବରାଜ୍ୟ; ଏକ ପ୍ରାନ୍ତରୁ ଅପର ପ୍ରାନ୍ତ ପର୍ଯ୍ୟନ୍ତ ଏହା ନିଖିଳ-ମାନବର ତୀର୍ଥ ଭୂମି । (୨) ଓଡ଼ିଆମାନଙ୍କର ଜାତୀୟଜୀବନ, ସାମାଜିକ ଜୀବନ ଧର୍ମ, ସଂସ୍କୃତି, ସାହିତ୍ୟ ସବୁ କିଛି ଜଗନ୍ନାଥ-ଚେତନାର ପ୍ରାଣ-ବିକାଶ । 'ଓଡ଼ିଶାର ଧର୍ମ ବୋଲନ୍ତେ ଜଗନ୍ନାଥଙ୍କ ଉପାସନାକୁହିଁ ବୁଝାଏ । (୩) ଅନ୍ୟ କୌଣସି ରାଷ୍ଟ୍ର ଦେବତାଙ୍କ ସହିତ ସେହି ସେହି ରାଷ୍ଟ୍ର ଏତେ ଘନିଷ୍ଠ ଭାବରେ ଜଡ଼ିତ ଥିବାର ଲକ୍ଷ୍ୟ କରାଯାଇ ନାହିଁ । ଉତ୍ତର ଭାରତର 'ବିଶ୍ୱନାଥ'ଙ୍କ ସହିତ କିମ୍ବା ଦକ୍ଷିଣ ଭାରତର 'ରାମନାଥ'ଙ୍କ ସହିତ ଅଥବା ପଶ୍ଚିମ ଭାରତର 'ସୋମନାଥ'ଙ୍କ ସହିତ ତତ୍ପ୍ରଦେଶର ସଂସ୍କୃତିର କୌଣସି ସଂଶ୍ଳେଷ ନାହିଁ । କିନ୍ତୁ ଓଡ଼ିଶାର ସଂସ୍କୃତି କହିଲେ 'ଜଗନ୍ନାଥ ସଂସ୍କୃତି', ଓଡ଼ିଶାର ଧର୍ମ କହିଲେ 'ଜଗନ୍ନାଥ ଧର୍ମ' ଓ ଓଡ଼ିଶାର ଇତିହାସ କହିଲେ 'ଜଗନ୍ନାଥଙ୍କ ଇତିହାସ' । 'ଜଗନ୍ନାଥ'ହିଁ ଓଡ଼ିଶାର ସକଳ ବିଭବର ପ୍ରାଣକେନ୍ଦ୍ର । (୪) । ରାମ କୃଷ୍ଣ ଆଦି ଯେପରି ତତ୍-ସଂପୃକ୍ତ ଧାର୍ମିକମାନଙ୍କ ହୃଦୟରେ ଈଶ୍ୱରଙ୍କ ଅବତାର ରୂପେ ବିଶ୍ୱାସର କେନ୍ଦ୍ର ହୋଇଛନ୍ତି, ଜଗନ୍ନାଥ ସେହିପରି ଓଡ଼ିଆ ଜାତିର ହୃଦୟରେ ଈଶ୍ୱରଙ୍କ ସାକ୍ଷାତ ଅବତାର ଭାବରେ ଆସନ ପାତିଛନ୍ତି (୫) । ଏପରିକି ଜଗନ୍ନାଥ ହେଉଛନ୍ତି ସାକ୍ଷାତ ପରଂବ୍ରହ୍ମ, ସକଳ ଅବତାରର ସ୍ରଷ୍ଟା ଅବତାରୀ । କେତେ କେତେ ଧର୍ମର ବାତ୍ୟା ଏ ପ୍ରଦେଶରେ ବହିଯାଇଛି, ହେଲେ ଜଗନ୍ନାଥଙ୍କୁ କେହି ତିଳେ ହେଲେ ଟଳେଇ ପାରି ନାହାନ୍ତି । ଯାହା କିଛି ନୂତନ ବୋଲି ଜନତା

ଦ୍ୱାରା ବିବେଚିତ ହୋଇଛି, ତାହା ଜଗନ୍ନାଥଙ୍କ ଠାରେ ଆରୋପିତ ହୋଇଯାଇଛି । (୬) ତେଣୁ ଆଦ୍ୟରେ ଶବର ଉପଜାତିର ଠାକୁର ଭାବରେ ଯାହାଙ୍କର ଆବିର୍ଭାବ, ସେ କାଳକ୍ରମେ ଜୈନ, ବୌଦ୍ଧ, ତାନ୍ତ୍ରିକ, ଶୈବ, ବୈଷ୍ଣବ, ଶାକ୍ତ, ଗାଣପତ୍ୟ, ସୌର ଆଦି ସକଳ ଆର୍ଯ୍ୟଧର୍ମ-ଶାଖାଦ୍ୱାରା ଗୃହୀତ ଓ ରଚିତ ହୋଇ ଏବଂ ପ୍ରତ୍ୟେକଟି ବିଶ୍ୱାସର ସଙ୍କେତ ଅସଂକୋଚରେ ବହନ କରି ଏବେ ବି ସଗୌରବରେ ଦଣ୍ଡାୟମାନ (୭) । ଜଗନ୍ନାଥ ଧର୍ମ ଏକ ବହୁମତ-ସମନ୍ୱିତ ଧର୍ମ ଏବଂ ବିଭିନ୍ନ ଧର୍ମର ମତ ଜଗନ୍ନାଥଙ୍କର ସାର୍ବଜନୀନ ଉଦାର ଦୃଷ୍ଟିଭଙ୍ଗୀ ଦ୍ୱାରା ଗୋଟିଏ ସୂତ୍ରରେ ଗ୍ରଥିତ ହୋଇଯାଇଛି । (୮) ।

ଜଗନ୍ନାଥ-ଉପାସନା କେବେ କେଉଁଠାରୁ ହେଲା ଓ 'ଜଗନ୍ନାଥ' ନାମକରଣ କେବେ କାହିଁକି ହେଲା, ସେ ବିଷୟ ଏବେ ବି ନିର୍ବିବାଦରେ ନିର୍ଣ୍ଣୀତ ହୋଇପାରି ନାହିଁ । ଜଗନ୍ନାଥଙ୍କ ସହିତ ବିଭିନ୍ନ ଧର୍ମ ସଂଶ୍ଳିଷ୍ଟ ହେଲାପରି 'ଜଗନ୍ନାଥ' ଶବ୍ଦ ସହିତ ବିଭିନ୍ନ ଧର୍ମ ଜଡ଼ିତ ହୋଇ ରହିଛି । ଯୁଗ ଯୁଗ ଧରି ଜଗନ୍ନାଥ ରହସ୍ୟମୟ ଦେବତା ହୋଇ ରହିଆସିଛନ୍ତି ।

## ଆଦିବାସୀ ସଂସ୍କୃତିରେ ଶ୍ରୀଜଗନ୍ନାଥ-

ଜଗନ୍ନାଥଙ୍କ ସହିତ କିପରି ଶାବର ଭାଷା ଓ ସଂସ୍କୃତି ସଂପର୍କିତ ଆଲୋଚନା କରାଯାଉ । ଡକ୍‌ଟର ବେଣୀମାଧବ ପାଢୀଙ୍କ ମତରେ 'ଜଗନ୍ନାଥ ଶବ୍ଦଟି ଯେପରି ପାଲି ମୂଳ ନୁହେଁ, ସେହିପରି ସଂସ୍କୃତି-ମୂଳ ବି ନୁହେଁ । ମନେହୁଏ, ଏହା ଶବର ଭାଷାରେ ବ୍ୟବହୃତ 'ଜଗନ୍ତ' ଶବ୍ଦର ସଂସ୍କୃତ ରୂପ । (୯) 'ଜଗନ୍ତ' ଶବ୍ଦର ଅର୍ଥ ଶବର ଭାଷାର ଅଭିଧାନରେ 'ଜଗତର ଦେବତା' ବୋଲି ଗୃହୀତ ହୋଇଛି । (୧୦) ଶବର ବା ସୌରା ଭାଷାରେ 'କିତୁଙ୍ଗ୍' ଶବ୍ଦର ଅର୍ଥ ଦେବତା । ଶବରମାନଙ୍କର ବିଶ୍ୱାସ 'କିତୁଙ୍ଗ୍'ଙ୍କର ଦଶଟି ରୂପ ଅଛି ଏବଂ ସେମାନେ ହେଉଛନ୍ତି ଦଶ ଭାଇ । ଏହି ଦଶ ରୂପ ହେଉଛି—ଜଗନ୍ତ, ତୋଡ଼, ତୁମନ୍, ଭୀମ, ରଂ ରଂ, ଗର୍ସିଦ୍, ଗମନ୍ ଯୋଜେପଜ, ମଉ ଓ ତିତି (୧୧) । କେତେକ ଉତ୍ସବରେ ଶବରମାନେ ଘର କାନ୍ଥରେ ଏହି ଦଶ ରୂପର ଚିତ୍ର ଆଙ୍କି ଏକାପରି ପୂଜା କରିଥାନ୍ତି । (୧୨) ଜଗନ୍ନାଥଙ୍କ ଦଶ ଅବତାର କଳ୍ପନା ମୂଳରେ ଶାବର 'କିତୁଙ୍ଗ୍'ଙ୍କର ଏହି ଦଶରୂପ ଥାଇପାରେ । (୧୩) ଶବରମାନେ ଏକ ବୃକ୍ଷକୁ 'ଜଗନ୍ତ' ଭାବେ ପୂଜା କରିଥାନ୍ତି ଓ

ସେହି ବୃକ୍ଷକୁ ଏପରିକି ସେହି ବୃକ୍ଷଥିବା ଉଦ୍ୟାନର କୌଣସି ବୃକ୍ଷକୁ ଛେଦନ କରନ୍ତି ନାହିଁ । (୧୪)

'ଜଗନ୍ତ' ବ୍ୟତୀତ ଶବରମାନେ ସେମାନଙ୍କର ପ୍ରସିଦ୍ଧ ଦେବତାଙ୍କୁ ଜଗା-ବୋଇ ବୋଲି ଶ୍ରଦ୍ଧାରେ ଡାକିଥାନ୍ତି । 'ବୋଇ' ଶବ୍ଦର ଅର୍ଥ ଦେବତା । ତେଣୁ 'ଜଗାବୋଇ' ଅର୍ଥ 'ଜଗା ଦେବତା' ବା 'ଜଗା ଠାକୁର' । ଓଡ଼ିଆମାନେ ମଧ୍ୟ ଜଗନ୍ନାଥଙ୍କୁ 'ଜଗା ଠାକୁର' 'ଜଗା ଦେବତା' ବୋଲି ଶ୍ରଦ୍ଧାରେ ଡ଼ାକିଥାନ୍ତି । (୧୫) ଶବରମାନଙ୍କ ମଧ୍ୟରେ ଜଗନ୍ନାଥଙ୍କର ଆଉ ଏକ ପ୍ରାଚୀନ ନାମ ପ୍ରଚଳିତ– 'ଜଗନାଏଲେ' । 'ଜଗନାଏଲେ' ହେଉଛନ୍ତି ଦାରୁମୂର୍ତ୍ତି ଏବଂ ଶବରମାନେ ସେମାନଙ୍କର ସମସ୍ତ 'କିତୁଙ୍ଗ ' ମାନଙ୍କ ମଧ୍ୟରେ ଏହାଙ୍କୁ ଶ୍ରେଷ୍ଠ ବୋଲି ମାନିଥାନ୍ତି ଏବଂ ଏ ଦେବତା ସମଗ୍ର ଜଗତର ଦେବତା ବୋଲି ସେମାନେ ବିଶ୍ୱାସ କରିଥାନ୍ତି । (୧୬)

ଅଷ୍ଟ୍ରିକ୍ (ଆଦିବାସୀ) ଗୋଷ୍ଠୀର ସଙ୍କେତବାଦ (Totemism)ରୁ ଜଣାଯାଏ ସେମାନେ ମୁଖ୍ୟତଃ ବୃକ୍ଷକୁ ହିଁ ଦେବତା ରୂପେ ପୂଜା କରୁଥିଲେ । ଉତ୍ତର ଅଷ୍ଟ୍ରେଲିଆର ଆଦିମ ଅଧିବାସୀମାନଙ୍କ ମଧ୍ୟରେ ବୃକ୍ଷଲତା ଏବେ ମଧ୍ୟ ଟୋଟେମ୍‌ରୂପେ ପ୍ରଚଳିତ । (୧୭) ଭାରତ ବର୍ଷରେ ପ୍ରଥମେ ପ୍ରବେଶ କରିଥିବା ଅଷ୍ଟ୍ରିକ ଗୋଷ୍ଠୀ ନିଗ୍ରିଟୋମାନଙ୍କ ମଧ୍ୟରେ 'ପିପଳ ବୃକ୍ଷ ଉପାସନା' ପ୍ରଚଳିତ ଥିଲା । ପ୍ରୋଟୋଅଷ୍ଟ୍ରେଲିଅଡ୍ (ଶବର) ଏବଂ ମହେଞ୍ଜୋଦାରୋ ସଂସ୍କୃତିରେ ତା'ର ପ୍ରଭାବ ପରିଲକ୍ଷିତ ହୁଏ । (୧୮) ଜଗନ୍ନାଥ ଦାରୁ ଦେବତା ହୋଇଥିବାରୁ ସେ ହେଉଛନ୍ତି ଶବର ଦେବତା । (୧୯

ଆର୍ଯ୍ୟମାନଙ୍କର ଆଦି ପବିତ୍ରତମ ଗ୍ରନ୍ଥ ବେଦରେ ସମୁଦ୍ର କୂଳରେ ଏକ ଅପୁରୁଷ ଦାରୁ ଭାସୁଥିବା ଉଲ୍ଲେଖ ଅଛି–

'ଅଦୋ ଯଦ୍ଦାରୁ ପ୍ଲବତେ ସିନ୍ଧୋଃପାରେ ଅପୁରୁଷମ୍
ତଦା ରଭସ୍ୱ ଦୂର୍ହଣୋ ତେନଗଛ ପରସ୍ତରମ୍ ।' ୨୦

ପଣ୍ଡିତ ନୀଳକଣ୍ଠ ଏହାର ଅର୍ଥ କରିଛନ୍ତି–ଜଣେ ବୈଦିକ ଋଷି ଦୂର୍ହଣ (ଯାହାର ଅର୍ଥ ଦୂର୍ବଚନ, କୁଭାଷୀ) ଙ୍କୁ ସମ୍ବୋଧନ କରି କହୁଛନ୍ତି ସିନ୍ଧୁ ତୀରରେ

ଭସମାନ ଏହି ଅପୁରୁଷ ଦାରୁକୁ ଛେଦନ କରି ପରମପଦ ଲଭକର ।' (୨୧) ଏଠାରେ ଦାରୁକୁ 'ଅପୁରୁଷ' କୁହାଯିବା ଦ୍ୱାରା ଏହାକୁ ଅନାର୍ଯ୍ୟ ଦେବତା (ଘୃଣା-ସୂଚକ ଅର୍ଥରେ) ବା ଶବର ଦେବତା ଭବରେ ଗ୍ରହଣ କରାଯାଇଅଛି । ଏଥିରୁ ସମୁଦ୍ର ତୀରବର୍ତ୍ତୀ ଆଦିବାସୀ ଦାରୁ-ଦେବତା ପ୍ରତି ବୈଦିକ ଋଷିଙ୍କର ଘୃଣା ଭବହିଁ ସୂଚିତ ହେଉଅଛି । (୨୨)

ପାଶ୍ଚାତ୍ୟ ସମାଲୋଚକ ଓ୍ୱିଲ୍‌କିନ୍‌ସଙ୍କର ମତରେ ଜଗନ୍ନାଥ ସମ୍ଭବତଃ କୌଣସି ଏକ ସ୍ଥାନୀୟ ଉପଜାତି (ଆଦିବାସୀ ଗୋଷ୍ଠୀ) ଦ୍ୱାରା ଉପାସିତ ହୋଇ ଆସୁଥିଲେ । କାଳକ୍ରମେ ତାଙ୍କୁ ହିନ୍ଦୁ ଧର୍ମ ଭିତରେ ଭର୍ତ୍ତି କରାଯାଇ 'ବିଷ୍ଣୁ'ଙ୍କର ଅବତାର ଭବରେ କଳ୍ପନା କରାଗଲା । ୨୩) ଗୁରୁଦାସ ସରକାର (୨୪) ଐତି-ହାସିକ କେଦାରନାଥ ମହାପାତ୍ର (୨୫) ଡକଟର ବଂଶୀଧର ମହାନ୍ତି (୨୬ ଡକ୍‌ଟର ନବୀନ କୁମାର ସାହୁ (୨୭) ଜଗନ୍ନାଥ ଚେତନା ଭିତରେ ଶବର ସଂସ୍କୃତିର ପ୍ରଭବ ସ୍ୱୀକାର କରିଛନ୍ତି । ପ୍ରଭାତ ମୁଖାର୍ଜୀ ଜଗନ୍ନାଥଙ୍କୁ ବ୍ରାହ୍ମଣ୍ୟ ଦେବତା ରୂପେ ପ୍ରମାଣ କରିବାକୁ ପ୍ରୟାସ କରିଥିଲେ ମଧ୍ୟ ପ୍ରାଚୀନ କାଳରୁ ଶବର କର୍ତ୍ତୃକ ଦାରୁ ଦେବତାଙ୍କର ଉପାସନା ପରମ୍ପରାକୁ ଅସ୍ୱୀକାର କରିପାରି-ନାହାନ୍ତି । (୨୮) ଡକ୍‌ଟର ହରେକୃଷ୍ଣ ମହତାବ (୨୯) ଓ ଐତିହାସିକ ମନମୋହନ ଗାଙ୍ଗୁଲି (୩୦ ଜଗନ୍ନାଥଙ୍କୁ ପ୍ରାଗ ବୌଦ୍ଧକାଳୀନ ଦେବତା କହି ଜଗନ୍ନାଥଙ୍କ ସହିତ ଶବର ସଂସ୍କୃତିର ସମ୍ପର୍କ ସମ୍ବନ୍ଧରେ ସଚେତନ ହୋଇଛନ୍ତି ।

ପୁରୀର ଦଇତା (ଦୈତ୍ୟ) ମାନେ ଜଗନ୍ନାଥଙ୍କର ଜ୍ଞାତି ରୂପେ ପରିଚିତ । ଦଇତାମାନେ ଶବର ବଂଶଧର । ସ୍ନାନ ପୂର୍ଣ୍ଣିମାଠାରୁ ରଥଯାତ୍ରା ପର୍ଯ୍ୟନ୍ତ ଜଗନ୍ନାଥଙ୍କର ସମସ୍ତ ପୂଜା ବିଧି-ବିଧାନ ଦଇତାମାନେ ହିଁ ସଂପାଦନ କରିଥାନ୍ତି । ଜଗନ୍ନାଥଙ୍କ ନବ କଳେବର (ଦେହତ୍ୟାଗ ଓ ନବ ଦେହ ଧାରଣ) ବେଳେ ଏମାନେ ଶ୍ରାଦ୍ଧକ୍ରିୟା ସମ୍ପାଦନ କରିଥାନ୍ତି

ତେଣୁ ଜଗନ୍ନାଥଙ୍କ ସହିତ ଶବର ସଂସ୍କୃତିର ସଂପର୍କ ଅବଶ୍ୟ ସ୍ୱୀକାର୍ଯ୍ୟ ।

ଜଗନ୍ନାଥଙ୍କୁ କୁହାଯାଏ ମାଦଳା । ମାଦଳା ଶବର ଅର୍ଥ ହସ୍ତପଦବିହୀନ ଗଣ୍ଡି । ଏବେ ମଧ୍ୟ ଶବରମାନଙ୍କ ମଧ୍ୟରେ ମାଦଳା ପୂଜା ପ୍ରଚଳିତ ଅଛି ।

(୩୧) ଏମାନେ ହସ୍ତପଦବିହୀନ, କେବଳ ମୁଖ-ଚକ୍ଷୁ-ବିଶିଷ୍ଟ କାଷ୍ଠଖଣ୍ଡ (Wooden Poles) ପୂଜା କରିଥାନ୍ତି । ଜଗନ୍ନାଥ-ବଳବଦ୍ର-ସୁଭଦ୍ରା ମୂର୍ତ୍ତି ଗୁଡ଼ିକ ମଧ୍ୟ ଭଲ ଭାବରେ ପରିଷ୍କୃତ ବା କୁନ୍ଦା ହୋଇ ନ ଥିବା ବୃକ୍ଷ ଗଣ୍ଡର ଅଂଶ ପରି ଦେଖାଯାଇଥାନ୍ତି । (୩୨) ଶବର ଦେବତା କାମୋହୁଦିଆ' ମାଟିରେ ତିଆରି ଅଣ୍ଡା ବା ମାଦଳ ଭଳି ଦେଖାଯାନ୍ତି । (୩୩) ସମୁଦ୍ର ତୀରରେ ନୌକା ସଦୃଶ କ୍ଷେତ୍ର (ପୁରୀ) ରେ ଯୂପଭଳି ମହାନ ନ୍ୟଗ୍ରୋଧ ଦାରୁ ପୂଜା ପାଉଥିବାର ସୂଚନା ସ୍କନ୍ଦ ପୁରାଣରେ ମଧ୍ୟ ମିଳିଥାଏ (୩୪) ।

ବୋଧ ହୁଏ ଏହି ମାଦଳା ମୂର୍ତ୍ତି କାଳକ୍ରମେ ଶବରମାନଙ୍କ ଦ୍ୱାରା "ନୀଳ-ମାଧବ' ଭାବରେ ରୂପାନ୍ତରିତ ହୋଇଅଛି । (୩୫) ଏହି ମୂର୍ତ୍ତି ମଧ୍ୟ ଦାରୁ (ଦାରବୀ) ବୋଲି ସ୍ୱୀକୃତ ହୋଇଅଛି । (୩୬) ଶବରମାନଙ୍କର 'ଶବରୀ ନାରାୟଣ' ପରବର୍ତ୍ତୀ କାଳରେ ଜଗନ୍ନାଥଙ୍କ ସହିତ ସମୀକୃତ ହୋଇଛନ୍ତି ଏହି ସବରୀ ନାରାୟଣ ନିମ କାଠରେ ତିଆରି ଏକ ମୁଣ୍ଡଯୁକ୍ତ ସ୍ତମ୍ଭବିଶେଷ ବୋଲି ନିଳକଣ୍ଠ ଦାସ ଉଲ୍ଲେଖ କରିଛନ୍ତି । (୩୭)

ପଞ୍ଚଦଶ ଶତାବ୍ଦୀ ବେଳକୁ ଜଗନ୍ନାଥ ଯେ ଶବର ଦେବତା (ଶବରୀ ନାରାୟଣ) ଏ ଧାରଣା ଜନମାନସରେ ବଦ୍ଧମୂଳ ହୋଇ ସାରିଛି, ଯାହାଫଳରେ ଓଡ଼ିଆ ଭାଷାର ଆଦିକବି ସାରଳା ଦାସ ତାଙ୍କ ମହାଭାରତର ବହୁ ସ୍ଥଳରେ ତାହାର ସୂଚନା ଦେଇଛନ୍ତି ।

"ବୋଲନ୍ତି ମାଧବ ସାବଧାନେ ଶୁଣ
ମୁହିଁ ସେ ଅନାଦିନାଥ ଶବରୀ ନାରାୟଣ । **
ଅଗବୃକ୍ଷକୁ ଯେ ଆଉଜି ଦେବ ହରି ।
ଶବରୀ ନାରାୟଣ ରୂପେ ଅବତରି ।" **
ଶୁଣି ନାରାୟଣ ପ୍ରତିବାକ୍ୟ ଦ୍ୟନ୍ତି ।
ତୋହର ଅର୍ଣ୍ଣରେ ଆମ୍ଭେ ହୋଇଲୁ ତ୍ରିପୁତି । **
ଆକାଶେ ଶବର ଯେ ଛାଡ଼ିଲା ମନ ଭ୍ରାନ୍ତି
ଯିସ ଅନ୍ନ ଉପୁଜଇ ସେ ଦେଉଥାଇ ନିତି ।

ଛାମୁରେ ଥୋଇଲ ସେ ଶବର ଆତେ ହୋଇଁ
ଆପଣେ ଭୁଞ୍ଜନ୍ତି ତାହା ଜଗତ ଭୁତସାଇଁ । ✽✽

ଯେତେକ ବଚନେ ସେ ଚଳଇ କୃତାନ୍ତ
ଅଗ୍ର ବୃକ୍ଷତଳେ ଦେଖିଲ ମାଧବନ୍ତ ।

ଚକ୍ରରେ ତ୍ରିନାଥ ବସାଇବି ନେଇ
କଳିଯୁଗ ପ୍ରବେଶ ହେଲ ଯେଥି ନ ଥିବା ଗୋସାଇଁ । ✽✽

ସପନ ତେଜିଣ ଉଠିଲ ଶବର
ଦେଖଇ ମାଧେବ ରୂପେ ଶଙ୍ଖ ଚକ୍ରଧର ।

ସେ ପ୍ରତିମା ଘେନିଗଲ ଦଇବକ
ରୁଦ୍ରା ନଦୀ ତୀରେ ବନ ତ୍ରି ଅନେକ ।
ଧବଳି ପର୍ବତ ଉପରେ ଅଗ୍ରବୃକ୍ଷ
ତହିଁର ତଳେ ନେଇ ଥୋଇଲ ଶିରିକ୍ଷ । ✽✽
ଯାଇଁ ମିଳିଲସେ ରୁଦ୍ରା ନଦୀ କୂଳେ
ବିଜେ ଜଗମୋହନ ଅଗ୍ର ବୃକ୍ଷମୂଳେ ।
ବାହ୍ମଣର ଅନ୍ଧ ପଟଳ ଫେଡ଼ିଲ କିରାତ
ହେଲ ମାଧେବ ସେ ପ୍ରୁଷ ସଞ୍ଜାତ । ✽✽
ଶବରୀ ବୋଲି କରି ଯେକଇ ସତ୍ୟଯୁଗେ
ଶବରୀ ନାରୟଣ ରୂପ ହୋଇଲୁ ମଧ୍ୟସ୍ଥ ଗେ । ✽✽
ସେ ଶବରୀକି ଆମ୍ଭେ ହୋଇଲୁଁ ବିଭ
ଶବରୀ ନରୟଣ ରୂପେ ବନେ ହୋଇଲୁଁ ଶୋଭ । ✽✽
ଯମନିକ ତୀର୍ଥେ ଆମ୍ଭଙ୍କୁ କର ଆରୋପଣ ।
×× ତୀର୍ଥେ ଅଧିକାରୀ ଯମେଶ୍ୱର ଦେବ
ଆମ୍ଭର ନାମ ଯେ ହୋଇବ (ନୀଳ) ମାଧବ ।
ଯେ ଜାର ଶବର ବଂଶ ଥିବେଟି ଆମ୍ଭ କତି ।
ଯେହାଙ୍କୁ ଦେଖିଲେ ସ୍ନାନ ଭୋଜନେ ଆମ୍ଭେ ହେଉଁ ତ୍ରିପୁତି ।

ନଉକା ବିମାନେ ଆମ୍ଭଙ୍କୁ ଘେନିଯାଅ ହେ ନୃପ
ନୀଳଗିରି ସ୍ଥାନେ ଆମ୍ଭଙ୍କୁ ନେଇ ସ୍ଥାପ । **
ଏଥେ ବଟନିର୍ଦ୍ଧି କୂଳେ ନିରେପଇ ଜାଗ କିଗତ
ସାଗରୁ ବାହାରି ହୋଇଁ ହୋଇଲେ ଉପଗତ ।
ଦେଖିଣ ଜାଗ ଶବର ପରିଣାମି
ନୀଳଗିରିରେ ବିଜେ କରିବ କି ଦେବ ସ୍ୱାମୀ ?"(୩୮ )

ଡକ୍‌ଟର ବଂଶୀଧର ମହାନ୍ତିଙ୍କ ମତରେ, ଓଡ଼ିଆ ସଂସ୍କୃତିର ପରିଚୟରେ ଆଦିବାସୀ ସଂସ୍କୃତି ହିଁ ଆମ୍ଭମାନଙ୍କର ପ୍ରଥମ ଓ ପ୍ରଧାନ ପଥପ୍ରଦର୍ଶକ ଏବଂ ଜଗନ୍ନାଥ ଧର୍ମ ମୁଖ୍ୟତଃ ଓ ପ୍ରଥମତଃ ଆଦିବାସୀ ଧର୍ମ (୩୯) । ପରବର୍ତ୍ତୀକାଳୀନ ଜୈନ 'ଜଗନ୍ନାଥ' ମୂଳରେ ରହିଛି ଏହି ଆଦିବାସୀର 'ଜଗନ୍ତ' । ଜୈନମାନେ 'ଜଗନ୍ତ' ସହିତ ସ୍ୱଧର୍ମର ସର୍ବୋତ୍କର୍ଷ ପ୍ରତିପାଦକ ଶବ୍ଦ 'ନାଥ' (ଯଥା:-ଋଷଭନାଥ, ପାର୍ଶ୍ୱନାଥ, ନେମିନାଥ ଇତ୍ୟାଦି) ଯୋଗ କରି ଜଗନ୍ତନାଥ ବୋଲି ଅବିହିତ କଲେ ଓ 'ଜଗନ୍ନାଥ' ଶବ୍ଦ ହେଉଛି ଏହି 'ଜଗନ୍ତନାଥ' ଶବ୍ଦର ରୂପାନ୍ତର (୪୦) ଋଗ୍‌ବେଦର ସେହି 'ଅଦୋ ଯଦ୍ଦାରୁ............' ମନ୍ତ୍ରଟିରେ ଥିବା 'ଅପୁରୁଷମ୍ ଶବ୍ଦରେ ଯଦି ଆର୍ଯ୍ୟେତର ଜାତିର ଦେବମୂର୍ତ୍ତି ପ୍ରତି ଘୃଣାର ବ୍ୟଞ୍ଜନା ଥାଏ ଏବଂ ଏହାକୁ ଶବର ଜାତିର ଦାରୁମୂର୍ତ୍ତି ବୋଲି ଗ୍ରହଣ କରଯାଏ, ତେବେ ଜଗନ୍ନାଥ ଚେତନାର ବିକାଶ ପ୍ରାୟ ଖ୍ରୀ: ପୂ: ୧୩୦୦ ବର୍ଷ ପୂର୍ବରୁ ହୋଇ ସାରିଥିଲା ବୋଲି ସ୍ୱୀକାର କରିବାକୁ ହେବ । କାରଣ ଋଗବେଦର ରଚନାକାଳ ଖ୍ରୀଷ୍ଟପୂର୍ବ ଦେଢହଜାର ବା ତତ୍‌ପୂର୍ବ ବୋଲି ବହୁ ବିଦ୍ୱାନଙ୍କ ଦ୍ୱାରା ନିର୍ଦ୍ଧାରିତ ହୋଇଅଛି ୪୧ ।

## ଜୈନ ସଂସ୍କୃତିରେ ଶ୍ରୀ ଜଗନ୍ନାଥ

ଅନେକଙ୍କ ମତରେ 'ଜଗନ୍ନାଥ' ଶବ୍ଦ ମୂଳରେ ରହିଛି ଜୈନଧର୍ମର ପ୍ରାଣ-ପ୍ରବାହ । ପଣ୍ଡିତ ନୀଳକଣ୍ଠ ଦାସଙ୍କ ମତରେ, ଜଗନ୍ନାଥ କଥାଟି ଗୋଟିଏ ଜୈନଶବ୍ଦ । ଏହା 'ଋଷଭନାଥ' ସଙ୍ଗେ ସମାନ । 'ଋଷଭନାଥ' ଅର୍ଥ ସୂର୍ଯ୍ୟନାଥ । ଋଷଭନାଥ ହେଉଛନ୍ତି ଜଗତର ଜୀବନରୂପୀ ପ୍ରବୃଷ । ଏହା ହେଉଛି ପ୍ରାଚୀନ ବ୍ୟାବିଲନର ଆବିଷ୍କାର (୪୨) । ସୂର୍ଯ୍ୟ ଯେ କୃଷି ଓ ଉତ୍ପାଦନର ଦେବତା ଓ

ଜଗତର ଜୀବନ ଏ କଥା ଲୋକ-ବିଶ୍ୱାସରେ ମଧ୍ୟ ବଦ୍ଧମୂଳ ହୋଇ ଯାଇଥିଲା । ଲୋକମାନେ ବୃଷଭରେ ହଳ କରୁଥିଲେ, ସୂର୍ଯ୍ୟଙ୍କୁ ବାସନ୍ତ ବିଷୁବରେ ଦେଖିଲେ ଲୋକେ ଭାବୁଥିଲେ ବୃଷଭ (କର୍ଷଣ) ର ସମୟ ହୋଇଗଲା । ସେହି କାଳ ଥିଲା ଆକାଶରେ ବୃଷଭ ରାଶି ଉଦୟର କାଳ, ତେଣୁ ସୂର୍ଯ୍ୟଙ୍କ ନାମ ହୋଇ ଯାଇଥିଲା ବୃଷଭ ବା ଋଷଭ (୪୩) । ସୂର୍ଯ୍ୟ ବା ଋଷଭ ଯେ ଜଗତର ଜୀବନ ଏକଥା ବେଦରେ ମଧ୍ୟ ସ୍ୱୀକୃତ ହୋଇଅଛି "ସୂର୍ଯ୍ୟ ମା ଜଗତସ୍ତସ୍ଥୁଷ" (୪୪) । ପ୍ରାଚୀନ ମିଟାନୀ ଦେଶରେ ମଧ୍ୟ ଧାରଣାଥିଲା ଯେ ସୂର୍ଯ୍ୟ ଜଗତର ଆତ୍ମା । ମିଟାନୀ ରାଜା ଦଶରଥ ( ଖ୍ରୀ. ପୂ. ୧୪ଶ ଶତାବ୍ଦୀ) ଙ୍କ ଭଗ୍ନୀ ଓ କନ୍ୟା ମିଶରର ରାଜବଂଶରେ ବିବାହ କରି ନିଜ ରାଜ୍ୟର ସୂର୍ଯ୍ୟ ଧର୍ମକୁ ମିଶରରେ ପ୍ରଚାର କରିଥିଲେ । ଏହି ଧର୍ମର ନାମ ଥିଲା ଆଟେନ (ଆତ୍ମନ ?), ଅର୍ଥାତ ସୂର୍ଯ୍ୟ ଯେ ଜଗତର ଆତ୍ମା ଏବଂ ସେ ହିଁ ହେଉଛନ୍ତି ପରମ ପୁରୁଷ (ପୁରୁଷୋତ୍ତମ) ଏହା ଏହି ଧର୍ମରେ ବ୍ୟାଖ୍ୟାତ ହୋଇଥିଲା । ମିଶରୀୟ ପୁରୁଷୋତ୍ତମ ଓ ପୁରୀର ପୁରୁଷୋତ୍ତମ ଖୁବ୍ ସମ୍ଭବ ଏଇ ଜୈନ ଧର୍ମର ଫଳ (୪୫)

ଆଦି ଜିନ 'ଋଷଭ' ଦେବ ହିନ୍ଦୁ ଧର୍ମରେ ବିଷ୍ଣୁ ଅବତାର ରୂପେ ଗୃହୀତ (୪୬) 'ଋଷଭ ଦେବ ବାସୁଦେବାଂଶ, ବିଷ୍ଣୁଙ୍କ ଅବତାର' । କେତେକଙ୍କ ମତରେ ଜଗନ୍ନାଥ ହେଉଛନ୍ତି ଋଷଭ ମୂର୍ତ୍ତି । (୪୭) । ନିମ୍ନଲିଖିତ ଶ୍ଳୋକଟି ପୁରୀର ବହୁ ବ୍ରାହ୍ମଣଙ୍କ କଣ୍ଠରେ ଶୁଣିବାକୁ ମିଳେ ଯହିଁରେ ସ୍ଥାନେ ସ୍ଥାନେ ଜଗନ୍ନାଥଙ୍କୁ ଜୈନ ଧର୍ମ ସହିତ ସଂପୃକ୍ତ କରାଯାଇଅଛି–

"ଯଂ ଶୈବାଃ ସମୁପାସତେ ଶିବ ଇତି ବ୍ରହ୍ମେତି ବେଦାନ୍ତିନଃ
ବୌଦ୍ଧାଃ ବୁଦ୍ଧ ଇତି ପ୍ରମାଣ ପଟବଃ କର୍ତ୍ତେତି ନୈୟାୟିକାଃ
ଅର୍ହଂ ନିତ୍ୟଥ ଜୈନଶାସନାରତାଃ କର୍ମେତି ମୀମାଂସକାଃ
ସୋଽୟଂ ବୋ ବିଦଧାତୁ ବାଞ୍ଛିତ ଫଳଂ
ତ୍ରୈଲୋକ୍ୟନାଥୋହରିଃ (୪୮) ।"

'ଜଗନ୍ନାଥ' ଶବ୍ଦ ମୂଳତଃ ଜୈନ ଏବଂ ଏହା ଜିନେଶ୍ୱର ଅର୍ଥାତ୍ ଆଦିନାଥ ଋଷଭଙ୍କର ନାମାନ୍ତର ବୋଲି ଜୈନ ଅଭିଧାନ ଗ୍ରନ୍ଥରୁ ଜଣାଯାଏ (୪୯) ।

ଜଗନ୍ନାଥ' ଶବ୍ଦର ଅର୍ଥ 'ଜଗତ୍' ରୂପ 'ନାଥ' ବା ପୁରୁଷ । ଜଗତ୍ ହେଉଛି ଉପାସ୍ୟ ପୁରୁଷ । ଜୈନମାନେ ଉପାସ୍ୟ ପୁରୁଷଙ୍କୁ ନାଥ ବୋଲି କହିଥାନ୍ତି ।(୫୦) ।

ଜୈନମାନଙ୍କ ମତରେ ଆଷାଢ଼ ଶୁକ୍ଳ ଦ୍ୱିତୀୟା ତିଥି ହେଉଛି ପ୍ରଥମ ତୀର୍ଥଙ୍କର ଋଷଭଙ୍କର ଗର୍ଭକଲ୍ୟାଣକ ଦିବସ । ଅର୍ଥାତ୍ ଏହି ଦିବସରେ ଋଷଭନାଥ ଗର୍ଭଗତ ହୋଇଥିଲେ । ତେଣୁ ଏହି ତିଥିରେ ଋଷଭଙ୍କର ରଥଯାତ୍ରାର ବିଧାନ ଅଛି । (୫୧) । ଚୈତ୍ୟ ନିର୍ମିତ ରଥ ଉପରେ ଜିନଙ୍କର ପ୍ରତିମା ସ୍ଥାପନ କରି ନଗରରେ ପରିକ୍ରମା କରାଇବା ଏହି ଉତ୍ସବର ବିଧାନ । (୫୨) ! ଜଗନ୍ନାଥ ଋଷଭଙ୍କର ପ୍ରତୀକ ବୋଲି ଅନେକେ ମନେ କରନ୍ତି ଏବଂ ଜୈନ ପଦ୍ଧତି ଅନୁସରଣରେ ଠିକ୍ ସେହି ଆଷାଢ଼ ଶୁକ୍ଳ ଦ୍ୱିତୀୟା ତିଥିରେ ଜଗନ୍ନାଥଙ୍କର ରଥଯାତ୍ରା ଉତ୍ସବ ଅନୁଷ୍ଠିତ ହୋଇଥାଏ ବୋଲି ଅନୁମାନ କରନ୍ତି । (୫୩) ଜୈନ ପ୍ରତିମାମାନଙ୍କର ଅଭିଷେକ, ସ୍ନାତ୍ର (ସ୍ନାନଯାତ୍ରା) ଉତ୍ସବ ପ୍ରଭୃତି ପରି ଶ୍ରୀ ଜଗନ୍ନାଥଙ୍କର ସ୍ନାନଯାତ୍ରା ଅନୁଷ୍ଠିତ ହୋଇଥାଏ । ଛତ୍ର, ଚାମର, କାହାଳୀ ଓ ବାଦ୍ୟ ସହକାରେ କୁମ୍ଭ ଜଳଦ୍ୱାରା ଜୈନ ପ୍ରତିମାମାନଙ୍କୁ ଅଭିଷେକ କରାଯାଇଥାଏ । ଶ୍ରୀଜଗନ୍ନାଥଙ୍କର ସ୍ନାନଯାତ୍ରାବେଳେ ମଧ୍ୟ ଏହି ବିଧି ଅନୁସୃତ ହୋଇଥାଏ ।

ରସାର୍ଦ୍ଧ ଦିବସାତ୍ କୃପାନିଧିକୃପାକଟାକ୍ଷାସ୍ପଦଂ
ତତୋବିଧିବଳାଦବଳାବରଜ ମୌଳି ସୀମାଂଗତଃ ।
ଅନାପ୍ତ ଜଳଜାକ୍ଷ ବୀକ୍ଷଣ ଲବସ୍ତଦାକାଙ୍କ୍ଷୟା
ବିନମ୍ର ବଦନୋଘଟ ସ୍ତୁଟିତ ଜୀବନଃ ପାତୁନଃ ।।

ଅଭିଷେକ ଉତ୍ସବ ପରେ ଜିନ ପ୍ରତିମାମାନଙ୍କର ତୂଳିଦ୍ୱାରା ନୂତନ ରଙ୍ଗୀକରଣ ବିଧି ସ୍ନାନଯାତ୍ରା ପରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କର ବନକ-ଲଗି ଓ ନବଯୌବନ ବିଧି ସ୍ମରଣ କରାଇ ଦିଏ । ବିଶେଷ,କରି ଜିନ ପ୍ରତିମା ଋଷଭଙ୍କର ଚକ୍ଷୁର ନବୀକରଣ ସହିତ ଜଗନ୍ନାଥଙ୍କର ଚକାଡୋଳାର ନବୀକରଣର ସାମ୍ୟ ଜୈନ ଧର୍ମ ସହିତ ଜଗନ୍ନାଥଙ୍କର ସମ୍ପର୍କ ପ୍ରମାଣ କରିବାକୁ ଯାଏ ।

ଋଷଭଙ୍କର କେବଳ ବୃକ୍ଷ ହେଉଛି 'କଳ୍ପବଟ', ଜଗନ୍ନାଥଙ୍କର 'କଳ୍ପବଟ' ଋଷଭଙ୍କର ଏହି 'କଳ୍ପବଟ'ର ପ୍ରତୀକ ପରି ମନେ ହୁଏ । ଜଗନ୍ନାଥଙ୍କର 'ନୀଳଚକ୍ର'

ହେଉଛି ଧର୍ମଚକ୍ର, ନୀଳଚକ୍ର ହେଉଛି ଋଷଭଙ୍କର ଲାଞ୍ଛନ । ଭରତ ବର୍ଷର ଯେଉଁ ସ୍ଥାନରେ ଋଷଭଙ୍କର ପୂଜା ହୁଏ, ସେହି ସ୍ଥାନକୁ କୁହାଯାଏ 'ଚକ୍ରକ୍ଷେତ୍ର' । କେନ୍ଦୁଝର ଜିଲ୍ଲାର ଆନନ୍ଦପୁର ସବ୍‌ଡ଼ିଭିଜନସ୍ଥ ଋଷଭଙ୍କର ପ୍ରାଚୀନ ପୂଜାପୀଠର ନାମ ଥିଲା 'ଚକ୍ରକ୍ଷେତ୍ର' । ପୁରୀକୁ ମଧ୍ୟ 'ଚକ୍ରକ୍ଷେତ୍ର' କୁହାଯାଏ । (୫୪)

ବୌଦ୍ଧଙ୍କ ପରି ଜୈନମାନଙ୍କର ମଧ୍ୟ ତ୍ରିରତ୍ନ-ବିଶ୍ୱାସ ରହିଛି । ଏହି ତ୍ରିରତ୍ନ ଜୈନ ଧର୍ମର ସକଳ ତତ୍ତ୍ୱର ଆଧାର । ଏହା ହେଉଛି ସମ୍ୟକ୍ ଦର୍ଶନ, ସମ୍ୟକ୍ ଜ୍ଞାନ ଓ ସମ୍ୟକ୍ ଚରିତ୍ର । ମୋକ୍ଷ ପ୍ରାପ୍ତି ଲାଗି ଏହି ତ୍ରିରତ୍ନ ଅପରିହାର୍ଯ୍ୟ । (୫୫) ଐତିହାସିକ କେଦାରନାଥ ମହାପାତ୍ର ଜଗନ୍ନାଥ ତ୍ରିମୂର୍ତ୍ତି ତତ୍ତ୍ୱ ସମ୍ପର୍କରେ ଆଲୋଚନା କଲାବେଳେ ଏହାକୁ ଜୈନ ତ୍ରିମୂର୍ତ୍ତି ସହିତ ସଂପୃକ୍ତ କରିଛନ୍ତି । ତାଙ୍କ ମତରେ 'କିମ୍ବଦନ୍ତୀ ଓ ପୁରାଣ ବର୍ଣ୍ଣିତ ଗାଲମାଧବ ଓ ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କ ପୁରୀ ମନ୍ଦିର ନିର୍ମାଣ ବୃତ୍ତାନ୍ତ ଖାରବେଳ ରାଜତ୍ୱ ବୃତ୍ତାନ୍ତର ଛାୟାମାତ୍ର । କିମ୍ବଦନ୍ତୀ ବର୍ଣ୍ଣିତ ନୀଳମାଧବ ମୂର୍ତ୍ତି ପ୍ରସ୍ତରଖଣ୍ଡ ଖୋଦିତ ଜୈନ ତ୍ରିରତ୍ନ ମୂର୍ତ୍ତି । ଏହାହିଁ କଳିଙ୍ଗର ଜୀନାସନ ବା ଜୀନ ସିଂହାସନ । ଏହି ପ୍ରସ୍ତରଖଣ୍ଡରେ ଜୈନ ବା ବୌଦ୍ଧ ତ୍ରିରତ୍ନ ମୂର୍ତ୍ତି ଖୋଦିତ ହୋଇଥିଲା । ଏହାକୁହିଁ ଶବରମାନେ ପୂଜା କରୁଥିଲେ । ତ୍ରିରତ୍ନର ଅନୁକରଣରେ ତ୍ରିମୂର୍ତ୍ତି ନିର୍ମିତ ହୋଇଥିବାରୁ ଏମାନେ ହସ୍ତପଦ ଶୂନ୍ୟ । ଏମାନଙ୍କର ହସ୍ତପଦଶୂନ୍ୟତା ପାଇଁ ପୌରାଣିକମାନେ ପରବର୍ତ୍ତୀ କାଳରେ ନାନା-ପ୍ରକାର ଗଳ୍ପ ଉଦ୍ଭାବନ କରିଥିଲେ; କିନ୍ତୁ ସେମାନଙ୍କର ପ୍ରବଳ ଚେଷ୍ଟା ସତ୍ତ୍ୱେ ସେମାନେ ଏ ବିଷୟ ଲୁଚାଇବା ପାଇଁ ସମର୍ଥ ହୋଇନାହାନ୍ତି । ହିନ୍ଦୁଧର୍ମର ପୁନରୁତ୍‌ଥାନ ଯୁଗରେ ତ୍ରିରତ୍ନ ମୂର୍ତ୍ତି ପରିବର୍ତ୍ତରେ ତ୍ରିରତ୍ନ ସଦୃଶ ତିନୋଟି ହସ୍ତ-ପଦଶୂନ୍ୟ କାଷ୍ଠମୂର୍ତ୍ତି ସ୍ଥାପିତ ହୋଇଥିଲା । (୫୬)

ଜୈନ ତ୍ରିରତ୍ନ ଓ ବୌଦ୍ଧ ତ୍ରିରତ୍ନ ମଧ୍ୟରେ କୌଣସି ସମ୍ପର୍କ ଅଛି କି ନାହିଁ, ଏ ସମ୍ବନ୍ଧରେ ଏଠାରେ ପ୍ରଶ୍ନ ଆସିପାରେ । କାରଣ ଅନେକେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କୁ ବୌଦ୍ଧ ତ୍ରିରତ୍ନ ସହିତ ମଧ୍ୟ ସମ୍ପର୍କିତ କରିଛନ୍ତି । ଯେଉଁ-ମାନେ ଜୈନ ତ୍ରିରତ୍ନ ସହିତ ଜଗନ୍ନାଥ-ମୂର୍ତ୍ତିର ସମ୍ପର୍କ ସ୍ଥାପନ କରିଛନ୍ତି, ସେମାନେ ବୌଦ୍ଧ ତ୍ରିରତ୍ନ ସହିତ ମଧ୍ୟ ସମ୍ପର୍କ ସ୍ୱୀକାର କରିଛନ୍ତି । ପଣ୍ଡିତ

ନୀଳକଣ୍ଠ ଦାସ ଜୈନ, ଜିନ, ମୁନି, ତ୍ରନ୍ ପ୍ରଭୃତି ଶବ୍ଦ ସହିତ ଜୈନ ଓ ବୌଦ୍ଧ ଉଭୟ ଧର୍ମର କିପରି ସମ୍ପର୍କ ଅଛି, ସେ ସମ୍ବନ୍ଧରେ ତାତ୍ତ୍ୱିକ ଆଲୋଚନା କରିଛନ୍ତି । ତାଙ୍କ ମତରେ ଜୈନ ବା ଜିନ ଶବ୍ଦ ଖୁବ ସମ୍ଭବ ଦ୍ରାବିଡ଼ 'ଜିଣ' ଶବ୍ଦରୁ ବ୍ୟୁତ୍ପନ୍ନ । ଏହାର ମୂଳ ହେଉଛି 'ଜିଣ୍' ଧାତୁ । ସଂସ୍କୃତରେ ଏହା 'ଜି' । ପ୍ରାଚୀନ ସୁମେରୁରେ ଏହି 'ଜି' ବା 'ଜୀ' ହେଉଛି ଜୀବନ ଶକ୍ତିର ନାମ । ସଂସ୍କୃତରେ ଏଇଥିରୁ ସୃଷ୍ଟ ହୋଇଛି 'ଜୀବ' ଶବ୍ଦ । ଜୀବ ଉପାସନା ଏ ଦେଶରେ ବହୁ ପ୍ରାଚୀନ, ଏପରିକି ପ୍ରାଗ୍‌ବୈଦିକ । ଜୀବ ଉପାସନାର ଏକ କ୍ରମ ପରିଣତ ରୂପ ହେଉଛି 'ଯୋଗ' । ଯୋଗ ମାର୍ଗର ଉପାସକମାନଙ୍କୁ କୁହାଯାଏ ଯୋଗୀ ବା 'ମୁନି' । 'ମୁନି' ଶବ୍ଦଟି ସଂସ୍କୃତ ମନ୍ (ଜାଣିବା) ଧାତୁରୁ ସୃଷ୍ଟ । ଜିନ ଯୋଗୀଙ୍କର ନାମ ହେଉଛି 'ମୁନି' । 'ଜିନବର' ବୁଦ୍ଧ ହେଉଛନ୍ତି 'ଶାକ୍ୟମୁନି' । ଏହିପରି ଭାବରେ ଜୈନ ଦର୍ଶନ ଓ ବୌଦ୍ଧ ଦର୍ଶନ ସୂକ୍ଷ୍ମଭାବରେ ସଂପୃକ୍ତ । (୫୭)

ଜୈନ ଦର୍ଶନ ଅନୁଯାୟୀ ଜ୍ଞାନ, ଦର୍ଶନ ଓ ଚରିତ୍ର ହେଉଛି 'ଯୋଗ'ର ଅପରିହାର୍ଯ୍ୟ ଅଙ୍ଗ । ବହୁକାଳ ପରେ 'ଜିନବର' ଶାକ୍ୟମୁନି ବୁଦ୍ଧ ଏହାର ସଂସ୍କାର କରି କହିଥିଲେ, 'ତ୍ରିରତ୍ନ' ହେଉଛି 'ବୁଦ୍ଧ' (ଦର୍ଶନଲବ୍ଧ ଜ୍ଞାନ), ଧର୍ମ (ବ୍ୟକ୍ତି ସମ୍ବନ୍ଧରେ ଶୃଙ୍ଖଳିତ କର୍ମ ପରମ୍ପରା) ଓ ସଂଘ (ସେହି ଧର୍ମର ଆଚରଣ ସ୍ଥାନ ବା ସମାଜ) (୫୮) । ପଣ୍ଡିତ ନୀଳକଣ୍ଠଙ୍କ ମତରେ ଜୈନ ଧର୍ମ ହେଉଛି ଭାରତର ଦାର୍ଶନିକ ଧର୍ମର ମୂଳ । ବୌଦ୍ଧଧର୍ମ ହେଉଛି ଜୈନଧର୍ମର ପରବର୍ତ୍ତୀ ସଂସ୍କୃତ ପ୍ରକାଶ । (୫୯) । ସମସ୍ତ ଉପନିଷଦ ଓ ବୈଦିକ ଦର୍ଶନ ଜୈନ ପ୍ରଭାବର ପଙ୍କ । (୬୦)

ସମୃଦ୍ଧ ସିନ୍ଧୁ ସଭ୍ୟତାକୁ ଗଢ଼ିଥିବା ଦ୍ରାବିଡ଼ମାନେ ହେଉଛନ୍ତି ମୂଳତଃ ଜୈନ । ସେମାନଙ୍କ ମଧ୍ୟରେ ଜୀବ-ଉପାସନା ଓ ବୃକ୍ଷ-ଉପାସନା ପ୍ରଚଳିତ ଥିଲା । ଏମାନଙ୍କୁ ବୈଦିକ ଆର୍ଯ୍ୟମାନେ 'ଅସୁର' ନାମରେ ଆଖ୍ୟାତ କରିଛନ୍ତି । ଏହି 'ଅସୁର' ହେଉଛନ୍ତି ଏସିରିଆନ୍ ବା ସେମିଟିକ୍ ପରିବାରର ଲୋକ । (୬୧) ସୁମେରିଆନ୍ ସନ୍ନ୍ୟାସୀମାନଙ୍କ ମୁଣ୍ଡ ଲଣ୍ଡା ହେବା ସହିତ ଭାରତୀୟ ଦ୍ରାବିଡ଼ ଜୈନ-ମାନଙ୍କର ମୁଣ୍ଡ ଲଣ୍ଡା ହେବା ପରି କେତେକ ବ୍ୟାବହାରିକ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । (୬୨)

ଭାରତର ଏହି ପ୍ରାଚୀନତମ ଧର୍ମ ବହୁ ପ୍ରାଚୀନ କାଳରୁ ଓଡ଼ିଶାରେ ପ୍ରଚଳିତ ହୋଇଥିଲା । ବହୁ ଐତିହାସିକ ମତ ଦେଇଥାନ୍ତି ଯେ ପାର୍ଶ୍ୱନାଥ ହେଉଛନ୍ତି ଜୈନଧର୍ମର ପ୍ରବର୍ତ୍ତକ । (୬୩) ତାଙ୍କର ଜନ୍ମକାଳ ଖ୍ରୀ: ପୂ: ୮୨୦ ଓ ତିରୋଧାନ କାଳ ଖ୍ରୀ: ପୂ: ୭୫୦ । (୬୪) କଳିଙ୍ଗର ପ୍ରାଚୀନ ସଂସ୍କୃତି ସହିତ ପାର୍ଶ୍ୱନାଥଙ୍କର ଘନିଷ୍ଠ ସମ୍ପର୍କ ରହିଛି । (୬୫) । ସେ କଳିଙ୍ଗରେ ଧର୍ମ ପ୍ରଚାର କରିଥିବାର ଐତିହାସିକ ପ୍ରମାଣ ରହିଛି । ପାର୍ଶ୍ୱନାଥ ତାମ୍ରଲିପ୍ତ ବନ୍ଦରରୁ ଧର୍ମ ପ୍ରଚାର ଲକ୍ଷ୍ୟରେ କଳିଙ୍ଗ ଅଭିମୁଖେ ଆସି କୋପକଟକରେ ପହଞ୍ଚିଥିଲେ । (୬୬) ନରେନ୍ଦ୍ରନାଥ ବସୁଙ୍କ ମତରେ ଏହି କୋପକଟକ ହେଉଛି ବାଲେଶ୍ୱର ଜିଲ୍ଲାର ଆଧୁନିକ କୁପାରୀ ଗ୍ରାମ । (୬୭) ଏହି କୁପାରୀ ଗ୍ରାମ ୮ମ ଶତାବ୍ଦୀରେ କୋଂପାରକ ଗ୍ରାମରୂପେ ପରିଚିତ ଥିଲା । ୬୮) ଜୈନ ତୀର୍ଥଙ୍କର ମହାବୀର ମଧ୍ୟ (ଖ୍ରୀ: ପୂ: ୫୫୭–ଖ୍ରୀ: ପୂ: ୫୨୭ ଚୋଷଲ (୬୯) ଓ କଳିଙ୍ଗ (୭୦) ରେ ଧର୍ମ ପ୍ରଚାର କରିଥିଲେ । ମହାବୀରଙ୍କ ସମୟରେ କଳିଙ୍ଗ ଏକ ପ୍ରସିଦ୍ଧ ଜୈନଭୂମି ଥିଲା । (୭୧) ଖ୍ରୀ: ପୂ: ୬ଷ୍ଠ ଶତାବ୍ଦୀରେ କଳିଙ୍ଗରାଜ କରଣ୍ଡ (କରକଣ୍ଡୁ) ମହାବୀର ବର୍ଦ୍ଧମାନଙ୍କୁ ଜୈନଧର୍ମ ପ୍ରଚାରାର୍ଥେ କଳିଙ୍ଗକୁ ନିମନ୍ତ୍ରଣ କରି ଆଣିଥିଲେ । (୭୨) କରକଣ୍ଡୁ ଥିଲେ ଜଣେ ନୈଷ୍ଠିକ ଜୈନ । (୭୩ ଖାରବେଳଙ୍କ ସମୟରେ ଜୈନ-ଧର୍ମର ପ୍ରସାର ଓଡ଼ିଶାରେ ଚରମ ସୀମା ସ୍ପର୍ଶ କରିଥିଲା ଓ ଏହି ସମୟରୁ ଓଡ଼ିଶାରେ ଜୈନଧର୍ମର ପ୍ରବଳ ସ୍ରୋତ ଓଡ଼ିଶା ସଂସ୍କୃତିକୁ ପ୍ରଭାବିତ କରିଥିଲା । (୭୪)

ଓଡ଼ିଆମାନଙ୍କର ବିଶ୍ୱାସ ପୁରୀ ଦେଉଳର ବାଇଶ ପାହାଚ ଜୈନ ବାଇଶି ଜଣ ତୀର୍ଥଙ୍କରଙ୍କର ରୂପକ । (୭୫) ଜଗନ୍ନାଥଙ୍କର 'ମହାପ୍ରସାଦ'ର ଅନ୍ୟନାମ 'କୈବଲ୍ୟ' । ଏହାର ମୂଳ ମଧ୍ୟ ଜୈନଧର୍ମରେ ଅଛି ବୋଲି ବିଶ୍ୱାସ କରାଯାଏ । ପଣ୍ଡିତ ନୀଳକଣ୍ଠଙ୍କ ମତରେ, ଜୈନ ଦର୍ଶନରେ ଅଛି ଜୀବ, ଅଜୀବର ସମବାୟରେ ବ୍ୟକ୍ତି ବା ସୃଷ୍ଟି । ଅଜୀବରୁ ଜୀବକୁ ଅଲଗା କଲେ ବ୍ୟକ୍ତି ହେବ କେବଳ ଜୀବମାତ୍ର ବା 'କେବଳୀ' । ଏହି କେବଳୀଭାବ (କେବଳୀତ୍ୱ) ହେଉଛି କୈବଲ୍ୟ । କୈବଲ୍ୟ ପ୍ରାପ୍ତି ହେଲେ ନିର୍ବାଣ ପ୍ରାପ୍ତ ହୁଏ । (୭୬)

କେତେକଙ୍କ ମତରେ 'ପୁରୁଷୋତ୍ତମ' ତତ୍ତ୍ୱଟି ଜୈନ ପରମ୍ପରାରୁ ଉଦ୍ଭାବିତ । ଜୈନ ଧର୍ମଶାସ୍ତ୍ର ଅନୁଯାୟୀ ଅଧ୍ୟାତ୍ମ ଶରୀରୀଙ୍କ ମଧ୍ୟରେ ପୁରୁଷୋତ୍ତମ ହେଉଛନ୍ତି ଶ୍ରେଷ୍ଠ । ଏହି ପୁରୁଷୋତ୍ତମ ଗୀତା-ବର୍ଣ୍ଣିତ ପୁରୁଷୋତ୍ତମଠାରୁ ସ୍ୱତନ୍ତ୍ର ଓ ବହୁ ପ୍ରାଚୀନ । (୭୭) ଜଗନ୍ନାଥ ଧର୍ମର ପୁରୁଷୋତ୍ତମ-ଚେତନା ଭିତରେ ରହିଛି ବିଶ୍ୱୈକପ୍ରାଣତା, ବିଶ୍ୱପୁରୁଷ, ଅନନ୍ତ ପୁରୁଷ-ସତ୍ତାର ନିର୍ଯ୍ୟାସ । ପଣ୍ଡିତ ନୀଳକଣ୍ଠ ଜଗନ୍ନାଥ ଧର୍ମର ପୁରୁଷୋତ୍ତମ ଚେତନାଟିକୁ ସୁନ୍ଦର ଭାବରେ ବିଶ୍ଳେଷଣ କରିଛନ୍ତି :—ଉପାସ୍ୟ ଦେବତା ବା ଈଶ୍ୱରରେ ଗୁଣ ଓ ଶକ୍ତିର ଆରୋପ କରି ତାହାରି ଗାନ କରିବା ହେଉଛି ଭଜନ, ସ୍ତବ, ସ୍ତୁତି ବା ଉପାସନା । ଏହା ପ୍ରାକୃତ ଧର୍ମ । ଜଗନ୍ନାଥ ଧର୍ମ ଏହି ପ୍ରାକୃତ ଧର୍ମଠାରୁ ଭିନ୍ନ । ଜଗନ୍ନାଥ ଧର୍ମରେ ଉପାସନା କହିଲେ ଉପାସ୍ୟରେ ଆରୋପିତ ଗୁଣ ଓ ଶକ୍ତିର ଯଶୋଗାନ ନୁହେଁ, ଉପାସ୍ୟର ପାଖରେ ରହିବା ପରି ବିଗ୍ରହରି ତନ୍ମୟ ହେବାର ନିରନ୍ତର ପ୍ରଯତ୍ନ । ଏ ପ୍ରଯତ୍ନରେ ଆତ୍ମାର ବନ୍ଧନ ଫିଟିଯାଏ ଓ ଏହା କ୍ରମେ ମୁକ୍ତି ବା ନିର୍ବାଣ ଅଭିମୁଖୀ ହୁଏ । ନିଜ 'ଆତ୍ମା-ପୁରୁଷ'ର ସୁଖ ପାଇଁ ଭୋଗ ବା ଲାଳସା ଜାଗ୍ରତ ହୁଏ ନାହିଁ । କ୍ରମଶଃ ପରିବାରର ସୁଖ ଦୁଃଖକୁ ନିଜର ସୁଖଦୁଃଖ ବୋଲି ଭାବିବା ଦ୍ୱାରା ଆତ୍ମା-ପୁରୁଷ ନିଜର ସଙ୍କୀର୍ଣ୍ଣ ବ୍ୟକ୍ତି ବନ୍ଧନକୁ ମୁକୁଳା କରି ସମସ୍ତ ପରିବାରରେ ବ୍ୟାପ୍ତ ହୋଇ ଏକାକାର ବା ତନ୍ମୟ ହୋଇଯାଏ । ସେହିପରି ଦେଶାତ୍ମବୋଧ ଜାଗରଣରେ ଆତ୍ମପୁରୁଷ ସମଗ୍ର ଦେଶ ସଙ୍ଗରେ ଅନନ୍ୟ ହୋଇଯାଏ । ସେହିପରି ସମଗ୍ର ମାନବ ସମାଜ ବା ଜଗତକୁ ନିଜର ଆତ୍ମାପୁରୁଷ ସଙ୍ଗରେ ଏକାକାର କରିପାରିଲେ 'ପୁରୁଷ', ଶ୍ରେଷ୍ଠ ପୁରୁଷ ବା 'ପୁରୁଷୋତ୍ତମ'ରେ ପରିଣତ ହୁଏ । 'ପୁରୁଷ' ଓ 'ଜଗତ୍' ଏଠାରେ ଅଭିନ୍ନ । ତେଣୁ ପୁରୁଷନାଥ ଅର୍ଥ ଜଗନ୍ନାଥ, ଅର୍ଥାତ୍ 'ପୁରୁଷୋତ୍ତମ' ଅର୍ଥ ଜଗନ୍ନାଥ । 'ଜଗନ୍ନାଥ' କହିଲେ ଜଗତର ପ୍ରଭୁ ବା ନିଗ୍ରହାନୁଗ୍ରହ ସମର୍ଥ ବିଭୂତିମନ୍ତ ବିଭୁ ନୁହନ୍ତି, ଜଗଦ୍‌ରୂପକ ପୁରୁଷର ଉତ୍ତମ ବା ଶ୍ରେଷ୍ଠ ସ୍ୱରୂପ । ସେହି ଜଗତ୍ ସ୍ୱରୂପ ପୁରୁଷର ବା ପୁରୁଷୋତ୍ତମର ସୁଖ ଦୁଃଖରେ ନିଜେ ସୁଖୀ-ଦୁଃଖୀ ହୋଇ ପାରିଲେ, ଅର୍ଥାତ୍ ସମଗ୍ର ବିଶ୍ୱର ଅନୁଭବ ସଙ୍ଗରେ ନିଜର ଅନୁଭବକୁ ସାମିଲ କରି ପାରିଲେହିଁ ହେବ ଜଗନ୍ନାଥଙ୍କର ଉପାସନା । ନିଜର ସୀମିତ ବ୍ୟଷ୍ଟି ବା ବ୍ୟକ୍ତି କର୍ମକୁ ଜଗତ୍-ପୁରୁଷ-ଚେତନାରେ

ଉଦ୍‌ବୁଦ୍ଧ କରି ଜଗତ୍ ପାଇଁ ଉତ୍ସର୍ଗ କରିବା ହିଁ ଜଗନ୍ନାଥ ଧର୍ମ । ପୁରୁଷକୁ ଜଗତ୍ ବା ଜଗତ୍‌କୁ ପୁରୁଷ ସହ ଅଭେଦ କଳ୍ପନା କରିବା ହେଉଛି ଜୈନଧର୍ମର ନିଜସ୍ୱ । (୭୮) ଜଗନ୍ନାଥ ଧର୍ମରେ ଅନ୍ୱିତ ହେଲେ ଜନତାର ସେବାଲାଗି ପ୍ରୟୋଜନ ହେଉଥିବା କୌଣସି କାର୍ଯ୍ୟକୁ ଘୃଣ୍ୟ କାର୍ଯ୍ୟ ବୋଲି ବିବେଚନା କରିବାର ଅବକାଶ ରହେ ନାହିଁ । ସମାଜର ମୁଖ୍ୟ ଲୋକେ ଜଗତ୍ ପୁରୁଷର (ମାନବ ସମାଜର) ସେବା କରି ଜଗନ୍ନାଥ ଧର୍ମର ଯଥାର୍ଥ ଉପାସନା ଦେଖାଇବା ଆବଶ୍ୟକ ବୋଲି ଓଡ଼ିଆ ଆହ୍ୱାନ ଦେଇଛି ଏବଂ ଓଡ଼ିଆ ଜାତିର ମଉଡ଼ମଣି ମଣିଷ ଗଜପତି ତେଣୁ ସ୍ୱୟଂ ଜଗତ୍ ପୁରୁଷର ଶ୍ରେଷ୍ଠ ସ୍ୱରୂପ ଜଗନ୍ନାଥଙ୍କର ସେବକ ବା 'ନିଯୋଗ' ଭାବରେ ହାଡ଼ିର କାର୍ଯ୍ୟ 'ଛେରାପହଁରା' କରିବାକୁ କୁଣ୍ଠାବୋଧ ନ କରି ବରଂ ପରମ ଗୌରବ ବୋଲି ମନେ କରନ୍ତି । (୭୯)

କ୍ରମେ 'ପୁରୁଷୋତ୍ତମ' ଜଗନ୍ନାଥଙ୍କୁ ନ ବୁଝାଇ କ୍ଷେତ୍ର ବିଶେଷ ପୁରୀ)କୁ ବୁଝାଇଲା । ପୁରୁଷୋତ୍ତମ (ପୁରୀ) କ୍ଷେତ୍ରରେ ଜୈନଧର୍ମ ପରମ୍ପରା ସଙ୍ଗେ ଘନିଷ୍ଠ ଭାବରେ ସଂଶ୍ଳିଷ୍ଟ କଳ୍ପବୃକ୍ଷ ମଧ୍ୟ ପୁରୁଷୋତ୍ତମ (ପୁରୁଷେଶ) ଭାବରେ ଅଭିହିତ ହେଲା—

'ପୁରୁଷେଶମିତି ଖ୍ୟାତଂ ବଟରାଜସନାତନମ୍' । (୮୦)

ସ୍କନ୍ଦପୁରାଣରେ ମଧ୍ୟ ତଦନୁରୂପ ଶ୍ଳୋକ ଦେଖିବାକୁ ମିଳେ ।

ଡକ୍‌ଟର ବେଣୀମାଧବ ପାଢ଼ୀଙ୍କ ମତରେ ଜୈନଧର୍ମର ଏହି କଳ୍ପବୃକ୍ଷ ବୃକ୍ଷଧର୍ମୀ ଶବରର ଦେବତା ଉପରେ ଆରୋପିତ ହୋଇ ବହୁଦିନରୁ ପୂଜା ପାଇ ଆସୁଅଛି । (୮୧) ସେ ଅନୁମାନ କରିଛନ୍ତି, ଏକତ୍ର ଅବସ୍ଥାନ ଦ୍ୱାରା ଆଦିବାସୀ ଶବରର ଦାରୁଦେବତାଙ୍କ ଉପରେ ଦ୍ରାବିଡ଼ ଜୈନର କ୍ରମଶଃ ପ୍ରଭାବ ପଡ଼ିବାରୁ ଶବର ଗୋଷ୍ଠୀରେ 'ପୁରୁଷୋତ୍ତମ' ଭାବ ପ୍ରସିଦ୍ଧି ଲାଭ କଲା । ଫଳତଃ ଦାରୁ ବା ମାଦଳା ଦେବତା 'ପୁରୁଷୋତ୍ତମ' ଓ 'ଜଗନ୍ତ ନାଥ' ବା 'ଜଗନ୍ନାଥ' ନାମରେ ଉଭୟ ଗୋଷ୍ଠୀର ଉପାସ୍ୟ ହୋଇ ଉଠିଲେ । (୮୨)

ଶବର ଉପାସିତ ଦାରୁମୂର୍ତ୍ତି ଆକାରରେ ଜୈନମାନଙ୍କର ଧର୍ମ ସଙ୍କେତ ବଦ୍ଧମଙ୍ଗଳ ଓ ନନ୍ଦୀପଦର ଏକ ସମନ୍ୱିତ ରୂପ ପରି ମନେହୁଏ । ବଦ୍ଧମଙ୍ଗଳ

(ପରିବର୍ଦ୍ଧିତ) ସଙ୍କେତ ଉପରେ ନନ୍ଦୀପଦ (ପରିବର୍ଦ୍ଧିତ ଚକ୍ଷୁମୁଖ ବିଶିଷ୍ଟ) ସଙ୍କେତଟିକୁ ଥୋଇ ଏକ ମୂର୍ତ୍ତିର କଳ୍ପନା କରଯାଇଥିଲ ଯାହା ଶବର ଉପାସିତ ଦାରୁମୂର୍ତ୍ତି ସହିତ ସାମ୍ୟରକ୍ଷା କରୁଥିଲ । (୮୩) ଅନେକ ପଣ୍ଡିତଙ୍କ ମତରେ ଜୈନମାନେ ହେଉଛନ୍ତି ପ୍ରଥମ ମୂର୍ତ୍ତିଉପାସକ । ସେମାନେ ତୀର୍ଥଙ୍କରମାନଙ୍କ ପାଇଁ ମୂର୍ତ୍ତି (ଚୈତ୍ୟ) ଓ ମୂର୍ତ୍ତିପୂଜା ପାଇଁ ଚୈତ୍ୟାଳୟ ଗଠନ କରୁଥିଲେ । (୮୪) ସାକାର ଉପାସକ ଜୈନମାନେ ଶବରର ଦାରୁଦେବତା ଭିତରେ ନିଜ ଧର୍ମ-ସଙ୍କେତର (ବଦ୍ଧମଙ୍ଗଳ ଓ ନନ୍ଦୀପଦର) ସାମ୍ୟ ଲକ୍ଷ୍ୟ କରି ତାହାକୁ ନିଜସ୍ୱ କରି ନେଇଛନ୍ତି । ଏକ ପକ୍ଷରେ ସରଳବିଶ୍ୱାସୀ ଶବରମାନଙ୍କର ଧର୍ମପ୍ରଚାରର ଅଭାବ ଓ ଅନ୍ୟ ପକ୍ଷରେ କଳିଙ୍ଗରେ ଜୈନମାନଙ୍କର ଧର୍ମପ୍ରଚାରର ପ୍ରବଳ ପ୍ରଭାବ ଦାରୁ-ଦେବତାଙ୍କୁ ଜୈନଦେବତା ଭାବରେ ପ୍ରତିଷ୍ଠିତ କରିଛି । ଫଳରେ ଉପାଦାନ ଦାରୁ ହେଲେ ମଧ୍ୟ ବାହ୍ୟ ରୂପଟି ଜୈନ 'ପୁରୁଷୋତ୍ତମ' ରୂପେ ଲୋକରେ ପ୍ରସିଦ୍ଧି ଲାଭ କରିଅଛି । (୮୫)

ସଭ୍ୟତାର ପ୍ରାଥମିକ ସ୍ତରରେ ଏକ-ଉପାସନା ପ୍ରଚଳିତ ଥାଏ, ସଭ୍ୟତାର ବିକାଶରେ ବହୁ-ଉପାସନା ଦେଖାଯାଏ । ଅଷ୍ଟ୍ରିକ୍ ଗୋଷ୍ଠୀର ଶବର ଯେଉଁ ଏକ 'ଦାରୁ ଦେବତା'ଙ୍କୁ ଆଦିମ କାଳରୁ ପୂଜା କରି ଆସୁଥିଲ, ଜୈନଧର୍ମ ପ୍ରଭାବରେ ସେହି 'ଦାରୁ ଦେବତା' ବହୁତ୍ୱ-ପ୍ରାପ୍ତ ହୋଇଥିବେ ଅର୍ଥାତ୍ ତ୍ରିମୂର୍ତ୍ତି (ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା) ଏବଂ ଚତୁର୍ଦ୍ଧାମୂର୍ତ୍ତି (ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ)ରେ ପରିଣତ ହୋଇଥିବେ । (୮୬)

ଅଷ୍ଟ୍ରିକ ଶବରର ଦାରୁ ଦ୍ରାବିଡ଼ ଜୈନର ପ୍ରଭାବରେ ନୂତନ ରୂପ ଧାରଣ କରିଥିବାରୁ ଜଗନ୍ନାଥଙ୍କୁ ଜୈନ 'ଜିନ ନାଥ' ରୂପେ କଳ୍ପନା କରିବାରେ ଅସମୀଚୀନତା ନାହିଁ । (୮୭) ଏଠାରେ 'ନାଥ' ଅର୍ଥ ପୁରୁଷ । ଅଧିକାଂଶ ଜିନଙ୍କ ନାମରେ 'ନାଥ' ଯୋଗ କରାଯାଏ । ସମ୍ବଲପୁର ଅଞ୍ଚଳର ରାଜା ଇନ୍ଦ୍ରଭୂତି ତାଙ୍କର 'ଜ୍ଞାନସିଦ୍ଧି' ଗ୍ରନ୍ଥର ମଙ୍ଗଳାଚରଣରେ ଲେଖିଛନ୍ତି—'ପ୍ରଣପତ୍ୟ ଜଗନ୍ନାଥଂ ସର୍ବଜିନ ବରାର୍ଚ୍ଚିତମ୍' । (୮୮) ଏଠାରେ ବ୍ୟବହୃତ ଜଗନ୍ନାଥ' ଶବ୍ଦ ବୁଦ୍ଧଦେବଙ୍କର ବିଶେଷଣ ବୋଲି ଅନେକେ ମତ ଦେଇଥିଲେ ହେଁ ଓଡ଼ିଶାର ରାଜା ଇନ୍ଦ୍ରଭୂତି

ଓଡ଼ିଶାର ରାଷ୍ଟ୍ରଦେବତା ଜଗନ୍ନାଥଙ୍କ ଭିତରେ ବୁଦ୍ଧଙ୍କୁ ଓ ବୁଦ୍ଧଙ୍କ ଭିତରେ ଜଗନ୍ନାଥଙ୍କୁ କଳ୍ପନା କରିବାରେ କୌଣସି ଅସ୍ୱାଭାବିକତା ନାହିଁ । ଇନ୍ଦ୍ରଭୂତି (୮ମ ଶତାବ୍ଦୀର ମଧ୍ୟଭାଗ)ଙ୍କ ସମୟକୁ ଜଗନ୍ନାଥଙ୍କ ମଧ୍ୟରେ ବୁଦ୍ଧତ୍ୱ ଆରୋପଣ କରାଗଲାଣି । ବୌଦ୍ଧଧର୍ମ ହେଉଛି ଜୈନଧର୍ମର ସମ୍ପ୍ରସାରିତ-ପ୍ରକାଶିତ ପରବର୍ତ୍ତୀ ଧର୍ମ । ତେଣୁ ବୌଦ୍ଧଧର୍ମରେ ଜୈନଧର୍ମର କିଛି ମୁଦ୍ରାଙ୍କନ ରହିଯିବା ମଧ୍ୟ ସ୍ୱାଭାବିକ । 'ପ୍ରଣିପତ୍ୟ ଜଗନ୍ନାଥଂ ସର୍ବଜିନ ବରାର୍ଚ୍ଚିତମ୍' ପଦରେ 'ଜିନ' ଶବ୍ଦଟି ଜଗନ୍ନାଥଙ୍କର ଜିନତ୍ୱ ପ୍ରତିପାଦିତ କରୁଅଛି । (୮୯) ଏହି ପଦର ଦ୍ୱିତୀୟ ପାଦରେ 'ସର୍ବ ବୁଦ୍ଧମୟଂ ସିଦ୍ଧି ବ୍ୟାପିନଂ ଗଗନୋପମ୍'ରେ 'ବୁଦ୍ଧମୟଂ' କହିବା ଦ୍ୱାରା ଏଠାରେ ବୁଦ୍ଧଦେବଙ୍କ ଅପେକ୍ଷା ଜଗନ୍ନାଥଙ୍କୁ ହିଁ ଅଧିକ ସ୍ପଷ୍ଟତଃ ଲକ୍ଷ୍ୟ କରଯାଉଅଛି । ତେଣୁ ଜଗନ୍ନାଥଙ୍କ ମଧ୍ୟରେ ଇନ୍ଦ୍ରଭୂତି ସର୍ବଜିନତ୍ୱ ଆରୋପ କରିଛନ୍ତି ।

ହୁଏନସାଂଙ୍କ ଭ୍ରମଣ କାହାଣୀରେ ଉଡ଼୍ରିୟାନରେ (ଓଡ଼ିଶାରେ) ନବେ ଫୁଟ ଉଚ୍ଚର ଏକ କାଷ୍ଠ ସ୍ତମ୍ଭ ଦେବତା ଭାବରେ ପୂଜା ପାଉଥିବା କଥା ଉଲ୍ଲେଖ କରିଛନ୍ତି । ବୋଧହୁଏ ଏହି ଉପାସ୍ୟ କାଷ୍ଠ ଦେବତା ହେଉଛନ୍ତି ଶବରର ଶବରୀନାରାୟଣ ଯେ ପରବର୍ତ୍ତୀ କାଳରେ 'ଜିନନାଥ' ଭାବରେ ପୂଜିତ ହୋଇଛନ୍ତି । ହୁଏନସାଂଙ୍କ ବିବରଣୀରୁ ପୁଣି ଜଣାଯାଏ, କଳିଙ୍ଗ ଉପକୂଳରେ ଜଗନ୍ନାଥ ପ୍ରଥମେ ସମ୍ଭବତଃ ଗୋଟିଏ କଳାପଥର ଭାବରେ ପୂଜା ପାଉଥିଲେ ଏବଂ ଏହି କଳାପଥରଟିକୁ କଳିଙ୍ଗ ଜିନ ବା ଜିନଙ୍କର ପ୍ରତୀକ ବୋଲି କୁହା-ଯାଉଥିଲା । ପରେ ଏହାଙ୍କର ନାମ ହେଲା 'ନୀଳମାଧବ' (ନୀଳ ଓ କୃଷ୍ଣ ସମପର୍ଯ୍ୟାୟବାଚୀ) । ଏହା ସମ୍ଭବତ 'ନୀଳମାଧବ'ରୁ ପୃଥକ । ଏହାର ଅର୍ଥ ହେଉଛି ନୀଳ (Blue)–ମା (Mother)–ଧବ (White) । ଏହାର ଦାର୍ଶନିକ ଅର୍ଥ ହେଲା ନିଃସତ୍ତା (non existence ଜନନ (principle of generation) ଓ ଶୁକ୍ଳ (phenomenal expression of the universe) (୯୦) ପଣ୍ଡିତ ନୀଳକଣ୍ଠଙ୍କ ମତରେ ଜଗନ୍ନାଥ ଏକ ଜୈନ ଅନୁଷ୍ଠାନ (୯୧) । ନୀଳ, ମା, ଧବ–ଏହି ତିନି ତତ୍ତ୍ୱର ସମ୍ଭବତଃ ଯଥାକ୍ରମେ ଜଗନ୍ନାଥ, ସୁଭଦ୍ରା ଓ ବଳଭଦ୍ରଙ୍କର ଉନ୍ମେଷ । ପଣ୍ଡିତ ନୀଳକଣ୍ଠ ପୁଣି ମତ

ଦେଇଛନ୍ତି କଳିଙ୍ଗର ରାଜା ଚୋଡ଼ଗଙ୍ଗଦେବ (ଖ୍ରୀ: ୧୦୭୭–୧୧୪୮) ଶୈବରୁ ବୈଷ୍ଣବ ହେବା ପରେ ଜୈନ ପ୍ରତୀକ ନୀଳମାଧବ (ଜଗନ୍ନାଥ)ଙ୍କ ନିମନ୍ତେ ଏକ ବଡ଼ ମନ୍ଦିର ନିର୍ମାଣ କରାଇ ତାହାକୁ ହିନ୍ଦୁଧର୍ମର ପ୍ରଧାନ ପୀଠରେ ପରିଣତ କରିବାକୁ ଚେଷ୍ଟା କରିଥିଲେ । (୯୨)

ଅତୀତର ଇତିହାସ ସ୍ମରଣ କରାଇଦିଏ ଯେ, ହୁଏନସାଂ (୭ମ ଶତାବ୍ଦୀର ମଧ୍ୟଭାଗ) କଳିଙ୍ଗର ଯେଉଁ ଜିନ ମୂର୍ତ୍ତି କଥା କହିଛନ୍ତି, ସେହିପରି ଏକ ଜିନ ମୂର୍ତ୍ତି ଖ୍ରୀ ପୂ: ୪ର୍ଥ ଶତାବ୍ଦୀରେ ମଧ୍ୟ ଉପାସିତ ହେଉଥିବାର ସମ୍ଭାବନା ରହିଛି । ଏହି 'କଳିଙ୍ଗ ଜିନ'ଙ୍କୁ ମଗଧର ରାଜା ନନ୍ଦ (ଖ୍ରୀ: ପୂ: ୪ର୍ଥ-୫ମ ଶତାବ୍ଦୀ) ଓଡ଼ିଶାରୁ ବଳପୂର୍ବକ ମଗଧକୁ ନେଇଯାଇଥିଲେ । କଳିଙ୍ଗର ଜୈନ ସମ୍ରାଟ ଖାରବେଳ (ଖ୍ରୀ: ପୂ: ୨ୟ ଶତାବ୍ଦୀ) ମଗଧ ଆକ୍ରମଣ କରି ପୁଣି ତାହାକୁ ଓଡ଼ିଶାକୁ ଫେରାଇ ଆଣିଥିଲେ । (୯୩) ଚୋଡ଼ଗଙ୍ଗଦେବ ରାମାନୁଜଙ୍କ ନିର୍ଦ୍ଦେଶରେ ଜୈନପ୍ରତୀକ ନୀଳମାଧବଙ୍କୁ (ଜଗନ୍ନାଥଙ୍କୁ ମନ୍ଦିରରେ ପ୍ରତିଷ୍ଠା କରିଥିଲେ । ନୀଳମାଧବ (ନୀଳ, ମା, ଧବ) ତ୍ରିମୂର୍ତ୍ତି (ଜଗନ୍ନାଥ, ସୁଭଦ୍ରା ଓ ବଳଭଦ୍ର) ଓ ଜୈନ ଧର୍ମଚକ୍ରର ଆକାର ବିଶିଷ୍ଟ ସୁଦର୍ଶନ ଚକ୍ର (ପରେ ସ୍ତମ୍ଭାକାର) ମିଶ୍ରଣରେ ଚତୁର୍ଦ୍ଧାମୂର୍ତ୍ତି ମନ୍ଦିରରେ ସ୍ଥାପିତ ହେଲେ ।

କଳିଙ୍ଗର ଏହି ଜିନ ମୂର୍ତ୍ତି ଖ୍ରୀ: ପୂ: ୪ର୍ଥ ଶତାବ୍ଦୀରେ କଳା ଓ ଭାସ୍କର୍ଯ୍ୟରେ ଥିଲା ଅତୀବ ମନୋମୁଗ୍ଧକର । ଏଥିରେ କଳିଙ୍ଗର ଶିଳ୍ପକଳାରେ ଅନ୍ତର୍ଦ୍ଦୃଷ୍ଟିର ପରିଚୟ ମିଳୁଥିଲା । ଏହା ଥିଲା ଅତୀବ ଆକର୍ଷଣୀୟ (most attractive) ଓ ଜୀବନ୍ତ ମୂର୍ତ୍ତି (life like image) । ଏହାର ଦର୍ଶନମାତ୍ରେ ମହାପରାକ୍ରମଶାଳୀ ଗର୍ବିତ ଉଦ୍ଧତ ନନ୍ଦରାଜାମାନେ ଭକ୍ତିରେ ଏହାର ଚରଣ ତଳେ ଜାନୁ ଅବନତ କଲେ । ତେଣୁ ଏହି ମୂଲ୍ୟବାନ ଜିନ ମୂର୍ତ୍ତିକୁ ସେମାନେ ଧରି ପଳାଇ-ଥିଲେ । (୯୪) ଜଗନ୍ନାଥ ମୂର୍ତ୍ତି ମଧ୍ୟରେ କଳା-ଭାସ୍କର୍ଯ୍ୟର ଗରିମା ନାହିଁ ସତ କିନ୍ତୁ ଏହା ଭିତରେ କି ଆକର୍ଷଣୀୟତା ଅଛି, ଯାହାର ଦର୍ଶନରେ ଦେହ ଶିହରି ଉଠେ । ପାଶ୍ଚାତ୍ୟ ଲେଖକ ଏଡ୍‌ୱାର୍ଡ଼ ଥମସନ୍ ଜଗନ୍ନାଥ ମୂର୍ତ୍ତି ଓ ମନ୍ଦିରକୁ କୁତ୍ସିତ ବୋଲି ଆକ୍ଷେପ କରିଛନ୍ତି–'ଦୁର୍ନାମରେ ପ୍ରସିଦ୍ଧ ଜଗନ୍ନାଥ ତୀର୍ଥ, ଯେଉଁ-

ଠାରେ ଅଛି ଏକ କୁତ୍ସିତ ମନ୍ଦିର, ସେଠାରେ କିମ୍ଭୂତକିମାକାର ଲୋକେ କୁତ୍ସିତତାକୁ ଈଶ୍ୱରଙ୍କ ଗୁଣ ବୋଲି ମନେକରି ପୂଜା କରନ୍ତି ଓ ବ୍ରାହ୍ମଣ୍ୟ ଧର୍ମ ପୁଣି ଏ ପୂଜାକୁ ଆଧୁନିକ ଜଗତର ଅନ୍ୟ ଧର୍ମଠାରୁ ବଡ଼ ବୋଲି ଗର୍ବ କରେ । (୯୫) ୰ ପଣ୍ଡିତ ଜବାହରଲାଲ ଥରେ ମହତାବଙ୍କୁ ପଚାରିଥିଲେ–"ମହତାବ, ତୁମେ ଜାଣ ଏ ଜଗନ୍ନାଥର ଇତିବୃତ୍ତି କିଛି ? ମୁଁ ଯେତେବେଳେ ପୁରୀ ଯାଇଥିଲି, ସେ ମୂର୍ତ୍ତି ଦେଖିଥିଲି, ମୋର ଦେହ ସେ କୁତ୍ସିତତା ଦର୍ଶନରେ ଶିହରି ଉଠିଥିଲା । ସେ ମୂର୍ତ୍ତି କଅଣ ? (୯୬)

ଶବର ଓ ଦ୍ରାବିଡ଼ (ଜୈନ) ଦେବତା ଅନ୍ୟ ଆଖିରେ ଅଚିକ୍କଣ, ଅଘଟଣ, ଅସୁନ୍ଦର ଦିଶି ପାରନ୍ତି କିନ୍ତୁ ଶବର ଓ ଦ୍ରାବିଡ଼ ସଂସ୍କୃତି ସହିତ ଘନିଷ୍ଠ ଭାବରେ ସମ୍ପୃକ୍ତ ଓଡ଼ିଆ ଆଖିରେ ଦାରୁ ଦେବତା ବା ନୀଳମାଧବ (ଜଗନ୍ନାଥ) ଚିର ସୁନ୍ଦର ।

ପୂର୍ବ ଆଲୋଚନାମାନଙ୍କରୁ ଏହା ପ୍ରତିପାଦିତ ହେଉଛି ଯେ, ଜଗନ୍ନାଥଙ୍କୁ ଜୈନ ଦେବତା ଭାବରେ କଳ୍ପନା କରିବାର ବହୁ ପ୍ରମାଣ ଓଡ଼ିଶାର ସଂସ୍କୃତି ଭିତରେ ରହିଛି । ଜୈନର ପୁରିମ୍ପୁତ୍ତୀ ବା ପୁରିସୋତ୍ତମ ଓଡ଼ିଆର ପୁରୁଷୋତ୍ତମ, ଜୈନର 'ଜୀନଦେବ', ଅର୍ହନ୍, 'ବାସୁଦେବ' ଓଡ଼ିଆର ଜଗନ୍ନାଥ ପରଂବ୍ରହ୍ମ ଓ କୃଷ୍ଣ-ବାସୁଦେବ । ଜୈନଧର୍ମ ଗ୍ରନ୍ଥର 'ନନ୍ଦୀ ସୂତ୍ର'ରେ ମଧ୍ୟ 'ଜଗନ୍ନାଥ' ଶବ୍ଦର ଅର୍ଥ ଜଗତ ପାଳକ ବା ଜିନ ଦେବ ଭାବରେ ଉଲ୍ଲିଖିତ । ତୀର୍ଥଙ୍କର ନାମକ ଗ୍ରନ୍ଥରେ 'କଳିଙ୍ଗ' ଜୈନ 'ଆଦିନାଥ'ଙ୍କର ଏକ ପୁତ୍ର ଭାବରେ କଥିତ । ଏସବୁ ସତ୍ତ୍ୱେ ଆଶ୍ଚର୍ଯ୍ୟର ବିଷୟ, ଓଡ଼ିଆ ଭାଷାର କୌଣସି ଧର୍ମଗ୍ରନ୍ଥ ବା ସାହିତ୍ୟ ଗ୍ରନ୍ଥରେ 'ଜଗନ୍ନାଥ'ଙ୍କୁ 'ଜିନ' ବୋଲି କୁହାଯାଇ ନାହିଁ । (୯୭) ଡକ୍ଟର ବଂଶୀଧର ମହାନ୍ତିଙ୍କ ଭାଷାରେ, "ତେଣୁ ସନ୍ଦେହ ଆସେ, ଯଦି ଜଗନ୍ନାଥ ଧର୍ମର ମୂଳ ଜୈନଧର୍ମ, ତେବେ ଏ ଜାତିର ଏତେ ବଡ଼ ଜୈନ ସଂସ୍କୃତିରେ କାହିଁ ଗୋଟିଏ ହେଲେ ତ 'ଜିନ୍' ଶବ୍ଦ ମିଳୁନାହିଁ ।" (୯୮) ଆମ୍ଭମାନଙ୍କର ମନେହୁଏ ଜଗନ୍ନାଥଙ୍କର ମୂର୍ତ୍ତି-ତତ୍ତ୍ୱରେ ଆଦିବାସୀ ବା ଶବର ସଂସ୍କୃତି ମୂର୍ତ୍ତି–ତତ୍ତ୍ୱର ସ୍ପଷ୍ଟ ସଙ୍କେତ ରହିଅଛି, କିନ୍ତୁ ଜୀନ ମୂର୍ତ୍ତି, ବୁଦ୍ଧ ମୂର୍ତ୍ତି ବା ବିଷ୍ଣୁ ମୂର୍ତ୍ତିର ରୂପରେଖ

ତହିଁରେ ଆଦୌ ଲକ୍ଷିତ ହୁଏନାହିଁ ।" (୯୯) "ଜଗନ୍ନାଥ ଧର୍ମରେ ଅନ୍ୟାନ୍ୟ ଧର୍ମର ପ୍ରଭାବ ପରି ଜୈନ ଧର୍ମର ମଧ୍ୟ ପ୍ରଭାବ ରହିଛି, କିନ୍ତୁ ତାହା ଯେ ମୁଖ୍ୟତଃ ଜୀନଦେବ, ତାହାର ପ୍ରମାଣ ମୂର୍ତ୍ତିତତ୍ତ୍ୱ ଓ ଇତିହାସ ଦୃଷ୍ଟିରୁ ବିଶେଷ କିଛି ନାହିଁ ବୋଲି ମନେ ହୋଇଥାଏ ।" (୧୮୦)

## ଆଦିବାସୀ ସଂସ୍କୃତିର ପ୍ରାଧାନ୍ୟ—

ଜଗନ୍ନାଥ ଧର୍ମ ଜୈନ ଧର୍ମ ଦ୍ୱାରା ବହୁ ଭାବରେ ପ୍ରଭାବିତ, ଏଥିରେ ସନ୍ଦେହ ନାହିଁ; କିନ୍ତୁ ଶବର ଓ ଜୈନ, ଏହି ଦୁଇ ସଂସ୍କୃତିକୁ ତୁଳନାତ୍ମକ ଭାବରେ ବିଗ୍ୱର କଲେ, ଜଣାଯାଏ ଯେ ଜଗନ୍ନାଥ-ମୂର୍ତ୍ତି ଓ ଜଗନ୍ନାଥ ସମ୍ପର୍କୀୟ କିମ୍ବଦନ୍ତୀ ଓ ସାହିତ୍ୟ ମଧ୍ୟରେ ଜୈନ ଧର୍ମ ଅପେକ୍ଷା ଶବର ସଂସ୍କୃତିର ଛାପ ଅପେକ୍ଷାକୃତ ଅଧିକ । ଜଗନ୍ନାଥଙ୍କ ମୂର୍ତ୍ତିତତ୍ତ୍ୱ ଅନୁଶୀଳନ କଲେ ସ୍ପଷ୍ଟ ପ୍ରମାଣିତ ହେବ ଯେ ଦ୍ରାବିଡ଼ ବା ଆର୍ଯ୍ୟ ଅପେକ୍ଷା ଅନାର୍ଯ୍ୟ ମୂର୍ତ୍ତିତତ୍ତ୍ୱର ସୌସାଦୃଶ୍ୟ ତହିଁରେ ଅଧିକ ଉଜ୍ଜ୍ୱଳ । ପଲିନେସିଆ, ଅଷ୍ଟ୍ରେଲିଆ, ମାଇକ୍ରୋନେସିଆ ଓ ଆଫ୍ରିକା ପ୍ରଭୃତି ଦେଶର ଆଦିମ ଅଧିବାସୀମାନଙ୍କର ମୂର୍ତ୍ତି ଓ ମୁଖାଗୁଡ଼ିକ କାଷ୍ଠନିର୍ମିତ । ଏହି ମୂର୍ତ୍ତି ଓ ମୁଖାଗୁଡ଼ିକୁ ଅନୁଶୀଳନ କଲେ ଆମେ ତହିଁରେ ଜଗନ୍ନାଥ ମୂର୍ତ୍ତି ତତ୍ତ୍ୱର ଆଭାସ ପାଇଥାଉ । (୧୦୧)

ଏଥିରେ ସନ୍ଦେହ ନାହିଁ ଯେ ଶବରମାନେ ପହିଲେ ସେମାନଙ୍କ ଅନାର୍ଯ୍ୟ-ସୁଲଭ ମନୋବୃତ୍ତି ଯୋଗୁଁ ଭୟାବହ ମୂର୍ତ୍ତି ପୂଜା କରୁଥିଲେ । (୧୦୨) ଓଡ଼ିଶାର ଓ ମଧ୍ୟପ୍ରଦେଶର ପାର୍ବତ୍ୟ ଅଞ୍ଚଳମାନଙ୍କରେ ବହୁ ଶବର ବାସ କରୁଛନ୍ତି । ସେମାନଙ୍କ ସମ୍ପର୍କରେ ବହୁ କିମ୍ବଦନ୍ତୀ ଶୁଣାଯାଏ, ଯାହା ସହିତ ଶବର ଓ ଜଗନ୍ନାଥ ସମ୍ପୃକ୍ତ । ଗୋଟିଏ କିମ୍ବଦନ୍ତୀ ଅନୁଯାୟୀ ପୁରୀର ସର୍ବପ୍ରଥମ ବଡ଼ ଦେଉଳ ନିର୍ମାଣ ସମୟରେ ରଥ ଟାଣିବାପାଇଁ ଓ ପଥର ବୋହିବା ପାଇଁ ସେମାନଙ୍କର ସୃଷ୍ଟି ହୋଇଥିଲା । ଅନ୍ୟ ଏକ କିମ୍ବଦନ୍ତୀ ଅନୁସାରେ, ଶବର ସର୍ଦ୍ଦାର ବିଶ୍ୱାବସୁ ନୀଳମାଧବ (ଜଗନ୍ନାଥଙ୍କ ଆଦିରୂପ କୁ ପୂଜା କରୁଥିଲା । ଇନ୍ଦ୍ରଦ୍ୟୁମ୍ନଙ୍କ ଦ୍ୱାରା ପ୍ରେରିତ ବ୍ରାହ୍ମଣ ବିଦ୍ୟାପତି ଏହି ବିଶ୍ୱାବସୁର କନ୍ୟା ଲଳିତାକୁ ବିବାହ କରି ନୀଳମାଧବର ସନ୍ଧାନ ପାଇଥିଲେ ଓ ପୁରୀକୁ ନୀଳମାଧବଙ୍କୁ

ଆଣିବାର କାରଣ ହୋଇଥିଲେ । ଅନ୍ୟ ଏକ କିମ୍ବଦନ୍ତୀ ଅନୁଯାୟୀ, ଜଣେ ଭୀଲ୍ ପୂର୍ବ ପୁରୁଷଙ୍କ ନାମ ଶବର । ସେ ମଧ୍ୟପ୍ରଦେଶର ସେଓରି ନାରାୟଣ ନିକଟସ୍ଥ ଜଗେଡ଼ରେ ବାସ କରିଥିଲେ । ଜଗେଡ଼ରେ ଜଗନ୍ନାଥଙ୍କର ଆବିର୍ଭାବ ହୋଇଥିଲା ଓ ଶବର ଦ୍ୱାରା ଜଗନ୍ନାଥ ସେଠାରେ ପୂଜିତ ହେଉଥିଲେ । ଓଡ଼ିଶାର ରାଜା ଜଣେ ବ୍ରାହ୍ମଣଙ୍କୁ ପଠାଇ ଏହି ଠାକୁରଙ୍କୁ ଆଣିବାର ବ୍ୟବସ୍ଥା କରିଥିଲେ । ବ୍ରାହ୍ମଣ ଶବର କନ୍ୟାକୁ ବିବାହ କରିଥିଲେ । ଠାକୁରଙ୍କ ଦର୍ଶନ ପାଇଁ ସେ ଶବରକୁ ଅନୁରୋଧ କରନ୍ତେ ସେ ବାଟ ଦେଖି ନ ପାରିବା ବ୍ୟବସ୍ଥା ପାଇଁ ଶବର ବ୍ରାହ୍ମଣଙ୍କ ଆଖିରେ ଅନ୍ଧପୁଟୁଳି ବାନ୍ଧି ଦେଇଥିଲା । ବ୍ରାହ୍ମଣ କାନିରେ ସୋରିଷ ବାନ୍ଧି ଟିକିଏ କଣା କରି ଦେଇଥିଲେ । ଶବର ସାଥିରେ ଗଲାବେଳେ ସୋରିଷ ବିଞ୍ଚି ହୋଇ ଯାଉଥାଏ । ଠାକୁରଙ୍କୁ ଦର୍ଶନ କରି ସେ ଫେରି ଆସିଲେ । କିଛିଦିନ ପରେ ସୋରିଷ ଗଛ ହେଲା । ବ୍ରାହ୍ମଣ ବାଟ ପାଇ ଠାକୁରଙ୍କ ପାଖକୁ ଗଲେ ଓ ପୁରୀକୁ ଯିବା ପାଇଁ ଗୁହାରି କଲେ । ଠାକୁର ରାଜି ହେଲେ । ଦାରୁରୂପ ଧାରଣ କରି ମହାନଦୀରେ ଭସି ଭସି ପୁରୀରେ ପହଞ୍ଚିଲେ । ସେହି ଦାରୁରୁ ମୂର୍ତ୍ତି ଗଠନ କରି ଓଡ଼ିଶାର ରାଜା ମନ୍ଦିରରେ ସ୍ଥାପନ କରି ପୂଜା କଲେ । ବୁଢ଼ା ଶବରକୁ ସନ୍ତୁଷ୍ଟ କରିବା ପାଇଁ ପ୍ରଭୁ ନିଜର ନାମ ରଖିଲେ ଶବରୀ ନାରାୟଣ ଓ ପୂର୍ବ ଆସ୍ଥାନର ନାମ ମଧ୍ୟ ରହିଲା ଶବରୀ ନାରାୟଣ (ସେଓରୀ ନାରାୟଣ) । (୧୦୩) ବିଶ୍ୱାବସୁ-ଶବର ସମ୍ପର୍କିତ ଗଳ୍ପ ସହିତ ସେଓରୀ ନାରାୟଣର ଶବର-ସମ୍ପର୍କିତ ଗଳ୍ପ ପ୍ରାୟ ସମାନ । ମଧ୍ୟପ୍ରଦେଶର ବିଳାସପୁର ଗେଜେଟିଅରରେ ମଧ୍ୟ ସମପ୍ରକାରର ଗଳ୍ପଟିଏ ରହିଛି । (୧୦୪) ଡକ୍ଟର ବଂଶୀଧର ମହାନ୍ତି ଅନୁମାନ କରନ୍ତି ଯେ ସହଜିୟା ବୌଦ୍ଧ ଯୁଗର ଶବରୀପା ଭୀଲ୍ ଜାତିର ଏହି ଶବର ହୋଇ ପାରନ୍ତି । 'ବୌଦ୍ଧଗାନ ଓ ଦୋହା' ଗ୍ରନ୍ଥରେ ଥିବା ସିଦ୍ଧ ଶବରୀପାଙ୍କ ନାମ ମଧ୍ୟ ଏହି ଜଗନ୍ନାଥଙ୍କ ଦାରୁପୂଜା ସହିତ ସମ୍ପୃକ୍ତ ହେବା ଅସମ୍ଭବ ନୁହେଁ । କିନ୍ତୁ ଏସବୁ କେବଳ ଅନୁମାନ । ୧୦୫)

ସାରଳା ମହାଭାରତରେ କୁହାଯାଇଛି, ଜାରାଶବର ଦ୍ୱାରା ନିଧନ ପରେ କୃଷ୍ଣ 'ନୀଳ ସୁନ୍ଦର' ପର୍ବତ (ନୀଳଗିରି ବା ପୁରୀ)ରେ ପୂଜା ପାଇବେ । ଏହି

ଗ୍ରନ୍ଥରେ ବସୁ ଶବର (ବିଶ୍ୱାବସୁ ନାମ ସହିତ ସାମ୍ୟ ଅଛି) ଶବରୀ ନାରାୟଣଙ୍କୁ ପୂଜା କରୁଥିବାର ଆଖ୍ୟାୟିକା ଅଛି । ବସୁ ଶବର ବ୍ରାହ୍ମଣର ଆଖିରେ ଅନ୍ଧପୁଟୁଳି ବାନ୍ଧି ଶବରୀ ନାରାୟଣଙ୍କ ଆସ୍ଥାନ ପାଖକୁ ନେଇ ଯାଇଥିଲା । ଏ ଆଖ୍ୟାୟିକାରେ ସୋରିଷ ପରିବର୍ତ୍ତେ ଯବଧାନର ଉଲ୍ଲେଖ ଅଛି । ରଜାଙ୍କ ନାମ ଗାଲମାଧବ ବୋଲି ଉଲ୍ଲେଖ ଅଛି । ଗାଲମାଧବ ଇନ୍ଦ୍ରଦ୍ୟୁମ୍ନଙ୍କର ପୁଅ ବୋଲି ସାରଳା ଦାସ ଲେଖିଛନ୍ତି, କିନ୍ତୁ କେହି କେହି ଗାଲମାଧବଙ୍କ ସହ ଇନ୍ଦ୍ରଦ୍ୟୁମ୍ନଙ୍କର ଏକତ୍ୱ କଳ୍ପନା କରିଛନ୍ତି । ସେ ଯାହାହେଉ, ବହୁ ପ୍ରାଚୀନ କାଳରୁ ଏହି କିମ୍ବଦନ୍ତୀଗୁଡ଼ିକ ଜଗନ୍ନାଥଙ୍କ ସହିତ ଶବର ଜାତିକୁ ସମ୍ପୃକ୍ତ କରିଆସିଛି ।

'କଳା ପିଠିଆ' ଶବରମାନେ ପୁରୀ ନିକଟବର୍ତ୍ତୀ ଅଞ୍ଚଳରେ ବାସ କରନ୍ତି ଓ ରଥ-ଟଣା ବେଳେ ନିଯୁକ୍ତ ହୋଇଥାନ୍ତି । ସେଥିପାଇଁ ଏମାନେ ଜାଗିରି ଭୋଗ କରୁଛନ୍ତି । (୧୦୬)

ଶବର ଛଡ଼ା ଆଦିବାସୀ କନ୍ଧ ଜାତିକୁ ମଧ୍ୟ ଜଗନ୍ନାଥ ପୂଜା ସହିତ ସମ୍ପୃକ୍ତ କରାଯାଇପାରେ । କନ୍ଧ ଭାଷାରେ ଦେବତାଙ୍କୁ କୁହାଯାଏ 'ପେନୁ' । ଏମାନେ କେଉଁ ସ୍ମରଣାତୀତ କାଳରୁ ଜାକେରି ପେନୁ, ତାନା ପେନୁ ଓ ମୁରବି ପେନୁଙ୍କର ପୂଜା କରି ଆସୁଛନ୍ତି । ଗ୍ରାମ ସୀମାରେ ଗଛ ମୂଳେ ଗୋଟିଏ ଧାଡ଼ିରେ ତିନୋଟି ମୂର୍ତ୍ତି ଏକ ଧାଡ଼ିରେ ପାଖାପାଖି ଥୁଆ ହୋଇଥାଏ । ତିନିମୂର୍ତ୍ତି ଉପରେ ଛାତ ଭଳି ଏକ ଚକାପଥର ଲଦାହୋଇଥାଏ । ଏହି ତିନିମୂର୍ତ୍ତି ହେଉଛନ୍ତି ତିନି ଦେବତା । ମଝି ମୂର୍ତ୍ତି ତାନା ପେନୁ ଧରଣୀ ଦେବୀ), ଡାହାଣ ମୂର୍ତ୍ତିଟି ଜାକେରି ପେନୁ (ଧରଣୀ ଦେବୀଙ୍କ ସ୍ୱାମୀ), ବାମ ମୂର୍ତ୍ତିଟି ମୁରବି ପେନୁ (ତାନା ପେନୁ ବା ଧରଣୀ ଦେବୀଙ୍କ ଭାଇ) । କାଳକ୍ରମେ ଏହି ତିନିମୂର୍ତ୍ତି ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥ ରୂପରେ ପୂଜାପାଇଥିବେ ଓ ଉପର ପଥରଟି ସୁଦର୍ଶନ ରୂପରେ ସ୍ଥାନ ପାଇଥିବେ । (୧୦୭) ବର୍ତ୍ତମାନ ମୂର୍ତ୍ତିଗୁଡ଼ିକ ପଥର, କିନ୍ତୁ ପୂର୍ବେ ଏଗୁଡ଼ିକ ଦାରୁ-ମୂର୍ତ୍ତି ହୋଇଥିବେ ବୋଲି ଅନୁମାନ କରାଯାଇପାରେ । ଏଠାରେ ଲକ୍ଷ୍ୟ କରିବା କଥା, ତାନା ପେନୁଙ୍କ ସମ୍ପର୍କରେ ଏକ ଗଳ୍ପ ଅଛି ଯେ ସେ ଅତୀବ ଭୟଙ୍କରୀ ଥିଲେ ଓ ସୃଷ୍ଟିର ଆରମ୍ଭ ପରେ ଜନ ସମାଜ ଉପରେ ରାଗିଯାଇ ବହୁ ଅତ୍ୟାଚାର

କରିଥିଲେ । ପରେ ରାଜାଙ୍କ ଅନୁରୋଧରେ ଶାନ୍ତ ହୋଇ ଜଗତର ମଙ୍ଗଳକାରିଣୀ ହୋଇଥିଲେ । ସୁଭଦ୍ରାଙ୍କୁ ଭୈରବୀ ଭାବରେ ଲୋକମାନେ କଳ୍ପନା କରି ଆସି-ଅଛନ୍ତି । ଜଗନ୍ନାଥ ସୁଭଦ୍ରାଙ୍କ ଭାଇ । ବଳଭଦ୍ର ଶିବଙ୍କ ଅବତାର ଓ ଭୈରବ ବୋଲି ମଧ୍ୟ ଲୋକମାନଙ୍କର ବିଶ୍ୱାସ ଅଛି । ତେଣୁ କନ୍ଧ ଜାତିର ଦେବତା-ତତ୍ତ୍ୱ ସହିତ ଜଗନ୍ନାଥ ତ୍ରିମୂର୍ତ୍ତି ଏବଂ ଚତୁର୍ଦ୍ଧାମୂର୍ତ୍ତି ତତ୍ତ୍ୱର ଅନେକ ସାମ୍ୟ ପ୍ରତିପାଦିତ ହେଉଅଛି । (୧୦୮)

ଡକ୍‌ଟର ହରେକୃଷ୍ଣ ମହତାବ ଓଡ଼ିଶାରେ ବିଭିନ୍ନ ଧର୍ମ ପ୍ରବର୍ତ୍ତନର ଇତିହାସ ତନ୍ନ ତନ୍ନ ଆଲୋଚନା କରି ଶେଷରେ ଜଗନ୍ନାଥଙ୍କ ଇତିହାସ ସମ୍ପର୍କରେ ଏକ ବିଗ୍ରହଧାରା ଉପସ୍ଥାପନ କରିଛନ୍ତି ଯେ ପ୍ରଥମେ ଜଗନ୍ନାଥ ଶବରମାନଙ୍କ ଦ୍ୱାରା ପୂଜିତ ହେଉଥିଲେ । ଅଶୋକଙ୍କ ସମୟରେ ଓଡ଼ିଶାର ଶବରମାନେ ବୌଦ୍ଧ-ଧର୍ମରେ ଦୀକ୍ଷିତ ହୋଇଥିଲେ । ପୁରୀରେ ବୌଦ୍ଧସ୍ତୂପ ନିର୍ମିତ ହୋଇଥିଲା ଓ ତହିଁରେ ବୌଦ୍ଧ ତ୍ରିରତ୍ନ ଚିହ୍ନ ଅଙ୍କନ କରାଯାଇଥିଲା । ଏହି ସ୍ତୂପ ବୌଦ୍ଧ ଧର୍ମରେ ଦୀକ୍ଷିତ ଶବରମାନଙ୍କର ଥିଲା ପ୍ରଧାନ ପୂଜାପୀଠ । ଖ୍ରୀ: ପୂ. ୧ମ ବା ଖ୍ରୀଷ୍ଟୀୟ ୧ମ ଶତାବ୍ଦୀରେ ଓଡ଼ିଶାରେ ମହାଯାନ ପନ୍ଥାର ପ୍ରବର୍ତ୍ତନ ଫଳରେ ବୁଦ୍ଧ ଓ ବୋଧିସତ୍ତ୍ୱଙ୍କର ପୂଜା ପ୍ରଚଳିତ ହେଲା । ସରଳପ୍ରାଣ ଶବରମାନେ ଏତେ ଜଟିଳତା ଭିତରକୁ ପ୍ରବେଶ କଲେ ନାହିଁ । ସେମାନେ ଏହି ସ୍ତୂପର ତ୍ରିରତ୍ନ ଚିହ୍ନ-ଗୁଡ଼ିକୁ ତିନିଦେବତା ଭାବି ପୂଜା କଲେ । (୧୦୯) ଚିହ୍ନପୂଜା ସପକ୍ଷରେ ଡକଟର ମହତାବ ପ୍ରମାଣ ଦର୍ଶାଇଛନ୍ତି ଯେ ଚିହ୍ନ ପୂଜା ଆଜି ପର୍ଯ୍ୟନ୍ତ ଭାରତରେ ପ୍ରଚଳିତ ଅଛି, ଯଥା—ସ୍ୱସ୍ତିକ ଚିହ୍ନର ପୂଜା । ଯେଉଁ ସ୍ୱସ୍ତିକ ଚିହ୍ନଟି ପୂଜା କରାଯାଏ ତାହା ବାସ୍ତବତଃ ଦୁଇଟି ପ୍ରାଚୀନ ପାଲି ଅକ୍ଷର 'ସୁ' ଓ 'ତି'ର ଏକତ୍ର ସମାବେଶ । 'ସୁତି' ହେଉଛି 'ସ୍ୱସ୍ତିକ' ଶବ୍ଦର ପାଲି ରୂପାନ୍ତର । (୧୧୦)

ବୌଦ୍ଧ ଶବରମାନଙ୍କଦ୍ୱାରା ଉପାସିତ ସ୍ତୂପର ଏହି ତ୍ରିରତ୍ନ ଚିହ୍ନତ୍ରୟକୁ କୁହାଯାଉଥିଲା ଜଗନ୍ନାଥ । କିଛି କାଳ ପରେ ଯେତେବେଳେ ମୂର୍ତ୍ତିପୂଜାର ପ୍ରଚଳନ ହେଲା, ସେତେବେଳେ ଲୋକମାନେ ଏହି ତିନୋଟି ଚିହ୍ନକୁ କାଠ ମୂର୍ତ୍ତିରେ ଦର୍ଶାଇ

ପୂଜା କଲେ । କ୍ରମଶଃ କାଠମୂର୍ତ୍ତିଗୁଡ଼ିକୁ ମନୁଷ୍ୟାକୃତି ଦେବାପାଇଁ ଇଚ୍ଛା ଜାଗ୍ରତ ହୋଇଥିଲା ଓ ଏଥିରେ ଆଖି ନାକ ଦେଖାଇବା ପାଇଁ ଚିହ୍ନର ବ୍ୟବସ୍ଥା ହୋଇଥିଲା । (୧୧୧) ତେବେ ଏ ଚିହ୍ନକୁ ପାଷାଣ ବା ମୃଣ୍ମୟ ମୂର୍ତ୍ତିରେ ଚିତ୍ରିତ କରାନଯାଇ କାଷ୍ଠମୂର୍ତ୍ତିରେ ଚିତ୍ରିତ କରିବା ମୂଳରେ ନିଶ୍ଚୟ ରହିଛି ଶବରମାନଙ୍କର ପ୍ରାଥମିକ ଉଦ୍ୟମ । କାରଣ ସେମାନେ ବୌଦ୍ଧଧର୍ମରେ ଦୀକ୍ଷିତ ହେବାର ବହୁ ପୂର୍ବରୁ କାଷ୍ଠମୂର୍ତ୍ତି (ଦାରୁ) ପୂଜା କରି ଆସୁଥିଲେ ।

ଜଗନ୍ନାଥ ସଂସ୍କୃତିର ଐତିହାସିକ ବିଚାର କ୍ଷେତ୍ରରେ ଆଦିବାସୀ ଓ ଜୈନ ସଂସ୍କୃତିର ଅଧ୍ୟୟନ ଯେ ଅପରିହାର୍ଯ୍ୟ, ଏହା ଅବଶ୍ୟ ସ୍ୱୀକାର୍ଯ୍ୟ ।

## ଶ୍ରୀ ଜଗନ୍ନାଥ ଓ ବୌଦ୍ଧ ସଂସ୍କୃତି

ଜଗନ୍ନାଥ ଚେତନାର ଉଦ୍ଭବ ଓ ବିକାଶରେ ଆଦିବାସୀ ଓ ଜୈନ ସଂସ୍କୃତି ପରି ବୌଦ୍ଧ ସଂସ୍କୃତିର ଭୂମିକା ମଧ୍ୟ ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ । ବୌଦ୍ଧଧର୍ମ ବୁଦ୍ଧଦେବଙ୍କ ଜୀବିତାବସ୍ଥାରୁ ଓଡ଼ିଶାର ସାଂସ୍କୃତିକ ଜୀବନର ଅସ୍ଥି-ମଜ୍ଜାଗତ ହୋଇଯାଇଛି ଓ ଅନ୍ୟୂନ ଦେଢ଼ ହଜାର ବର୍ଷ ଧରି ଓଡ଼ିଶାରେ ପ୍ରଚଳିତ ବିଭିନ୍ନ ଧର୍ମ ଉପରେ ପ୍ରଭବ ବିସ୍ତାର କରିଆସିଛି ଅଥବା ବିଭିନ୍ନ ଧର୍ମର କଳେବର ଭିତରେ ନିଜର ଆତ୍ମାଟିକୁ ସ୍ଥାପନ କରି ଭିନ୍ନ ରୂପରେ ରହିଆସିଛି । ବିଶେଷ କରି ଓଡ଼ିଶାର ବୈଷ୍ଣବ, ନାଥ, ଶୈବ ଓ ଶାକ୍ତ ଧର୍ମରେ ନ୍ୟୂନାଧିକ ପରିମାଣରେ ବୌଦ୍ଧମୁଦ୍ରାଙ୍କ ଲକ୍ଷ୍ୟ କରଯାଇଥାଏ । ଓଡ଼ିଶାର ଧର୍ମ ଓ ସଂସ୍କୃତିର ପ୍ରାଣକେନ୍ଦ୍ର ଓ ପ୍ରାଣ-ପରିଧି ହେଉଛନ୍ତି ଶ୍ରୀ ଜଗନ୍ନାଥ । ଓଡ଼ିଶାର ସକଳ ଧର୍ମ ଜଗନ୍ନାଥ ଭିତରେ ହିଁ ନିଜସ୍ୱ ସନ୍ଧାନ କରିଅଛି । ପ୍ରତ୍ୟକ୍ଷ ଅଥବା ପରୋକ୍ଷ ଭବରେ ବୌଦ୍ଧଧର୍ମ ଜଗନ୍ନାଥଙ୍କ ସହିତ ସଂଶ୍ଳିଷ୍ଟ । ତେଣୁ ଜଗନ୍ନାଥ-ଚେତନାର ବିବର୍ତ୍ତନରେ ବୌଦ୍ଧ ଧର୍ମର ଭୂମିକାର ଆଲୋଚନା ବ୍ୟତିରେକେ ଜଗନ୍ନାଥଙ୍କର ଇତିହାସ ଅପୂର୍ଣ୍ଣ ରହିଯିବ ।

# ଯୁଗେ ଯୁଗେ ଓଡ଼ିଶାରେ ବୌଦ୍ଧଧର୍ମ

ବୌଦ୍ଧଧର୍ମ ନିଜର ଜନ୍ମକାଳରୁ ଓଡ଼ିଶା ସହିତ ତାର ସମ୍ପର୍କ ସ୍ଥାପନ କରି ଆସିଅଛି । ସିଂହଳୀ ବୌଦ୍ଧଗ୍ରନ୍ଥ ଦାଠାବଂଶ (ଧାତୁବଂଶ)ରୁ ଜଣାଯାଏ ଯେ ବୁଦ୍ଧଦେବ ବୁଦ୍ଧତ୍ୱ ଲାଭକରି ଇସିପତନ ମୃଗଦାବକୁ ପ୍ରଥମ ଧର୍ମବାଣୀ ଶୁଣାଇବାକୁ ଯାଉଥିଲା ବେଳେ ତପସ୍ସୁ ଓ ଭଲ୍ଲିକ ନାମରେ ଦୁଇଜଣ ଉତ୍କଳୀୟ ବଣିକ କ୍ଷୁଧାର୍ତ୍ତ ବୁଦ୍ଧଙ୍କୁ ମଧୁପିଣ୍ଡକ ଭକ୍ଷଣ କରିବାକୁ ଦେଇଥିଲେ ଓ ବୁଦ୍ଧଙ୍କ ଜୀବନବ୍ୟାପୀ ଶିଷ୍ୟତ୍ୱ ଗ୍ରହଣ କରି ତ୍ରିଶରଣ ଲାଭ କରିଥିଲେ । ସେମାନେ ବୁଦ୍ଧଙ୍କ କେଶକୁ ନେଇ କେଶସ୍ତୂପ, ନଖକୁ ନେଇ ନଖସ୍ତୂପ ଓ ବୁଦ୍ଧଙ୍କ ସ୍ମୃତି ପାଇଁ ଏକ ବୌଦ୍ଧ ମନ୍ଦିର ନିର୍ମାଣ କରିଥିଲେ । ମହାବସ୍ତୁର ନଳକ ଉପାଖ୍ୟାନ ଅନୁଯାୟୀ ବୁଦ୍ଧଦେବଙ୍କ ସମକାଳୀନ ଭାରତରେ ପ୍ରସିଦ୍ଧ ଧନିକଙ୍କ ମଧ୍ୟରେ ଅନ୍ୟତମ କଳିଙ୍ଗର ପିଙ୍ଗଳ ହେଉଛନ୍ତି ବୁଦ୍ଧଦେବଙ୍କର ପ୍ରଧାନ ଶିଷ୍ୟ । ତଥାଗତଙ୍କ ନିର୍ବାଣ ଲାଭ (ଖ୍ରୀ: ପୂ: ୫୪୩) ପରେ ଅର୍ହତ କ୍ଷେମଥେର ବୁଦ୍ଧଦେବଙ୍କ ବାମଦନ୍ତକୁ ଆଣି କଳିଙ୍ଗରାଜ ବ୍ରହ୍ମଦତ୍ତଙ୍କୁ ଉପହାର ଦେଇଥିବା କଥା ଦାଠାବଂଶରେ ବର୍ଣ୍ଣିତ ଅଛି । ବ୍ରହ୍ମଦତ୍ତ ଏକ ଚୈତ୍ୟ ନିର୍ମାଣ କରି ଦନ୍ତପୂଜା ପ୍ରଚଳନ କରାଇଥିଲେ ଓ ସ୍ଥାନର ନାମ ରଖିଥିଲେ ଦନ୍ତପୁରୀ । କେତେକେ ଏହି ଦନ୍ତପୁରୀକୁ ଜଗନ୍ନାଥଧାମ ପୁରୀ ସହିତ ସଂପୃକ୍ତ କରିଥାନ୍ତି । କିନ୍ତୁ ଏହାର କୌଣସି ଐତିହାସିକ ପ୍ରମାଣ ନାହିଁ ।

କିମ୍ବଦନ୍ତୀକୁ ସ୍ୱୀକୃତି ନ ଦେଲେ ମଧ୍ୟ ଐତିହାସିକ ଭିତ୍ତି ଉପରେ ଓଡ଼ିଶା ସହିତ ବୌଦ୍ଧଧର୍ମର ସମ୍ପର୍କ ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରୁ ସ୍ଥାପିତ କରାଯାଇପାରେ । ଖ୍ରୀ: ପୂ: ଚତୁର୍ଥ ଶତାବ୍ଦୀରେ ମହାପଦ୍ମନନ୍ଦଙ୍କ ରାଜତ୍ୱ କାଳରେ ଜଣେ ବୌଦ୍ଧ ଭିକ୍ଷୁଣୀ ତାଙ୍କ ନିକଟକୁ ଆସି ଧର୍ମ ବ୍ୟାଖ୍ୟା କରିଥିଲେ ବୋଲି 'ପାଗ୍ ସମ ଜନ୍ ଜାନ୍' ଗ୍ରନ୍ଥରୁ ପ୍ରମାଣ ମିଳେ । (୧୧୨) ଖ୍ରୀ. ପୂ. ୨୬୧ରେ ଅଶୋକଙ୍କର କଳିଙ୍ଗ ବିଜୟ ପରେ ଓଡ଼ିଶାରେ ବୌଦ୍ଧଧର୍ମର ଉଚ୍ଚ ପ୍ରସାର ଘଟିଥିଲା । ଏହି ସମୟରୁ ଓଡ଼ିଶାରେ ବୌଦ୍ଧଧର୍ମ ଏକ ପ୍ରିୟଧର୍ମ ଥିବାର ସୂଚନା ଚଣ୍ଡାଶୋକ (ଅବୌଦ୍ଧ)ଙ୍କର ଧର୍ମାଶୋକ (ବୌଦ୍ଧ)ରେ ପରିଣତି ଘଟଣାରୁ ମିଳିଥାଏ । ଓଡ଼ିଶାରେ ଅବସ୍ଥାନ କରୁଥିବା ବୌଦ୍ଧ ସନ୍ନ୍ୟାସୀ ଉପଗୁପ୍ତଙ୍କଠାରୁ ଅଶୋକ ବୌଦ୍ଧଧର୍ମ ଦୀକ୍ଷା ଲାଭ

କରିଥିଲେ । ଦାକ୍ଷିଣାତ୍ୟର ଏକ କିମ୍ବଦନ୍ତୀ ଅନୁଯାୟୀ କଳିଙ୍ଗସମ୍ରାଟଙ୍କ ପାଟମହିଷୀ ରୂପସୀ କାରୁବାକୀ ହେଉଛନ୍ତି ଅଶୋକଙ୍କ କଳିଙ୍ଗ ଆକ୍ରମଣର ମୁଖ୍ୟକାରଣ । ଯୁଦ୍ଧ ପରେ କାରୁବାକୀଙ୍କ ନିର୍ଦ୍ଦେଶରେ ଅଶୋକ ବୌଦ୍ଧଧର୍ମ ଗ୍ରହଣ କରିବା ପରେ ଯାଇ କାରୁବାକୀଙ୍କୁ ପତ୍ନୀରୂପେ ପାଇବାର ସୁଯୋଗ ଲାଭ କରିଥିଲେ । କିମ୍ବଦନ୍ତୀରେ ଐତିହାସିକ ସତ୍ୟତା ନଥାଇ ପାରେ, କିନ୍ତୁ ତତ୍କାଳୀନ କଳିଙ୍ଗରେ ବୌଦ୍ଧଧର୍ମର ପ୍ରାଧାନ୍ୟ ଏଥିରୁ ସୂଚିତ ହେଉଅଛି । ଅଶୋକଙ୍କ ଧର୍ମଦୀକ୍ଷା ପରେ ତାଙ୍କର ଭାଇ ତିସ୍ସ ଓ ତିସ୍ସଙ୍କର ଧର୍ମଗୁରୁ ଧର୍ମରକ୍ଷିତ କଳିଙ୍ଗରେ ଥେରବାଦ ଓ ଉପଗୁପ୍ତଙ୍କର ଶିଷ୍ୟ ଧୃତିକ କୁମାର ସର୍ବାସ୍ତିବାଦର ପ୍ରଚାର କରାଇଥିଲେ । ସର୍ବାସ୍ତିବାଦର ପରବର୍ତ୍ତୀ ପ୍ରସାରକ ହେଉଛନ୍ତି ଆର୍ଯ୍ୟ କାଲ (କୃଷ୍ଣ) ଓ ପୋଷାଢ଼ । (୧୧୩)

ଖାରବେଳଙ୍କ ସମୟରେ (ଖ୍ରୀ. ପୂ. ୧ମ ଶତାବ୍ଦୀ) ଓଡ଼ିଶାରେ ଜୈନଧର୍ମ ମୁଖ୍ୟ ଧର୍ମ ଥିଲେ ମଧ୍ୟ ବୌଦ୍ଧଧର୍ମର ଆଦର ହ୍ରାସ ପାଇ ନ ଥିଲା । ତେଣୁ ଖାରବେଳ ବୌଦ୍ଧ ଅର୍ହତ୍‌ମାନଙ୍କ ପାଇଁ ଚୈତ୍ୟ ନିର୍ମାଣ କରାଇଥିଲେ ଓ ସେମାନଙ୍କୁ ସମ୍ମାନ ପ୍ରଦର୍ଶନ କରିଥିଲେ । ଖାରବେଳଙ୍କ ସମୟର 'ଜୀନାସନ' ସହିତ ଜଗନ୍ନାଥଙ୍କୁ ସମ୍ପର୍କିତ କରାଯାଏ । ବୌଦ୍ଧଧର୍ମ ଜୈନଧର୍ମର ସଂସ୍କାର ମାତ୍ର ବୋଲି ପଣ୍ଡିତ ନୀଳକଣ୍ଠ ଦାସ ମତ ଦେଇଛନ୍ତି । ରାଜା ଇନ୍ଦ୍ରଭୂତିଙ୍କ 'ଜ୍ଞାନସିଦ୍ଧି' ଗ୍ରନ୍ଥର ପ୍ରାରମ୍ଭ-ପଦରେ (ପ୍ରଣିପତ୍ୟ ଜଗନ୍ନାଥଂ ସର୍ବଜିନ ବରାର୍ଚ୍ଚିତଂ/ସର୍ବବୁଦ୍ଧମୟଂ ସିଦ୍ଧି ବ୍ୟାପିନଂ ଗଗନୋପମମ୍ ।') ଜୀନ, ବୁଦ୍ଧ ଓ ଜଗନ୍ନାଥଙ୍କ ମଧ୍ୟରେ ସମୀକରଣ ଲକ୍ଷ୍ୟ କରାଯାଏ । ଖାରବେଳଙ୍କ ସମୟକୁ ବ୍ରାହ୍ମଣ୍ୟ, ଜୈନ ଓ ବୌଦ୍ଧ ମଧ୍ୟରେ ମୈତ୍ରୀ ସ୍ଥାପିତ ହୋଇସାରିଛି । ଉଦ୍ଧୃତ ପଦ ଏ ମୈତ୍ରୀର-ପ୍ରାୟ ଆଠଶହ ବର୍ଷର କ୍ରମ-ବିକଶିତ ପୁଷ୍ପାୟନ ।

ଖ୍ରୀଷ୍ଟୀୟ ପ୍ରଥମ ଶତକରେ ଆନ୍ଧ୍ର ରାଜବଂଶର ରାଜତ୍ୱ ସମୟରେ ଓଡ଼ିଶାରେ ବୌଦ୍ଧଧର୍ମର ପ୍ରଚାର ପ୍ରବଳ ଭାବରେ ହୋଇଥିବା କଥା ଇତିହାସରୁ ଜଣାଯାଏ । ଖ୍ରୀ. ପୂ. ତୃତୀୟ ଶତକରୁ ବୌଦ୍ଧ ଧର୍ମକୁ ଲୋକପ୍ରିୟ ଧର୍ମରେ ପରିଣତ କରିବା ପାଇଁ ସର୍ବାସ୍ତିବାଦ ଓ ମହାସାଂଘିକ ସମ୍ପ୍ରଦାୟ ମାଧ୍ୟମରେ

ଯେଉଁ ପ୍ରଚେଷ୍ଟା ଆରମ୍ଭ ହୋଇଥିଲା ତାହାରି ଫଳରେ ମହାଯାନ ପନ୍ଥାର ଅଭ୍ୟୁଦୟ ଘଟିଲା । ମହାଯାନ ବୌଦ୍ଧଧର୍ମର ପ୍ରଧାନ ଗ୍ରନ୍ଥ 'ଅଷ୍ଟ ସହସ୍ରିକା' ଓ 'ପ୍ରଜ୍ଞା ପାରମିତା' ଗ୍ରନ୍ଥର (ଖ୍ରୀଷ୍ଟୀୟ ୧ମ ଶତାବ୍ଦୀ) ଟୀକାକାର ବିଖ୍ୟାତ ବୌଦ୍ଧ ଦାର୍ଶନିକ ନାଗାର୍ଜ୍ଜୁନ ଦ୍ୱିତୀୟ ଶତାବ୍ଦୀରେ ଓଡ଼ିଶାରେ ମାଧ୍ୟମିକ ଦର୍ଶନର ପ୍ରଚାର କରିଥିଲେ । ତତ୍କାଳରେ ଉତ୍କଳର ପ୍ରସିଦ୍ଧ ବୌଦ୍ଧପୀଠ ପରିମଳଗିରି (ପଶ୍ଚିମ ଓଡ଼ିଶାର ନୃସିଂହନାଥ ଅଞ୍ଚଳ)ରେ ନାଗାର୍ଜ୍ଜୁନ ଏକ ବିହାର ସ୍ଥାପନ କରି-ଥିଲେ । (୧୧୪) ହୁଏନ୍‌ସାଂ ତାଙ୍କ ବିବରଣୀରେ ଯେଉଁ 'ପ-ଲୋ-ମୋ-ଲୋ-କି-ଲି' ବୌଦ୍ଧ ବିହାର କଥା ବର୍ଣ୍ଣନା କରିଛନ୍ତି, ତାହା ହେଉଛି ଏହି ପରିମଳଗିରି । (୧୧୫) କେବଳ ପରିମଳଗିରିରେ ନୁହେଁ, ଓଡ଼ିଶାର ବହୁସ୍ଥାନରେ ନାଗାର୍ଜ୍ଜୁନ ବୌଦ୍ଧ ବିହାରମାନ ସ୍ଥାପନ କରିଥିଲେ ଓ ରଜା ମୁଞ୍ଜଙ୍କୁ ବୌଦ୍ଧଧର୍ମରେ ଦୀକ୍ଷିତ କରାଇଥିଲେ । (୧୧୬) କଳିଙ୍ଗର ରାଜଧାନୀ ସିଂହପୁରର ଅଧିବାସୀ ଆର୍ଯ୍ୟଦେବ ଥିଲେ ତାଙ୍କର ପ୍ରିୟ ଶିଷ୍ୟ । ଖ୍ରୀଷ୍ଟୀୟ ୪ର୍ଥ ଶତାବ୍ଦୀରେ ଆଚାର୍ଯ୍ୟ ଦିଙ୍ନାଗ ଭୋରଶୈଳ (ଆଧୁନିକ ଢେଙ୍କାନାଳ ନିକଟସ୍ଥ ବିଶ୍ୱନାଥ ମୁଣ୍ଡିଆ)ରେ ବୌଦ୍ଧବିହାର ପ୍ରତିଷ୍ଠା କରି ଯୋଗାଚାରଶ୍ରିତ ବିଜ୍ଞାନବାଦ ବା ନ୍ୟାୟବାଦର ପ୍ରବର୍ତ୍ତନ କରିଥିଲେ । ଏ ମତର ବିକାଶକ ହେଉଛନ୍ତି ୭ମ ଶତାବ୍ଦୀର ଧର୍ମକୀର୍ତ୍ତି । ଦିଙ୍ନାଗଙ୍କ 'ପ୍ରମାଣ ସମୁଚ୍ଚୟ' ଓ ଧର୍ମକୀର୍ତ୍ତିଙ୍କ 'ନ୍ୟାୟବିନ୍ଦୁ'ରେ ନ୍ୟାୟବାଦର ପରିବେଷଣ ହୋଇଅଛି ।

୫ମ-୬ଷ୍ଠ ଶତାବ୍ଦୀରେ ବାଲେଶ୍ୱର (ସୁବର୍ଣ୍ଣରେଖା ମୁହାଣ ନିକଟ) ଓ କେନ୍ଦୁଝର (ସୀତାବିଞ୍ଜି)ରେ ଅନେକ ବୌଦ୍ଧପୀଠ ଓ ବିହାର ଗଢ଼ି ଉଠିଥିଲା । (୧୧୭) ଏକ ବୌଦ୍ଧବିହାର ପ୍ରତିଷ୍ଠା ଏବଂ ଅବଲୋକିତେଶ୍ୱରଙ୍କ ଉପାସନା ପାଇଁ ବାଲେଶ୍ୱର ରଜା ଗୋପଚନ୍ଦ୍ର ଗୋଟିଏ ବୌଦ୍ଧ ଭିକ୍ଷୁ ସଂଘକୁ କିଛି ଭୂମି ଦାନ କରିଥିଲେ । ୧୧୮)

ସପ୍ତମ ଶତାବ୍ଦୀ ବେଳକୁ ରତ୍ନଗିରିରେ ପ୍ରତିଷ୍ଠିତ ହୋଇସାରିଥିବା ବିଶ୍ୱ-ବିଦ୍ୟାଳୟ ଦେଶର ବହୁ ବୌଦ୍ଧ ଦାର୍ଶନିକଙ୍କୁ ଆକୃଷ୍ଟ କରି ପାରିଥିଲା । ଏହାର ପ୍ରସିଦ୍ଧ ଅଧ୍ୟାପକ ଆଚାର୍ଯ୍ୟ ପୀଡୋପାଦ କାଳଚକ୍ର ତନ୍ତ୍ରର ପ୍ରବର୍ତ୍ତକ । ବୋଧିଶ୍ରୀ,

ନାଗେପା ଓ ପ୍ରାଜ୍ଞ ହେଉଛନ୍ତି ଏହି ବିଶ୍ୱବିଦ୍ୟାଳୟର ସ୍ମରଣୀୟ ବିଦ୍ୟାର୍ଥୀ । ସପ୍ତମ ଶତାବ୍ଦୀରେ ମଞ୍ଜୁଶ୍ରୀ, ବୋଧିଶ୍ରୀ ଓ ଚନ୍ଦ୍ରଗୋମି ଓଡ଼ିଶାରେ ବୌଦ୍ଧ ନାଗାନ୍ତକ ଦର୍ଶନ ପ୍ରଚାର କରିଥିଲେ । ଖ୍ରୀଷ୍ଟୀୟ ୬ଷ୍ଠ-୭ମ ଶତାବ୍ଦୀରେ ଭୌମ କର ବା ଶୈଳୋଦ୍ଭବ ରାଜାମାନଙ୍କ ରାଜତ୍ୱରେ ଓଡ଼ିଶାରେ ମହାଯାନ ଓ ବୌଦ୍ଧଧର୍ମ ଅତି ଲୋକପ୍ରିୟ ଥିଲା । ୬୦୫ ଖ୍ରୀ:ରେ ଇହେହାନ (Yihehan) ନାମକ ଜଣେ ବୌଦ୍ଧ ପରିବ୍ରାଜକ ଚୀନରୁ ସମୁଦ୍ରରେ ଦକ୍ଷିଣକୁ ଯାଇ ହୋଲିଙ୍ଗ (Holing) ଦେଶରେ ବୌଦ୍ଧଧର୍ମ ତତ୍ତ୍ୱ ଅର୍ଜନ ପାଇଁ ତିନିବର୍ଷ ଅତିବାହିତ କରିଥିଲେ । ଏହି 'ହୋଲିଙ୍ଗ'କୁ କେହି କେହି 'କଳିଙ୍ଗ' ବୋଲି ଅନୁମାନ କରିଥାନ୍ତି । (୧୧୯) ୬୩୯ ଖ୍ରୀ:ରେ ଚୀନ ପରିବ୍ରାଜକ ହୁଏନସାଂ କଳିଙ୍ଗ, ଓଡ୍ର ଓ କଙ୍ଗୋଦ ଭ୍ରମଣ କରି ଯେଉଁ ବିବରଣୀ ଦେଇ ଯାଇଛନ୍ତି ତହିଁରୁ ପ୍ରମାଣିତ ହୁଏ ଯେ ଓଡ଼ିଶା ତତ୍କାଳୀନ ବୌଦ୍ଧ ଭାରତରେ ଏକ ପ୍ରସିଦ୍ଧ ସ୍ଥାନ ଅଧିକାର କରିଥିଲା । ପ୍ରତ୍ନତାତ୍ତ୍ୱିକ ଖୋଦନ ଦ୍ୱାରା ବାଣପୁରରୁ ପ୍ରାପ୍ତ ଓ ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ବିଭିନ୍ନ ଧାତୁରେ ନିର୍ମିତ ବହୁ ମୂର୍ତ୍ତି ହେଉଛି ବୌଦ୍ଧ ତାନ୍ତ୍ରିକ ମୂର୍ତ୍ତି । ଏଗୁଡ଼ିକର ସମୟ ୭ମ ଶତାବ୍ଦୀ ଠାରୁ ୯ମ ଶତାବ୍ଦୀ ପର୍ଯ୍ୟନ୍ତ ନିର୍ଣ୍ଣୟ କରାଯାଇ ପାରେ । ବାଣପୁରର ଭଗବତୀ ମଧ୍ୟ ପ୍ରଥମେ ବୌଦ୍ଧତାନ୍ତ୍ରିକ ଦେବୀ ଥିବାର ସମ୍ଭାବନା ।

ସପ୍ତମ-ଅଷ୍ଟମ ଶତାବ୍ଦୀରେ ମହାଯାନରୁ ସୃଷ୍ଟି ଲାଭ କଲା ବଜ୍ରଯାନ, ଯାହାର ପ୍ରବର୍ତ୍ତକ ହେଉଛନ୍ତି ଓଡ଼ିଶାର (ସମ୍ଭଲକ = ସମ୍ବଲପୁର) ରାଜା ଇନ୍ଦ୍ରଭୂତି । ବଜ୍ରଯାନର ଏକ ଶାଖା ହେଉଛି ସହଜଯାନ, ଯାହାର ପ୍ରବର୍ତ୍ତିକା ହେଉଛନ୍ତି ଇନ୍ଦ୍ରଭୂତିଙ୍କର ଭଗ୍ନୀ ଲକ୍ଷ୍ମୀଙ୍କରା । ଏହି ଶତାବ୍ଦୀରେ ତତ୍କାଳୀନ ଓଡ଼ିଶାର ରାଜଧାନୀ ତୋଷାଳୀ ନିକଟରେ 'ପୁରଭଗିରି'ରେ ପ୍ରତିଷ୍ଠିତ ଆଚାର୍ଯ୍ୟ ସର୍ବଗାମୀଙ୍କର ବିହାର ବୌଦ୍ଧ ଯୋଗଶିକ୍ଷାର ଏକ ପ୍ରଧାନ କେନ୍ଦ୍ର ଥିଲା । ଓଡ଼ିଶାରେ ବୌଦ୍ଧ ସମ୍ରାଟ ଶୁଭକର ଦେବ ବୌଦ୍ଧ ପଣ୍ଡିତ ପ୍ରାଜ୍ଞଙ୍କ ଦ୍ୱାରା ବୌଦ୍ଧ ଧର୍ମଗ୍ରନ୍ଥ 'ଗଣ୍ଡବ୍ୟୂହ'ର ଚୈନିକ ଅନୁବାଦ କରାଇ ତାଙ୍କରି ମାଧ୍ୟମରେ ଚୀନ ସମ୍ରାଟ ତେ-ସଙ୍ଗଙ୍କ ନିକଟକୁ ପଠାଇଥିଲେ (୭୯୫ ଖ୍ରୀ.) । ୭୪୭ ଖ୍ରୀ.ରେ ଇନ୍ଦ୍ରଭୂତିଙ୍କର ପୁତ୍ର ପଦ୍ମସମ୍ଭବ ଓଡ଼ିଶାରୁ ତିବ୍ବତକୁ ଯାଇ ତନ୍ତ୍ର ଓ ଇନ୍ଦ୍ରଜାଲ ବିଦ୍ୟା ପ୍ରଚାର କରିଥିଲେ (୧୨୦)

ସପ୍ତମ ଶତାବ୍ଦୀରୁ ଏକାଦଶ ଶତାବ୍ଦୀ ମଧ୍ୟରେ ୮୪ ଜଣ ସିଦ୍ଧାଚାର୍ଯ୍ୟଙ୍କ ସମେତ ଶତାଧିକ ବୌଦ୍ଧ ସିଦ୍ଧ ସାଧକ ନିଜ ନିଜ ଗ୍ରନ୍ଥ ରଚନା ଓ ପ୍ରଚାର ମାଧ୍ୟମରେ ଓଡ଼ିଶାରେ ବୌଦ୍ଧଧର୍ମକୁ ପ୍ରସାରିତ କରିବାପାଇଁ ଚେଷ୍ଟା କରିଛନ୍ତି ଏବଂ ଶୈବ, ଶାକ୍ତ, ବୈଷ୍ଣବ ଆଦି ଧର୍ମ ସହିତ ବୌଦ୍ଧ ଧର୍ମକୁ ସଂଗ୍ରାମଶୀଳ କରାଇ ବଞ୍ଚାଇ ରଖିଛନ୍ତି । ଏହି କାଳ ମଧ୍ୟରେ ଜନତାର ଆଦର-ଉତ୍ସାହ ଲାଭ କରି ଗଢ଼ି ଉଠିଛି ଶତ ଶତ ସ୍ତୂପ, ଚୈତ୍ୟ ଓ ବୌଦ୍ଧ ମନ୍ଦିର । ଲଳିତଗିରି, ରତ୍ନଗିରି, ଖିଚିଙ୍ଗ୍, ଅଯୋଧ୍ୟା, ସୋଲଣପୁର, ବଉଦ, ଚଉଦ୍ୱାର, ବାଣେଶ୍ୱର-ନାସୀ ଆଦିରୁ ପ୍ରାପ୍ତ ବୁଦ୍ଧ, ବୋଧିସତ୍ତ୍ୱ, ଅବଲୋକିତେଶ୍ୱର, ତାରା, ପ୍ରଜ୍ଞା ପାରମିତା ପ୍ରଭୃତିଙ୍କର ସୁନ୍ଦର ମୂର୍ତ୍ତି ଓଡ଼ିଶାରେ ବୌଦ୍ଧ ଧର୍ମ ପ୍ରସାରର ପ୍ରକୃଷ୍ଟ ପ୍ରମାଣ ପ୍ରଦାନ କରିଥାଏ ।

ଅଷ୍ଟମ-ନବମ ଶତାବ୍ଦୀରୁ ଓଡ଼ିଶାରେ ବୌଦ୍ଧ ଧର୍ମ ସଂକଟ ଓ ସଂଗ୍ରାମ, ଉତ୍‌ଥାନ ଓ ପତନ ଦେଇ ଗତି କଲାବେଳେ ବ୍ରାହ୍ମଣ ଧର୍ମ ମଧ୍ୟରେ ନିଜକୁ ଅଥବା ନିଜ ମଧ୍ୟରେ ବ୍ରାହ୍ମଣ୍ୟ ଧର୍ମକୁ ନ୍ୟାସ କରି ରୂପ-ରୂପାନ୍ତର ପରିଗ୍ରହ କରିଛି । ଫଳରେ ଓଡ଼ିଶାର ବୈଷ୍ଣବ ଧର୍ମକୁ ଅନେକେ ବୌଦ୍ଧ ଧର୍ମର ଏକ କ୍ରମ-ପରିଣତି ବୋଲି ମନେ କରିଛନ୍ତି । ନଗେନ୍ଦ୍ରନାଥ ବସୁ ପଞ୍ଚସଖାମାନଙ୍କୁ 'ପ୍ରଚ୍ଛନ୍ନ ବୌଦ୍ଧ' ବୋଲି କହିଛନ୍ତି (୧୨୧) ଓ ଅଚ୍ୟୁତାନନ୍ଦ ଦାସ, ନନ୍ଦ ଦାସ ପ୍ରଭୃତିଙ୍କ ପ୍ରବର୍ତ୍ତିତ ଧର୍ମ ବଙ୍ଗଦେଶର 'ସହଜିଆ' (ବୌଦ୍ଧ ସହଜଯାନ ପ୍ରଭାବିତ) ବୈଷ୍ଣବ ମତବାଦରୁ ଜାତ ବୋଲି ପଣ୍ଡିତ ବିନାୟକ ମିଶ୍ର ମତ ଦେଇଛନ୍ତି । (୧୨୨) ବୈଷ୍ଣବ ଧର୍ମରେ ସପ୍ତମ-ଅଷ୍ଟମ ଶତାବ୍ଦୀରୁ ବିଷ୍ଣୁଙ୍କ ନବମ ଅବତାର ଭାବରେ ବୁଦ୍ଧଙ୍କୁ ସ୍ଥାନ ଦିଆଯାଇଛି । ସପ୍ତମ-ଅଷ୍ଟମ ଶତାବ୍ଦୀର ବରାହ ପୁରାଣ ଓ ଦଶମ ଶତାବ୍ଦୀର ଶ୍ରୀମଦ୍ ଭାଗବତରେ ଏହାର ପ୍ରମାଣ ମିଳେ । ଜୟଦେବଙ୍କ ଗୀତ ଗୋବିନ୍ଦରେ ମଧ୍ୟ 'ବୁଦ୍ଧ' ହେଉଛନ୍ତି ନବମାବତାର—

"ନିନ୍ଦସି ଯଜ୍ଞବିଧେରହହ ଶ୍ରୁତିଜାତମ୍
ସଦୟ-ହୃଦୟ ଦର୍ଶିତ-ପଶୁଘାତମ୍
କେଶବ ! ଧୃତ-ବୁଦ୍ଧ-ଶରୀର ! ଜୟ ଜଗଦୀଶ ହରେ !"

ଦ୍ୱାଦଶ ଶତାବ୍ଦୀରେ ବିଷ୍ଣୁଙ୍କ ନବମ ଅବତାର 'ବୁଦ୍ଧ' ରୂପେ ଜଗନ୍ନାଥ ପ୍ରତିଷ୍ଠା ଅର୍ଜନ କରିସାରିଛନ୍ତି । ଏକ ଦିଗରେ ଯେପରି ବୌଦ୍ଧଧର୍ମ କ୍ରମଶଃ ମହାଯାନ, ବଜ୍ରଯାନ, ସହଜ ଯାନ, କାଳଚକ୍ର ଯାନ ମଧ୍ୟ ଦେଇ ଓଡ଼ିଶାର ବୈଷ୍ଣବ ଧର୍ମରେ ପ୍ରବେଶ ଲାଭ କରିଅଛି, ଅନ୍ୟ ଦିଗରେ ସେହିପରି ବୁଦ୍ଧ ଜଗନ୍ନାଥଙ୍କ ଭିତରେ ସ୍ଥାନ ସନ୍ଧାନ କରିଛନ୍ତି । ଦ୍ୱାଦଶ ଶତାବ୍ଦୀରୁ ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ କ୍ରମାଗତ ବୈଷ୍ଣବ, ଶୈବ, ଶାକ୍ତ, ବୌଦ୍ଧ ପ୍ରଭୃତି ଧର୍ମ ପରସ୍ପର ସହିତ ସମନ୍ୱିତ ହୋଇ ଏକ ସ୍ୱତନ୍ତ୍ର ଗଣ ଧର୍ମ ସୃଷ୍ଟିରେ ସହାୟକ ହୋଇଥିଲେ । ସୌର ଜଗତରେ ସୂର୍ଯ୍ୟ ଭଳି ସକଳ ଧର୍ମର କେନ୍ଦ୍ର ଜଗନ୍ନାଥ ଶତ ଶତ ବର୍ଷର ବିବର୍ତ୍ତନ ନେଇ ଏକକ ହୋଇ ଉଠିଲେ । ସୃଷ୍ଟି ଲାଭ କଲା ଜଗନ୍ନାଥ ଧର୍ମ । (୧୨୩)

## ଜଗନ୍ନାଥ-ବୁଦ୍ଧ ଉପାସନା : ସାମ୍ୟ, ସମନ୍ୱୟ ଓ ସମୀକରଣ-

ଓଡ଼ିଶାର ସ୍ଥପତି ଓ ସାହିତ୍ୟରେ ଜଗନ୍ନାଥ ବୁଦ୍ଧ ରୂପେ ପ୍ରତିଷ୍ଠିତ । ତେବେ ଏ ସମ୍ପର୍କୀୟ ଐତିହାସିକ ବା ସାହିତ୍ୟିକ ପ୍ରମାଣ ଅଷ୍ଟମ ଶତାବ୍ଦୀରୁ ଅଧିକ ପ୍ରାଚୀନ ନୁହେଁ । ଓଡ଼ିଶାରେ ଜଗନ୍ନାଥ 'ଜଗନ୍ନାଥ' ନାମରେ ଠିକ୍ କେବେ ଉପାସିତ ହେବାର ପରମ୍ପରା ସୃଷ୍ଟି ଲାଭ କରିଛି ତାହାର ଐତିହାସିକ ଉପାଦାନ ଏବେ ବି ସନ୍ଧାନର ଅପେକ୍ଷା ରଖେ । ଜଗନ୍ନାଥଙ୍କ ମଧ୍ୟରେ 'ବୁଦ୍ଧତ୍ୱ' ଆରୋପଣ ଓ ଜଗନ୍ନାଥ-ଉପାସନାର ଉନ୍ମେଷ ସମ୍ପର୍କରେ କେବଳ କେତେକ କୌତୂହଳ-ଉଦ୍ଦୀପକ କିମ୍ବଦନ୍ତୀକୁ ବହୁ ଆଲୋଚକ ଆବେଗର ସହିତ ଉପସ୍ଥାପିତ କରିଥାନ୍ତି ।

ସିଂହଳର ଧର୍ମକୀର୍ତ୍ତିଙ୍କ ଦ୍ୱାରା ରଚିତ 'ଦାଠାବଂଶ'କୁ ଭିତ୍ତିକରି ବୁଦ୍ଧଦେବଙ୍କ ବାମ ଦନ୍ତ ବିଷୟରେ ଯେଉଁ କିମ୍ବଦନ୍ତୀ ଅଛି ତାହାକୁ ଆଣି ଅନେକେ ଜଗନ୍ନାଥଙ୍କ ସହିତ ସମ୍ପର୍କିତ କରିଥାନ୍ତି । ଜଗନ୍ନାଥଙ୍କ ନବ କଳେବର ବେଳେ ଅନ୍ଧପଟଳ-ବନ୍ଧା କାରିଗର ଦ୍ୱାରା ନାଭି ସ୍ଥଳରେ ନ୍ୟାସିତ ହେଉଥିବା ଅଦ୍ୟାବଧି ସର୍ବ-ଅଜ୍ଞାତ ପଦାର୍ଥଟିକୁ ଅନେକେ ବୁଦ୍ଧଦନ୍ତ ବୋଲି ମନେ କରିଥାନ୍ତି । (୧୨୪) କିନ୍ତୁ ଏ ଦନ୍ତର ସିଂହଳ-ସ୍ଥାନାନ୍ତର, ସମୁଦ୍ରରେ କ୍ଷେପଣ ଆଦି ସମ୍ପର୍କୀୟ ବହୁ ଭିନ୍ନ

ଭିନ୍ନ କାହାଣୀ ରହିଛି । ଏ ସବୁର ଐତିହାସିକ ସତ୍ୟତା ନାହିଁ । ଦନ୍ତ ଉପାସିତ ହେଉଥିବା ସ୍ଥଳୀ ଦନ୍ତପୁରୀ ମଧ୍ୟ ପୁରୀ ବୋଲି ପ୍ରମାଣିତ ହେବାର ତଥ୍ୟ ନାହିଁ । ତେବେ ଜଗନ୍ନାଥଙ୍କ ଉତ୍ପତ୍ତି ସମ୍ବନ୍ଧୀୟ ଯେଉଁ ଇନ୍ଦ୍ରଦ୍ୟୁମ୍ନ-କିମ୍ବଦନ୍ତୀ ରହିଛି ତହିଁରୁ ଗୋଟିକ ସହିତ ଏହି କିମ୍ବଦନ୍ତୀର କେତେକ ସାମଞ୍ଜସ୍ୟ ରହିଛି । ଭଗବାନ୍ ଶ୍ରୀକୃଷ୍ଣଙ୍କର ମହାପ୍ରୟାଣ ପରେ ତାଙ୍କର ଶବଦାହ କରାଗଲା । ତାଙ୍କର ଛାତିର ଗୋଟିଏ ହାଡ଼ ଦଗଧ ହେଲାନାହିଁ । ତାହାକୁ ବଟ ଡାଳରେ ବାନ୍ଧି ସମୁଦ୍ରରେ ଭସାଇ ଦିଆଗଲା । ନୀଳାଚଳ ନିକଟ ସମୁଦ୍ର କୂଳରେ ଇନ୍ଦ୍ରଦ୍ୟୁମ୍ନ ବିଷ୍ଣୁଙ୍କ ଦର୍ଶନ ପାଇଁ ତପସ୍ୟା କରୁଥିଲେ । ଅସ୍ଥିଟି ପାଇ ବିଷ୍ଣୁଙ୍କ ଆଦେଶରେ ଦାରୁ ବିଗ୍ରହ ମଧ୍ୟରେ ସ୍ଥାପନ କରି ଇନ୍ଦ୍ରଦ୍ୟୁମ୍ନ ପୂଜା ଆରମ୍ଭ କଲେ । ସେହି ଦାରୁବିଗ୍ରହ ହେଉଛନ୍ତି ଜଗନ୍ନାଥ । ଇତିହାସ ଅସମର୍ଥିତ ଏହି ଗଳ୍ପରେ ବୁଦ୍ଧ-ଦନ୍ତ-କିମ୍ବଦନ୍ତୀର ଛାୟା ପଡ଼ିଥାଇ ପାରେ । କୃଷ୍ଣଙ୍କର ଏହି ଅସ୍ଥିକୁ କେହି କେହି ବୁଦ୍ଧଙ୍କ ଦନ୍ତ ସହିତ ସାମିଲ୍ କରିଛନ୍ତି । (୧୨୫)

ପୁରୀରେ ଜଗନ୍ନାଥଙ୍କ ପ୍ରତିଷ୍ଠା ସମ୍ପର୍କରେ ଅନ୍ୟ କିମ୍ବଦନ୍ତୀରୁ ଜଣାଯାଏ, ବିଶ୍ୱାବସୁ ନାମରେ ଜଣେ ଶବର ନୀଳମାଧବ (ଜଗନ୍ନାଥଙ୍କ ପୂର୍ବରୂପ)ଙ୍କୁ ବଣ ଭିତରେ ଲୁଗ୍ଣଇ ପୂଜା କରୁଥିଲେ । ଇନ୍ଦ୍ରଦ୍ୟୁମ୍ନ ନୀଳମାଧବଙ୍କୁ ଆଣିବାପାଇଁ ନିଜ ମନ୍ତ୍ରୀ ବିଦ୍ୟାପତିଙ୍କୁ ପଠାଇଲେ । ବିଦ୍ୟାପତି ବିଶ୍ୱାବସୁଙ୍କ କନ୍ୟାକୁ ପ୍ରଣୟ-ପାଶରେ ଆବଦ୍ଧ କରି ନୀଳମାଧବଙ୍କୁ ଲୁଗ୍ଣଇ ନେଇ ଆସିଲେ । ଦନ୍ତ-କିମ୍ବଦନ୍ତୀରେ ସେହିପରି ଦନ୍ତକୁମାର ରଜା ଗୁହଶିବଙ୍କ କନ୍ୟା ହେମମାଳାଙ୍କ ସହିତ ବିବାହ କରି ବୁଦ୍ଧଦନ୍ତକୁ ସିଂହଳକୁ ନେଇଯିବା ପୂର୍ବରୁ ବାଲିରେ ଲୁଗ୍ଣଇ ରଖିଥିଲେ । (୧୨୬) ଇନ୍ଦ୍ରଦ୍ୟୁମ୍ନଙ୍କୁ ଐତିହାସିକ ବ୍ୟକ୍ତି ଭାବରେ ପ୍ରମାଣ କରିବାର ପ୍ରଚେଷ୍ଟା-ବେଳେ ତାହାଙ୍କୁ ବୌଦ୍ଧରଜା ବୋଲି ଦର୍ଶାଯାଇଛି । (୧୨୭) L. A. Wadell ବିହାରର ମୁଙ୍ଗେର ଜିଲ୍ଲାର ବୌଦ୍ଧ କୀର୍ତ୍ତିମାନଙ୍କର ଧ୍ୱଂସାବଶେଷ ସମ୍ପର୍କରେ ଆଲୋଚନା କଲାବେଳେ ଯେଉଁ ଇନ୍ଦ୍ରଦ୍ୟୁମ୍ନଗଡ଼ର ଉଲ୍ଲେଖ କରିଛନ୍ତି ତାହା ଇନ୍ଦ୍ରଦ୍ୟୁମ୍ନଙ୍କର କୀର୍ତ୍ତି ବୋଲି ଅନେକଙ୍କର ମତ । ମୁସଲମାନମାନଙ୍କଦ୍ୱାରା ପରାସ୍ତ ହେବାପରେ ସେ ସପରିବାର ପୁରୀ ଗ୍ଣଲି ଆସିଥିଲେ (୧୧୯୨ ଖ୍ରୀ:) । ପଣ୍ଡିତ

ବିନାୟକ ମିଶ୍ରଙ୍କ ମତରେ ଏ ଇନ୍ଦ୍ରଦ୍ୟୁମ୍ନ ହେଉଛନ୍ତି 'ଜ୍ଞାନସିଦ୍ଧି' ଗ୍ରନ୍ଥର ପ୍ରଣେତା ଇନ୍ଦ୍ରଭୂତି । (୧୨୮) କିନ୍ତୁ ଏ ସବୁ ଅନୁମାନ ଉପରେ ଆଧାରିତ । ତେଣୁ ଇନ୍ଦ୍ରଦ୍ୟୁମ୍ନ-କିମ୍ବଦନ୍ତୀକୁ ଭିତ୍ତିକରି ଜଗନ୍ନାଥଙ୍କ ଉପାସନାର ଇତିହାସ ନିର୍ଣ୍ଣୟ କରଯାଇ ପାରିବ ନାହିଁ । ଦନ୍ତ-କିମ୍ବଦନ୍ତୀକୁ ଆଧାର କରି ନୀଳକଣ୍ଠ ଦାସ ଅନୁମାନ କରିଛନ୍ତି ଯେ ବୁଦ୍ଧଙ୍କ ପୂର୍ବରୁ କଳିଙ୍ଗରେ ବୌଦ୍ଧ ଭାବ ଥିଲା । ତା ନ ହେଲେ ବୁଦ୍ଧ-ଦନ୍ତଟିକୁ କଳିଙ୍ଗରାଜାଙ୍କ ପାଖକୁ ପଠାଇବାର ବୁଦ୍ଧି କ୍ଷେମଙ୍କର କାହିଁକି ହୁଅନ୍ତା ? (୧୨୯) କଳିଙ୍ଗରାଜାମାନଙ୍କର ପରମ୍ପରା କ୍ରମେ ପ୍ରଚଳିତ ଦନ୍ତ-ପୂଜାରୁ ଅନୁମିତ ହୁଏ କଳିଙ୍ଗରେ ବୁଦ୍ଧ-ଉପାସନା ପ୍ରତି ଅଶେଷ ସମ୍ମାନ ଥିଲା । (୧୩୦) କିନ୍ତୁ ଏ ଦନ୍ତ ଯେ ଜଗନ୍ନାଥଙ୍କ ନାଭିବ୍ରହ୍ମ ଏହା ଏକ ଅସାର ଯୁକ୍ତି । (୧୩୧) । ଏ ନାଭିବ୍ରହ୍ମ କୃଷ୍ଣଙ୍କର ଅସ୍ଥି ମଧ୍ୟ ନୁହେଁ । ବୈଷ୍ଣବମାନେ କେବେ ମୃତବ୍ୟକ୍ତିର ଦେହାବଶେଷକୁ ପୂଜା କରନ୍ତି ନାହିଁ । (୧୩୨)

ଜଗନ୍ନାଥଙ୍କ ସମ୍ପର୍କରେ ଗବେଷଣା କରି ତାଙ୍କ ମଧ୍ୟରେ 'ବୁଦ୍ଧତ୍ୱ' ସନ୍ଧାନ କରିଥିବା ଐତିହାସିକମାନଙ୍କ ମଧ୍ୟରେ ଜେନେରାଲ କନିଙ୍ଗହାମ୍ (୧୩୩) ମନମୋହନ ଗାଙ୍ଗୁଲି (୧୩୪) ଡକ୍ଟର ରାଜେନ୍ଦ୍ରଲାଲ ମିତ୍ର (୧୩୫) ଜେମ୍ସ ଫର୍ଗୁସନ (୧୩୬) ଲୁଇସ୍ ରୋଜଓ୍ୱେଟ (୧୩୭) ଡକ୍ଟର ହରେକୃଷ୍ଣ ମହତାବ (୧୩୮) ନଗେନ୍ଦ୍ରନାଥ ବସୁ (୧୩୯) ମୋନିର ଉଇଲିୟମ୍ସ (୧୪୦) ହପକିନସ (୧୪୧) Sir W. W. Hunte (୧୪୨) ଓ ହଣ୍ଟର (୧୪୩) ପ୍ରଭୃତିଙ୍କର ନାମ ଉଲ୍ଲେଖଯୋଗ୍ୟ । ଜଗନ୍ନାଥଙ୍କ ମଧ୍ୟରେ ବୁଦ୍ଧତ୍ୱ ଆରୋପ କରିବାର କେତୋଟି କାରଣ ରହିଛି ।

## ତ୍ରିରତ୍ନ ଓ ତ୍ରିମୂର୍ତ୍ତି–

ଡକ୍ଟର ହରେକୃଷ୍ଣ ମହତାବଙ୍କ ମତରେ ଅଶୋକଙ୍କ ସମୟରେ ଓଡ଼ିଶାର ଶବରମାନେ ବୌଦ୍ଧଧର୍ମରେ ଦୀକ୍ଷିତ ହୋଇଥିଲେ । ତହାଙ୍କରେ ପୁରୀରେ ନିର୍ମିତ ବୌଦ୍ଧସ୍ତୂପରେ ବୌଦ୍ଧ ତ୍ରିରତ୍ନ ସାଙ୍କେତିକ ଭାବରେ ଅଙ୍କିତ ହୋଇଥିଲା । ଏ ସ୍ତୂପ ବୌଦ୍ଧ ଶବରମାନଙ୍କର ଥିଲା ପ୍ରଧାନ ଉପାସନା ପୀଠ । ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀ-

ବେଳକୁ ଯେତେବେଳେ ମହାଯାନ ପନ୍ଥାର ପ୍ରବର୍ତ୍ତନ ଫଳରେ ବୁଦ୍ଧ ଓ ବୋଧିସତ୍ତ୍ୱଙ୍କର ପୂଜା ଆରମ୍ଭ ହେଲା, ସରଳ ବିଶ୍ୱାସୀ ଶବରମାନେ ସ୍ତୂପରେ ତ୍ରିରତ୍ନ ମଧ୍ୟରେ ବୁଦ୍ଧଙ୍କୁ ଉପାସନା କଲେ । ଏବେ ବି ବହୁ ସ୍ଥାନରେ ସ୍ୱସ୍ତିକ ଚିହ୍ନର ପୂଜା-ପରମ୍ପରା ଅଛି । ତିନୋଟିଯାକ ଚିହ୍ନ ସମୂହ-ଭାବରେ 'ଜଗନ୍ନାଥ' ନାମରେ ଅଭିହିତ ଥିଲା । ଏପରି ଏକ ତଥ୍ୟର ପ୍ରମାଣ ପାଇଁ ଡକ୍‌ଟର ମହତାବ ପୁରାତନ ପାଲି ସାହିତ୍ୟ ଓ ନେପାଳର ତନ୍ତ୍ର ସାହିତ୍ୟରେ ବୁଦ୍ଧଙ୍କ 'ଜଗନ୍ନାଥ' ନାମର ଉଲ୍ଲେଖ ରହିଥିବା ପ୍ରମାଣ କରିଛନ୍ତି । ଏଲୋରର ଏକ ମନ୍ଦିରର ନାମ ଜଗନ୍ନାଥ । ପରବର୍ତ୍ତୀ କାଳରେ ଯେତେବେଳେ ମୂର୍ତ୍ତିପୂଜାର ପ୍ରଚଳନ ହେଲା, ସେତେବେଳେ ଏକ ମୂର୍ତ୍ତି ବଦଳରେ ବୌଦ୍ଧଧର୍ମର ବୁଦ୍ଧ, ଧର୍ମ, ସଙ୍ଘ ତ୍ରିରତ୍ନକୁ ସ୍ୱତନ୍ତ୍ର ସ୍ୱତନ୍ତ୍ର ଭାବରେ ରଖି ତ୍ରିମୂର୍ତ୍ତିର କଳ୍ପନା କରାଗଲା । ଏ ତିନି ମଧ୍ୟରୁ ବୁଦ୍ଧ ହେଉଛନ୍ତି ମୁଖ୍ୟ । ବୌଦ୍ଧ ଧର୍ମରେ 'ଧର୍ମ' ନାରୀ ରୂପେ ପରିକଳ୍ପିତ । ସଙ୍ଘ ମଧ୍ୟରେ ଥାଏ ଭ୍ରାତୃ-ଭଗିନୀର ପବିତ୍ର ସମ୍ପର୍କ । ତେଣୁ ଜଗନ୍ନାଥଙ୍କଠାରେ ବୁଦ୍ଧ, ସୁଭଦ୍ରାଙ୍କଠାରେ ଧର୍ମ ଓ ବଳଭଦ୍ରଙ୍କଠାରେ ସଙ୍ଘର ଆରୋପ କରାଗଲା । ଶବରମାନେ ପୂର୍ବରୁ ଦାରୁ ଉପାସକ ଥିବାରୁ ଦାରୁରେ ଏ ତିନି ମୂର୍ତ୍ତି ନିର୍ମାଣ କରି ପୂଜା କଲେ । (୧୧୪)

ପ୍ରଥମେ ବୌଦ୍ଧ ଧର୍ମରେ ଦୀକ୍ଷିତ ଶବରମାନଙ୍କ ଦ୍ୱାରା ଉପାସିତ ତ୍ରିରତ୍ନ (ସ୍ୱସ୍ତିକ) ଚିହ୍ନର ଏକ ରେଖା ଥିବାର ସାହିତ୍ୟିକ ଉଲ୍ଲେଖ ଆମେ ସାରଳା ମହାଭାରତରେ ଦେଖିବାକୁ ପାଉ–

"ଏତେ ବୋଲି ରଜା ଯାଇ ଫେଡ଼ିଲା କବାଟ
କିରତ ବ୍ରାହ୍ମଣ ଦୁହିଁଙ୍କୁ ପାଇଲା ଭେଟ
ଦେଖିଲା ପ୍ରତ୍ୟକ୍ଷ ବିଷ୍ଣୁଙ୍କର ତିନିମୂର୍ତ୍ତି
କରପାଦ ନାହିଁ ମହା ବଉଦର ଜ୍ୟୋତି
ନାସା କର୍ଣ୍ଣ ଶ୍ରବଣ ଯେ ନୟନ ନ ଦିଶି
ଦେଖି ଇନ୍ଦ୍ରଦ୍ୟୁମ୍ନ ମହା ବିସ୍ମୟରେ ବସି
ମହା ବୌଦ୍ଧ ବିକାଶ ହୋଇଲା ତିନି ରେଖା
କର-ଚରଣ-ପଲ୍ଲବ ନ ଦିଶଇ ଶିଖା ।" (୧୪୫)

ନିଷୟ ଜନଶ୍ରୁତିରେ ଏ ତଥ୍ୟ ସଞ୍ଚିତ ଓ ସଞ୍ଚାରିତ ହୋଇ ଆସିଥିଲା । ବୋଧହୁଏ ଏ ତ୍ରିମୂର୍ତ୍ତି ପରିକଳ୍ପନା ଓ ଗଠନର ସମୟ ଖ୍ରୀଷ୍ଟୀୟ ସପ୍ତମ ବା ଅଷ୍ଟମ ଶତାବ୍ଦୀ । ଏହି ସମୟରେ (କର ବା ଭୌମ ବଂଶର ଗଜତ୍ୱ କାଳରେ) ବୁଦ୍ଧ ବିଷ୍ଣୁଙ୍କର ଅବତାର ବୋଲି ଗୃହୀତ ହେବା ଫଳରେ (ବରାହ ପୁରାଣ ଦ୍ରଷ୍ଟବ୍ୟ) ତାଙ୍କ ସହିତ ଅନ୍ୟ ଦୁଇ ମୂର୍ତ୍ତିଙ୍କ ସ୍ଥାପନର ଯଥାର୍ଥତା ପାଇଁ ବୁଦ୍ଧଙ୍କ ବାସୁଦେବ (କୃଷ୍ଣ) ଅବତାରକୁ ଗ୍ରହଣ କରାଯାଇଛି । କୃଷ୍ଣଙ୍କର ଭାଇ ବଳରାମ, ବଳଦେବ ବା ବଳଭଦ୍ର ନାମରେ ଓ ଭଗିନୀ ସୁଭଦ୍ରା ସେହି ସୁଭଦ୍ରା ନାମରେ ପରିଚିତ ହୋଇଛନ୍ତି । 'ନିଦେଶ' (ପାଲିଭାଷାରେ ରଚିତ ବୌଦ୍ଧ ଧର୍ମଗ୍ରନ୍ଥ)ରେ ବାସୁଦେବ ଓ ବଳଦେବ ପୂଜାକୁ ଅତି ଉଚ୍ଚ ସ୍ଥାନ ଦିଆଯାଇଛି । ଦୁଇ ଭାଇ ଓ ଭଉଣୀ ରୂପେ ସ୍ୱୀକୃତ ଶତ ଶତ ବର୍ଷ ଧରି ଉପାସିତ ଏହି ମୂର୍ତ୍ତିତ୍ରୟଙ୍କଠାରେ ବିଷ୍ଣୁତ୍ୱ ଆରୋପଣ ବେଳେ କୃଷ୍ଣ, ବଳରାମ ଓ ସୁଭଦ୍ରା ପରିକଳ୍ପନା ଏକାବେଳକେ ଅପରିହାର୍ଯ୍ୟ । କୃଷ୍ଣ ଜଗନ୍ନାଥ ରୂପେ, ବଳରାମ ବଳଭଦ୍ର ରୂପେ ଓ ସୁଭଦ୍ରା ସୁଭଦ୍ରା ରୂପରେ ଅତି ସହଜରେ ଜନମାନସକୁ ପ୍ରଭାବିତ କରିପାରିଛନ୍ତି ।

କନିଙ୍ଗହାମ୍ ସାଞ୍ଚିର ବୌଦ୍ଧ ସ୍ତୂପ (ଖ୍ରୀ: ପୂ: ୨ୟ-୩ୟ)ର ତୋରଣ ଦେଶରେ ଅଙ୍କିତ ଏକ ଚିତ୍ର ପାଲି ଭାଷାର ଯ (ମରୁତ୍‌ବୀଜ), ର (ଅଗ୍ନିବୀଜ), ଲ (ଅପ୍-ବୀଜ), ବ (କ୍ଷିତି-ବୀଜ) ଓ ନ (ଶୂନ୍ୟ-ବୀଜ ଏହି ପଞ୍ଚ ମହାଭୂତ ବୀଜାକ୍ଷରର ସମ୍ମିଶ୍ରଣ ବୋଲି ଅନୁମାନ କରିଛନ୍ତି । ତାଙ୍କ ମତରେ ଏହା ହେଉଛି 'ଧର୍ମ'ର ଚିହ୍ନ । ଧର୍ମ (ପ୍ରକୃତି) ସହ 'ବୁଦ୍ଧ'ଙ୍କ ସଂଯୋଗରେ ସଂସାର ଉଦ୍ଭବ । ସେ ଏହି ତ୍ରିରତ୍ନ ସହିତ ତ୍ରିମୂର୍ତ୍ତିର ମେଳ ଦେଖିଛନ୍ତି । କିନ୍ତୁ ସେ ଭ୍ରମ କରିଛନ୍ତି । ତାଙ୍କ ଦ୍ୱାରା ପ୍ରଦର୍ଶିତ ଚିତ୍ରରେ ବଳଭଦ୍ର ଓ ଜଗନ୍ନାଥ ଊର୍ଦ୍ଧ୍ୱବାହୁ ହୋଇଯାଇଛନ୍ତି, କିନ୍ତୁ ପ୍ରକୃତ ମୂର୍ତ୍ତିରେ ଦୁହିଁଙ୍କ ହାତ ସମ୍ମୁଖକୁ ସିଧା ଭାବରେ ପ୍ରସାରିତ । (୧୪୬) ଲୁଇସ୍ ରୋଜଓ୍ୱିଚ୍‌ଙ୍କ ମତରେ 'ଜଗନ୍ନାଥ' ହେଉଛନ୍ତି ଧର୍ମର ଚିହ୍ନ । ଏହି ଚିହ୍ନଟି 'ପ୍ରକୃତି'ର ବିଭିନ୍ନ ରୂପ ସୂଚକ ଛଅଟି ପାଲି ଅକ୍ଷର (ଯ, ର, ଲ, ବ, ନ, ସ)ର ସମାବେଶ ମାତ୍ର । ଡକ୍‌ଟର ହରେକୃଷ୍ଣ ମହତାବ ମଧ୍ୟ ବୌଦ୍ଧ ମନ୍ତ୍ରର ପାଲିବର୍ଣ୍ଣ ସହିତ ସାମଞ୍ଜସ୍ୟ ଅଛି ବୋଲି ସ୍ୱୀକାର କରନ୍ତି । (୧୪୭) ବୌଦ୍ଧ ତ୍ରିରତ୍ନ ସହିତ

ଜଗନ୍ନାଥ ତ୍ରିମୂର୍ତ୍ତିର ସାମ୍ୟ ଥିବା ଅଧ୍ୟାପକ ଚିତ୍ତରଞ୍ଜନ ଦାସ ମଧ୍ୟ ସମର୍ଥନ କରନ୍ତି । (୧୪୮)

ବାହ୍ୟ ମୂର୍ତ୍ତି-ତତ୍ତ୍ୱକୁ ଛାଡ଼ିଦେଲେ ଦାର୍ଶନିକ ଦୃଷ୍ଟିକୋଣରୁ ଦେଖିଲେ ବୌଦ୍ଧ ସଂଘ (ମୈତ୍ରୀ ଚେତନା, ଧର୍ମ (କରୁଣା, ପତିତପାବନ) ଚେତନା ଓ ବୁଦ୍ଧ (ନିର୍ବାଣ, ମୁକ୍ତି) ଚେତନା ହେଉଛି ଜଗନ୍ନାଥ-ଚେତନାର ଏକ ଏକ ବିଶଷ୍ଟ ବିଭବ । ସଂଘର ଏକକ ଅନୁଷ୍ଠାନ ବୌଦ୍ଧଧର୍ମର ପ୍ରସାର ଓ ଦୃଢ଼ୀକରଣରେ ବିଶେଷ ସହାୟକ ଥିଲ । ପୃଥିବୀର ପ୍ରାୟ ପ୍ରତ୍ୟେକ ଧର୍ମ ଏହି ସଂଘ (ଐକ୍ୟ, ମୈତ୍ରୀ, ଗୋଷ୍ଠୀ) ମହତ୍ତ୍ୱକୁ ଉଚ୍ଚ ସ୍ଥାନ ଦେଇଛି । (୧୪୯) ତେବେ ଜଗନ୍ନାଥ ଧର୍ମରେ ଏହା ଅନନ୍ତ, ଅନନ୍ୟସାଧାରଣ । ଏ ମୈତ୍ରୀ ଭବର ସୁଦୂର-ପ୍ରସାରୀ ରୂପ ହେଉଛି ବୈଶ୍ୱ-ଚେତନା (universality), ଯାହା ଜଗନ୍ନାଥ ଧର୍ମର ପଟାନ୍ତର-ହୀନ ବୈଶିଷ୍ଟ୍ୟ । ଏହି ବୈଶ୍ୱ-ଚେତନାରୁ ଜନ୍ମ ନିଏ ଆତ୍ମଦାନର ପ୍ରେରଣା । ଆତ୍ମଦାନରେ ହିଁ ଆତ୍ମାର ବିକାଶ । ଏ ଦାନରେ ଅନ୍ୟର ଅଭବ ଅପସରି ଯାଏ, ଉପକାର ହୁଏ । କିନ୍ତୁ ସେଇଟା ବୈଶ୍ୱ-ଚେତନାର ବଡ଼ ଦିଗ ନୁହେଁ । ବଡ଼ ଦିଗ ହେଉଛି ଆତ୍ମସାଧନା ମାଧ୍ୟମରେ ଆତ୍ମାର ଉନ୍ନୀତନ ଓ ସିଦ୍ଧି । ବୌଦ୍ଧ ମହାଯାନ ପନ୍ଥାରେ ଆତ୍ମଦାନ (ନିରଲସ ମୈତ୍ରୀ) ଗ୍ରଲିଯାଇ ପଶିଲ କରୁଣା ଓ ଅନୁକମ୍ପା ବା ପତିତର ସେବା । (୧୫୦) ବୋଧହୁଏ ଏହିଭଳି ଏକ ପରିପ୍ରେକ୍ଷୀରେ ଜଗନ୍ନାଥଙ୍କର ପତିତପାବନ ନାମର ସୃଷ୍ଟି ।

## ବିଷ୍ଣୁ (ଜଗନ୍ନାଥ)ଙ୍କର ବୁଦ୍ଧାବତାର-

ପ୍ରଥମେ ଆମେ କାଶ୍ମୀରର ନୀଳମତ ପୁରାଣ (୬ଷ୍ଠ-୭ମ ଶତାବ୍ଦୀ)ରେ ବୁଦ୍ଧଙ୍କୁ ବିଷ୍ଣୁଙ୍କ ଅବତାର ଭବରେ ଦେଖୁ । ବରାହ ପୁରାଣ (୭ମ-୮ମ ଶତାବ୍ଦୀ ରେ ମଧ୍ୟ ବିଷ୍ଣୁଙ୍କର ଦଶାବତାର (ମତ୍ସ୍ୟ, କୂର୍ମ, ବରାହ, ନୃସିଂହ, ବାମନ, ପରଶୁରାମ, ଦାଶରଥି ରାମ, ବାସୁଦେବ-କୃଷ୍ଣ, ବୁଦ୍ଧ ଓ କଳ୍କି) ମଧ୍ୟରେ ବୁଦ୍ଧଙ୍କୁ

ନାମୋଲ୍ଲେଖ ଦେଖିବାକୁ ପାଉ । ୮ମ ଶତାବ୍ଦୀର ଇନ୍ଦ୍ରଭୂତିଙ୍କ 'ଜ୍ଞାନସିଦ୍ଧି' ଗ୍ରନ୍ଥରେ ବହୁ ସ୍ଥାନରେ ବୁଦ୍ଧ ଜଗନ୍ନାଥ ରୂପରେ କଥିତ । ୭ମ-୮ମ ଶତାବ୍ଦୀରେ ଭୌମ ରାଜତ୍ୱରେ ଓଡ଼ିଶାରେ ବୁଦ୍ଧଙ୍କୁ ବିଷ୍ଣୁଙ୍କର ଅବତାର ରୂପେ ଗ୍ରହଣ କରାଯାଇ ଥିଲା । ନବମ-ଦଶମ ଶତାବ୍ଦୀରେ ବଙ୍ଗଳାର ପାଳ ବଂଶୀୟ ବୌଦ୍ଧ ରାଜା ଧର୍ମପାଳ (୧୫୧) ଓ ଦେବପାଳ (୧୫୨) ଓଡ଼ିଶା ଉପରେ ପ୍ରଭାବ ବିସ୍ତାର କରି-ଥିଲେ । ଏହି ସମୟରେ ରମାଇ ପଣ୍ଡିତ ନାମକ ଜଣେ ସନ୍ନ୍ୟାସୀ ସମନ୍ୱୟବାଦୀ ଏକ ଧର୍ମର ପ୍ରବର୍ତ୍ତନ କରି ଏହି ଧର୍ମରେ କଳିଙ୍ଗର ରାଜା ରଞ୍ଜିତଙ୍କୁ ଦୀକ୍ଷିତ କରାଇ ଥିଲେ । (୧୫୩) ଏହି ରଞ୍ଜିତ ବୋଧହୁଏ ଶୁଳ୍କି ବଂଶର ରଣ ସ୍ତମ୍ଭ ୧ମ । (୧୫୪) ରମାଇ ଦାସଙ୍କ ଧର୍ମପୂଜା ବିଧାନରେ ଆମେ ପ୍ରଥମେ ଜଗନ୍ନାଥଙ୍କ ସହ ବୁଦ୍ଧଙ୍କର ସମୀକରଣ ଲକ୍ଷ୍ୟ କରୁ–

"ନବମ ମୂର୍ତ୍ତିରେ ହରି ଜଗନ୍ନାଥ ନାମ ଧରି ଜଳଧିର ତୀରେ କୈଲ ବାସ

+ + +

ଜଳଧିର ତୀରେ ସ୍ଥାନ ବୌଦ୍ଧ ରୂପେ ଭଗବାନ ହୟା ତୁମି କୃପାବଲୋକନ ।"

(୧୫୫)

ଦ୍ୱାଦଶ ଶତାବ୍ଦୀରେ ଜୟଦେବ 'ଗୀତଗୋବିନ୍ଦ'ରେ ବିଷ୍ଣୁଙ୍କ ନବମ ଅବତାରକୁ 'ବୁଦ୍ଧ ଶରୀର' ରୂପେ ସମ୍ମାନ ଦେଇଛନ୍ତି ।

"ନିନ୍ଦସି ଯଜ୍ଞବିଧେରହହ ଶ୍ରୁତିଜାତମ୍
ସଦୟ ହୃଦୟ ଦର୍ଶିତ-ପଶୁଘାତମ୍
କେଶବ ! ଧୃତ ବୁଦ୍ଧ ଶରୀର ! ଜୟ ଜଗଦୀଶ ହରେ !" (୧୫୬)

ରାଜେନ୍ଦ୍ର ଲାଲ ହିନ୍ଦୁ ଧର୍ମରେ ବୁଦ୍ଧ-ଅବତାରର କାଳ ବହୁତ ଆଗକୁ (୪ର୍ଥ ଶତାବ୍ଦୀକୁ) ଟାଣି ନେଇଛନ୍ତି । (୧୫୭) ସାର୍ ମୋନିର ଉଇଲିୟମ୍‌ସଙ୍କ ମତରେ ବୈଷ୍ଣବ ଧର୍ମ ବୌଦ୍ଧ ଧର୍ମରୁ ବହୁ ଜିନିଷ ଗ୍ରହଣ କରିଛି, ଏପରି କି ବିଷ୍ଣୁଙ୍କ ଦଶ ଅବତାର ମଧ୍ୟରେ ବୁଦ୍ଧଙ୍କୁ ସ୍ଥାନ ଦେଇଛି । ପୁରୀର ମନ୍ଦିର ପ୍ରଥମେ ବୌଦ୍ଧ

ମନ୍ଦିର ଥିଲା, ପରେ ବୈଷ୍ଣବ ମନ୍ଦିରରେ ପରିଣତ ହୋଇଅଛି । (Buddhism) ଗ୍ରନ୍ଥ ଦ୍ରଷ୍ଟବ୍ୟ) । ହପ୍‌କିନ୍‌ସଙ୍କ ମତରେ, ଜଗନ୍ନାଥ ମନ୍ଦିର ପୂର୍ବେ ଥିଲା ଏକ ବୌଦ୍ଧ ମନ୍ଦିର ଓ ତହିଁରେ ବୁଦ୍ଧ ପୂଜା ପାଉଥିଲେ । (The Religious of the World ଗ୍ରନ୍ଥ ଦ୍ରଷ୍ଟବ୍ୟ) । ଫର୍ଗୁସନ୍ ମତନ କରିଛନ୍ତି, ପୁରୀରେ ଜଗନ୍ନାଥ ଧର୍ମରେ ସକଳ ବିଭବରେ ବୌଦ୍ଧ ଧର୍ମର ପ୍ରଭାବ ପଡ଼ିଅଛି, କିନ୍ତୁ ବୌଦ୍ଧଧର୍ମ କ୍ରମେ ଏତେ ଖରାପ ଅବସ୍ଥାକୁ ଆସି ଯାଇଛି ଯେ ପ୍ରାଚୀନ ଶୁଦ୍ଧ ବୌଦ୍ଧଧର୍ମ ସମ୍ପର୍କରେ ଯେଉଁମାନଙ୍କର ଜ୍ଞାନ ଥିବ, ଏହାକୁ ଦେଖିଲେ ସେମାନେ ବିସ୍ମିତ ହେବେ । (Indian Architecture ଗ୍ରନ୍ଥ ଦ୍ରଷ୍ଟବ୍ୟ) । ଏମାନେ ସମସ୍ତେ ଜଗନ୍ନାଥ ଯେ ବୁଦ୍ଧ ଅଥବା ବୁଦ୍ଧ ଅବତାର, ପ୍ରତ୍ୟକ୍ଷ ବା ପରୋକ୍ଷରେ କହିବାକୁ ଗ୍ରହିଁଛନ୍ତି । ଜେନେରାଲ୍ କନିଙ୍ଗ୍‌ହାମ ଲେଖିଛନ୍ତି ଯେ ମଥୁରା ଓ ବନାରସର ପଞ୍ଜିକାମାନଙ୍କରେ ଜଗନ୍ନାଥଙ୍କୁ ବ୍ରାହ୍ମଣ୍ୟ ଧର୍ମର ଅବତାର ବୁଦ୍ଧ ରୂପେ ଗ୍ରହଣ କରାଯାଇଅଛି । (Ancient Gergraphy of India) । 'ଇମ୍ପେରିଏଲ ଗେଜେଟିଅର ଅଫ୍ ଇଣ୍ଡିଆ'ରେ ଲେଖା ଅଛି, ବିଷ୍ଣୁଙ୍କ ନବମ ଅବତାର ବୁଦ୍ଧଙ୍କ ସ୍ଥାନରେ ବେଳେ ବେଳେ ଜଗନ୍ନାଥଙ୍କ ଚିତ୍ର ଦିଆଯାଏ । ଦୁର୍ଗା ବା ଗଣେଶ ମେଢ଼ମାନଙ୍କରେ ଯେଉଁ ଦଶାବତାର ଅଙ୍କିତ ହୁଏ, ତହିଁରେ ବୁଦ୍ଧଙ୍କ ସ୍ଥାନରେ 'ଜଗନ୍ନାଥ' ହିଁ ଚିତ୍ରିତ ହୋଇଥାନ୍ତି । ଏ ପରମ୍ପରା ଅତି ପ୍ରାଚୀନ । ସେ ଯାହା ହେଉ ଦ୍ୱାଦଶ ଶତାବ୍ଦୀ ବେଳକୁ ବିଷ୍ଣୁଙ୍କ ବୁଦ୍ଧ-ଅବତାର ଭାବରେ ଜଗନ୍ନାଥଙ୍କ ପ୍ରତିଷ୍ଠା ପୂର୍ଣ୍ଣତା ଲାଭ କରି ସାରିଥିଲା ।

## ବୌଦ୍ଧତନ୍ତ୍ରରେ ଶ୍ରୀଜଗନ୍ନାଥ :

କ୍ରମେ ବୌଦ୍ଧ ମହା ଯାନ୍, ସହଜ ଯାନ, କାଳଚକ୍ର ଯାନରେ ତାନ୍ତ୍ରିକତା ପ୍ରବେଶ ଲାଭ କରିଛି । ଇନ୍ଦ୍ରଭୂତିଙ୍କ ସମୟକୁ ଓଡ଼ିଶା ଏକ ପ୍ରଧାନ ତାନ୍ତ୍ରିକ ପୀଠ ରୂପେ ପରିଚିତ ହୋଇ ସାରିଥିଲା ଏବଂ ଜଗନ୍ନାଥ ବୌଦ୍ଧମାନଙ୍କ ଦ୍ୱାରା ସେମାନଙ୍କର ପ୍ରଧାନ ଦେବତା ଭାବରେ ପ୍ରତିଷ୍ଠା ଲାଭ କରି ସାରିଥିଲେ । ତେଣୁ ଇନ୍ଦ୍ରଭୂତିଙ୍କର ଜ୍ଞାନସିଦ୍ଧି ଗ୍ରନ୍ଥରେ ବୁଦ୍ଧରୂପୀ ଜଗନ୍ନାଥ ବଜ୍ରସତ୍ତ୍ୱ, ମୁଦ୍ରାମଣ୍ଡଳ, କରୁଣା, ନିର୍ବାଣ ଆଦି ଅନ୍ୱୟରେ ରୂପାନ୍ୱିତ ହୋଇଛନ୍ତି । (୧୫୮) ଇନ୍ଦ୍ରଭୂତିଙ୍କର

ଶିଷ୍ୟ ଅନଙ୍ଗବଜ୍ର ମଧ୍ୟ ଜଗନ୍ନାଥଙ୍କୁ ବଜ୍ରଯାନୀ ବୁଦ୍ଧ ରୂପେ କଳ୍ପନା କରିଛନ୍ତି । (୧୫୯) ଅନ୍ୟାନ୍ୟ ବୌଦ୍ଧ ଧର୍ମ ଗ୍ରନ୍ଥରେ ମଧ୍ୟ ଜଗନ୍ନାଥ ବଜ୍ରପାଣି, ନିର୍ବାଣ ସ୍ୱରୂପ ଆଦି ଭାବରେ ବର୍ଣ୍ଣିତ । ଯଥା—

"ଏବଂ ମୁକ୍ତୋ ଜଗନ୍ନାଥଃ ସର୍ବମାନବଲୋକିତଃ
ଉବାଚ ମଧୁରବାଣୀର୍ବଜ୍ରପାଣିପ୍ରବୋଧିନୀଃ ।" (୧୬୦)

ଅନ୍ତତଃ ଅଷ୍ଟମ ଶତାବ୍ଦୀରୁ ଯେ ଓଡ୍ଡିୟାନ ଓଡ଼ିଶା) ପ୍ରସିଦ୍ଧ ତାନ୍ତ୍ରିକ ବୌଦ୍ଧପୀଠ ଥିଲା, ଏହା ନିଶ୍ଚିତ । ଏହାର ପ୍ରସିଦ୍ଧି ଜ୍ଞାନାର୍ଣ୍ଣବ, ବୃହନ୍ନୀଳା, ରୁଦ୍ର-ଯାମଳ, କୁବ୍ଜିକା ତନ୍ତ୍ର, ପୀଠ ନିର୍ଣ୍ଣୟ ଓ କାଳିକାପୁରାଣ ଆଦି ବୌଦ୍ଧ ଓ ଶାକ୍ତ ତନ୍ତ୍ର ଗ୍ରନ୍ଥମାନଙ୍କରେ ବର୍ଣ୍ଣିତ ହୋଇଅଛି ଏବଂ ଏଗୁଡ଼ିକରେ ଜଗନ୍ନାଥଙ୍କୁ ଶୂନ୍ୟ, ଭୈରବ, ଯୋଗନିଦ୍ରାଭିଭୂତ, ମୁଦ୍ରାବଦ୍ଧ, ଜାଡ଼ ଦେବତା ରୂପରେ କଳ୍ପନା କରା-ଯାଇଅଛି ।

ଜଗନ୍ନାଥଙ୍କ ଭୋଗ ନିତି ବିମଳାଙ୍କ ପାଖରେ ସମର୍ପିତ ହେବା ପରେ ଯାଇ ମହାପ୍ରସାଦରେ ପରିଣତ ହୁଏ । ଜଗନ୍ନାଥଙ୍କୁ ଭୈରବ ମନ୍ତ୍ରରେ ଉପାସନା କରା-ଯାଇଥାଏ । ଜଗନ୍ନାଥଙ୍କୁ ମାଂସ ପରିବର୍ତ୍ତେ ରୌପ୍ୟ ପାତ୍ରରେ ଅଦା, ଡାଇଫଳ ପ୍ରଭୃତି ମିଶା ଖେଚୁଡ଼ି ଓ ମଦ୍ୟ ପରିବର୍ତ୍ତେ କଂସା ବାସନରେ ପଇଡ଼ ପାଣି ଭୋଗ ଦିଆଯାଏ । ତନ୍ତ୍ର ମନ୍ତ୍ରରେ ମଦ୍ୟମାଂସ ମହାପ୍ରସାଦର ଅନ୍ତର୍ଭୁକ୍ତ । ପରବର୍ତ୍ତୀ କାଳରେ ଅଧଃପତିତ ତାନ୍ତ୍ରିକ ବୌଦ୍ଧ ଧର୍ମର ଉପାସନା ପଦ୍ଧତିର ଏଇ ହେଉଛି ପରିଣତି । ଜଗନ୍ନାଥ ମନ୍ଦିର ତଥା ଅନ୍ୟାନ୍ୟ ମନ୍ଦିର ଗାତ୍ରରେ ପରିଦୃଷ୍ଟ ନଗ୍ନ ଅଶ୍ଳୀଳ ଚିତ୍ର ଓ ମୂର୍ତ୍ତି ଏହି ତାନ୍ତ୍ରିକ ବୌଦ୍ଧଧର୍ମର ପ୍ରଭାବର ପରିଚୟ । ଜଗନ୍ନାଥଙ୍କ ନବକଳେବର ଉତ୍ସବ ବେଳେ ଦ୍ରିମୂର୍ତ୍ତିଙ୍କ ଲାଗି ଦାରୁ ସନ୍ଧାନ କାର୍ଯ୍ୟ ତନ୍ତ୍ରମନ୍ତ୍ରରେ କାକଟପୁର ମଙ୍ଗଳାଙ୍କ ନିର୍ଦ୍ଦେଶ ଅନୁଯାୟୀ ସମ୍ପାଦିତ ହୋଇଥାଏ । ଜଗନ୍ନାଥ ଏବଂ ବଳଭଦ୍ରଙ୍କ ମଧ୍ୟରେ ସ୍ଥାପିତ ସୁଭଦ୍ରାଙ୍କ ପ୍ରତିମା ତାନ୍ତ୍ରିକ ବୌଦ୍ଧ ଧର୍ମର ଇଙ୍ଗିତ ଦିଏ । ସୁଦର୍ଶନ ମୂର୍ତ୍ତି ଗୋଟିଏ ସ୍ତମ୍ଭ ବା ଲିଙ୍ଗର ଆକୃତି । ଏହା ବୌଦ୍ଧ ବଜ୍ରଯାନର 'ବଜ୍ର' ବା ଲିଙ୍ଗର ସଙ୍କେତ ବୋଲି ମନେ ହୋଇଥାଏ ।

## ରଥଯାତ୍ରା :

ଅନେକ ପଣ୍ଡିତ ଜଗନ୍ନାଥଙ୍କ ରଥଯାତ୍ରାରେ ବୌଦ୍ଧ ରଥ ଯାତ୍ରାର ପ୍ରଭାବ ଲକ୍ଷ୍ୟ କରିଥାନ୍ତି । ଡଃ ହରେକୃଷ୍ଣ ମହତାବଙ୍କ ମତରେ ବୌଦ୍ଧଧର୍ମାବଲମ୍ବୀ ଶବର-ମାନେ ବୌଦ୍ଧର୍ତ୍ତିରନ୍ର ଅନୁକରଣରେ କାଷ୍ଠରେ ତ୍ରିମୂର୍ତ୍ତି ନିର୍ମାଣ ପରେ ବୌଦ୍ଧ ପ୍ରଥା ଅନୁଯାୟୀ ତାଙ୍କର ସ୍ନାନ ଯାତ୍ରା ଓ ରଥ ଯାତ୍ରାର ଆରମ୍ଭ କରିଥିବା ସମ୍ଭବ । ବର୍ଷାରମ୍ଭର କିଛି କାଳ ପରେ ବୁଦ୍ଧମୂର୍ତ୍ତିକୁ ବାହାର କରି ସ୍ନାନ କରାଇବା ଓ ରଥରେ ପରିକ୍ରମା କରାଇବା ହେଉଛି ବୌଦ୍ଧପୂଜା ବିଧାନର ଏକ ଏକ ବିଶେଷ ଅଙ୍ଗ । ଭାରତ ଓ ଅନ୍ୟାନ୍ୟ ଦେଶରେ ଏପରି ବୌଦ୍ଧାନୁଷ୍ଠାନ ହେଉଥିବାର ଦୃଷ୍ଟାନ୍ତ ଚୀନ ପରିବ୍ରାଜକମାନଙ୍କ ବିବରଣୀମାନଙ୍କରୁ ମିଳିଥାଏ । (୧୬୧) ଫାହିୟାନ୍ ୫ମ ଖ୍ରୀ ରେ ଖୋଟାନ୍‌ଠାରେ ଅନୁଷ୍ଠିତ ବୌଦ୍ଧ ତ୍ରିରନ୍ର ରଥଯାତ୍ରା ସମ୍ପର୍କରେ ବିସ୍ତୃତ ବର୍ଣ୍ଣନା ଦେଇଯାଇଛନ୍ତି । ତହିଁରେ ରଥ ଆଗରେ ରାଜା ଛେରାପହଁରା କରୁଥିବାର ଉଲ୍ଲେଖ ଅଛି । (୧୬୨) । ରାଜେନ୍ଦ୍ର ଲାଲ ମିତ୍ରଙ୍କ ମତରେ ଜଗନ୍ନାଥ ଓ ତାଙ୍କର ବିଚିତ୍ର ପର୍ବପର୍ବାଣି ବୌଦ୍ଧ-ଉତ୍ସରୁ ଉତ୍ସାରିତ । ରଥଯାତ୍ରା ବୁଦ୍ଧଦେବଙ୍କ ଜନ୍ମୋତ୍ସବ ପାଳନର ସ୍ମୃତି ମାତ୍ର । (୧୬୩) କେହି କେହି ରଥଯାତ୍ରାକୁ ବୌଦ୍ଧ ଦନ୍ତ-ଉତ୍ସବର ଏକ ସଚେତନ ଅନୁକୃତି ଓ ଜାପାନରେ ତ୍ରିରନ୍ର ରଥଯାତ୍ରାର ସମତୁଲ୍ୟ ଉତ୍ସବ ବୋଲି ଭାବିଛନ୍ତି (୧୬୪) ତ କେହି କେହି ବୁଦ୍ଧଙ୍କ ଜୀବନର ସ୍ମରଣୀୟ ଘଟଣା ପ୍ରବ୍ରଜ୍ୟାକୁ ଉତ୍ସବରୂପେ ପାଳନ କରିବା ପାଇଁ ଅନୁଷ୍ଠିତ ରଥଯାତ୍ରାର ଅନୁକୃତି ବୋଲି ଅନୁମାନ କରିଛନ୍ତି । (୧୬୫)

## ମହାପ୍ରସାଦ :

ଜଗନ୍ନାଥଙ୍କ ମହାପ୍ରସାଦର ପବିତ୍ରତା ସମ୍ପର୍କରେ ବହୁ ପ୍ରାଚୀନ ଗ୍ରନ୍ଥରେ ପର୍ଯ୍ୟାପ୍ତ ବର୍ଣ୍ଣନା ରହିଛି । ବୌଦ୍ଧଧର୍ମରେ ମହାପ୍ରସାଦ ସେବନରେ ଜାତିବର୍ଣ୍ଣର ବିଗ୍ଭର ନାହିଁ । ଏହି ଧର୍ମରେ ନିର୍ବାଣର ପୂର୍ବ ସୋପାନ ହେଉଛି 'ଏକୀଭବ' । ଜଗନ୍ନାଥ କ୍ଷେତ୍ରରେ ଏକତ୍ର ଏକୀଭବ ନେଇ ମହାପ୍ରସାଦ ସେବନ କରିବା ବିଧି ଏହି ବୌଦ୍ଧ 'ଏକୀଭବ'ର ପାରମ୍ପରିକ ପ୍ରବାହ । ଜଗନ୍ନାଥଙ୍କ ମହାପ୍ରସାଦକୁ କୁହାଯାଏ 'କୈବଲ୍ୟ' । ଜୈନଧର୍ମର 'କେବଳୀ ଭବ' ବା 'କୈବଲ୍ୟ'

ପୁରୁଷୋତ୍ତମଙ୍କ ପ୍ରସାଦ ରୂପରେ ପରିଣତ ହୋଇଛି । ଏହି 'କୈବଲ୍ୟ' ଭବ ପୁରୁଷୋତ୍ତମ (ଜଗନ୍ନାଥ ଧାମ) ଛଡ଼ା ପୃଥିବୀର ଅନ୍ୟତ୍ର ଦୁର୍ଲଭ । ଏହା ଜୈନ-ଧର୍ମର 'ଜୀବ ଓ ଅଜୀବ'ର 'ଏକୀଭବ'—ଏହାପରେ ନିର୍ବାଣ । ଏହି ନିର୍ବାଣ ଭାବ ପୁରୁଷୋତ୍ତମଙ୍କ ପ୍ରସାଦ ସେବାରେ ହିଁ ନିହିତ । (୧୬୬) ଜୈନ ଧର୍ମର ଏହି କୈବଲ୍ୟ, ଏକୀଭବ ଓ ନିର୍ବାଣ ବୌଦ୍ଧ ଧର୍ମର ଏକୀଭବ ଓ ନିର୍ବାଣ ସହିତ ସମନ୍ୱୟ । ବୈଷ୍ଣବୀୟ 'ମୁକ୍ତି' ମଧ୍ୟ ଏହି 'କୈବଲ୍ୟ' ସହିତ ସମ୍ପୃକ୍ତ । 'କୈବଲ୍ୟ' (ମହାପ୍ରସାଦ ବା ଅନ୍ନ) ମଧ୍ୟରେ ମୁକ୍ତି ରହସ୍ୟାଚ୍ଛନ୍ନ ଭାବରେ ନିହିତ ବୋଲି ଓଡ଼ିଆ କବି ଉପେନ୍ଦ୍ର ଭଞ୍ଜ ଗାଇ ଯାଇଛନ୍ତି—

> "ମୁକ୍ତି ଦେବା ଗୁପ୍ତ ହୋଇଅଛି ଯୁକ୍ତାକ୍ଷରେ
> ବୈଷ୍ଣବ ବିହୁନେ କେହୁ ଜାଣିବ ସଂସାରେ । (୧୬୭)

ଏଠାରେ ଯୁକ୍ତାକ୍ଷରଟି ହେଉଛି 'ଜଗନ୍ନାଥ' ଶବ୍ଦ ମଧ୍ୟରେ ଥିବା 'ନ୍ନ' (ଉଚ୍ଚାରଣରେ ଅନ୍ନ) । ଏହି ଅନ୍ନ ବା ମହାପ୍ରସାଦ ମଧ୍ୟରେ ହିଁ ଗୁପ୍ତ ରହିଛି ମୁକ୍ତି । ବୌଦ୍ଧ 'ମହାନିର୍ବାଣ' ତନ୍ତ୍ରରେ ଉଲ୍ଲେଖ ଅଛି ଯେ ମହାପ୍ରସାଦ ସେବନ ପରେ ହାତ ଧୋଇବା ଅବିଧେୟ । ଜଗନ୍ନାଥଙ୍କ ମହାପ୍ରସାଦ ସେବନ ପରେ ହାତ ନ ଧୋଇ ମୁଣ୍ଡରେ ପୋଛିଦେବା ବିଧି ଦୀର୍ଘ-ପ୍ରଚଳିତ । ଜଗନ୍ନାଥଙ୍କ ପୀଠ ଛଡ଼ା ଅନ୍ୟ କୌଣସି ଦେବପୀଠରେ ଆଚଣ୍ଡାଳ ବ୍ରାହ୍ମଣ ଏକତ୍ର ଏକାପାତ୍ରରେ ଅନ୍ନ-ପ୍ରସାଦ ଭୋଜନ କରିବାର ଦେଖାଯାଏ ନାହିଁ । ଜଗନ୍ନାଥଙ୍କ ଅନ୍ନପ୍ରସାଦ ଛଡ଼ା ଅନ୍ୟ କୌଣସି ଦେବତାଙ୍କର ପ୍ରସାଦକୁ ମହାପ୍ରସାଦ ବା କୈବଲ୍ୟ ଆଖ୍ୟା ଦିଆ-ଯାଏ ନାହିଁ । ତେଣୁ ଜଗନ୍ନାଥଙ୍କ ପ୍ରସାଦରେ ବୌଦ୍ଧ ପ୍ରଭାବ ପଡ଼ିଛି ବୋଲି ଅନୁମାନ କରିବା ଏକାବେଳକେ ଅବାନ୍ତର ନୁହେଁ ।

## ଓଡ଼ିଆ ସାହିତ୍ୟରେ ଜଗନ୍ନାଥଙ୍କର ବୌଦ୍ଧ ମୁଦ୍ରାଙ୍କ :

ସିଦ୍ଧାଚାର୍ଯ୍ୟ ଲୁଇପାଦ ଓଡ୍ଡିୟାନ ବା ଓଡ଼ିଶାର ଅଧିବାସୀ ବୋଲି ବହୁ ବହୁ ବିଦ୍ୱାନ୍ ମତ ଦେଇଛନ୍ତି । (୧୬୮, ୧୬୯, ୧୭୦) ତାଙ୍କର ସମୟ ସମ୍ପର୍କରେ

ମତଭେଦ ରହିଛି । କେତେବେଳେ ତାଙ୍କ ଜନ୍ମ ସମୟ ୭୬୯ ଖ୍ରୀ: (୧୭୧) ଓ କେତେବେଳେ ୯୮୦ ଖ୍ରୀ: (୧୭୨) ବୋଲି ଉଲ୍ଲେଖ ରହିଛି । ଡକ୍ଟର ବଂଶୀଧର ମହାନ୍ତି ଏହି ଲୁଇପାଦ (ଲୋହିପାଦ, ଲୋହିପା)ଙ୍କ ନାମରେ ଭଣିତ 'ଲୋହି ଗୀତା' ନାମକ ଏକ ଗ୍ରନ୍ଥର କେତେକ ପାଣ୍ଡୁଲିପି ପାଇଛନ୍ତି ଓ ତାଙ୍କର 'ଓଡ଼ିଶାରେ ବୌଦ୍ଧଧର୍ମ' ଗ୍ରନ୍ଥରେ ଏ ଗ୍ରନ୍ଥ ସମ୍ପର୍କରେ ବିଶଦ ବିବରଣ ଦେଇଛନ୍ତି । ଏହି ଗ୍ରନ୍ଥରେ ଜଗନ୍ନାଥଙ୍କର ବୌଦ୍ଧରୂପ ଧାରଣ ସମ୍ପର୍କରେ ବର୍ଣ୍ଣନା ରହିଛି—

"ବଉଦ ରୂପେ ନୀଳଗିରି ରହିଂ
ବଟ ଯହିଁ ନୀଳଗିରି ଧରଇ ।" (୧୭୩)

"କଳିଯୁଗରେ ବିଜେ ନୀଳଗିରି
ବଉଦ ରୂପେ ଶଙ୍ଖଚକ୍ରଧାରୀ ।" (୧୭୪)

ପଞ୍ଚଦଶ ଶତାବ୍ଦୀ ବେଳକୁ ଜଗନ୍ନାଥଙ୍କର ବୌଦ୍ଧ ରୂପ ଓଡ଼ିଶାର ସ୍ମୃତିରେ ଏତେ ବ୍ୟାପକ ହୋଇ ସାରିଥିଲା ଯେ ସାରଳାଦାସ ତାଙ୍କ ସାରଳା ମହାଭାରତର ଆଦିପର୍ବ, ସଭାପର୍ବ, ବନପର୍ବ, ମଧ୍ୟପର୍ବ; ବିରାଟ ପର୍ବ, ହରିବଂଶ ପର୍ବ ଇତ୍ୟାଦିରେ ଜଗନ୍ନାଥ ବୌଦ୍ଧ ରୂପରେ ନୀଳଗିରି (ପୁରୀ)ରେ ବିଜେ କରିଥିବାର ବର୍ଣ୍ଣନା ଶତାଧିକ ବାର ପ୍ରଦାନ କରିଛନ୍ତି । ଯଥା—

"ବଉଦ ରୂପେଣ ସ୍ୱାମୀ ସକଳ ଜନ ମୋହି

ପୁରୁଷୋତ୍ତମ ନଗର ମହୋଦଧି ତୀରେ
ନୀଳଗିରି ପରବତ ଅଛି ତା ସ୍ଥାନରେ
ଦେଉଳ ଭିତରେ ସିଂହାସନେ ବିଜେ ହୋଇ
ବଉଦ୍ଧ ରୂପରେ ପ୍ରଭୁ ଶଙ୍ଖଚକ୍ର ବହି

ବଉଦ ରୂପେ ପୂଜା ପାଇବେ ନୀଳ ସୁନ୍ଦର ପର୍ବତେ

କଳି ଯୁଗେ ବଉଦ କେଶବ ପ୍ରତିମା
ମୁହିଁ ହୋଇବି ନୀଳ ସୁନ୍ଦର ଗିରି ଯେ ଭରମା

*

ବଳଭଦ୍ର ସୁଭଦ୍ରା କୃଷ୍ଣ ତିନି ରୂପ
ବୁଦ୍ଧ ନାରାୟଣ ଯେହ୍ନା କରିବେକ ସ୍ୱରୂପ

*

ବଉଦ ରୂପେ ବିଜେ ଶ୍ରୀ ନୀଳ କନ୍ଦରେ
ଯେକ ମୂର୍ତ୍ତି ଚତୁର୍ଦ୍ଧା ରୂପ ଧଇଲୁ ଦାମୋଦରେ

*

ବଉଦ ରୂପେ ନୀଳ କନ୍ଦରେ ଛନ୍ତି ବସି

*

ବଉଦ୍ଧ ରୂପରେ କଳିଯୁଗେ ଅବତାର

*

କଳି ଯୁଗେ ବଉଦ ରୂପେ ନୀଳଗିରି ଯେ ପୂଜା ଘେନ୍ ଅଛି

*

ସଂସାର ଜନଙ୍କୁ ସେହୁ ତାରିବା ନିମନ୍ତେ
ବଉଦ୍ଧ ରୂପରେ ବିଜେ ଅଛି ଜଗନ୍ନାଥେ ।"

ପଞ୍ଚସଖାଙ୍କର ଧର୍ମ-ଦର୍ଶନ ବୌଦ୍ଧ ଦର୍ଶନ ଦ୍ୱାରା କେତେକ ପରିମାଣରେ ପ୍ରଭାବିତ ହୋଇଥିଲା । ଫଳରେ ପଞ୍ଚସଖାଙ୍କର ଉପାସ୍ୟ ଦେବତା ଜଗନ୍ନାଥଙ୍କ ମଧ୍ୟରେ କେବେକେବେ ବୌଦ୍ଧାୟନ ଲକ୍ଷ୍ୟ କରିବାକୁ ମିଳେ । ଜଗନ୍ନାଥ ଦାସ ମଧ୍ୟ ଜଗନ୍ନାଥଙ୍କୁ ବୁଦ୍ଧ ରୂପେ କଳ୍ପନା କରି ଲେଖିଛନ୍ତି—

"ପ୍ରବୁଦ୍ଧ ବୁଦ୍ଧ ଅବତାରେ
ଜ୍ଞାନ ବିସ୍ତାରି ଏ ସଂସାରେ

ବେଦର ଧର୍ମ ଛଡ଼ାଇବେ
ନିର୍ଗୁଣଧର୍ମ ପ୍ରଚରିବେ

*

ପୁଣି ଏମନ୍ତ ସମୟରେ
ସିଦ୍ଧାନ୍ତ ହେବ ଘରେ ଘରେ
ସକଳ ବର୍ଣ୍ଣ ଏକଠାରେ
ବସି ଭୁଞ୍ଜିବ ସୁଗତରେ ।" (୧୭୫)

ଏଠାରେ ପରୋକ୍ଷରେ ଜଗନ୍ନାଥ ଓ ତଦୀୟ ପ୍ରସାଦର ମାହାତ୍ମ୍ୟ ପ୍ରଖ୍ୟାପିତ ହୋଇଅଛି । ଦାରୁବ୍ରହ୍ମ ଅପାଣିପାଦ ହେବା ସମ୍ପର୍କରେ ଜଗନ୍ନାଥ ଦାସ ଲେଖିଛନ୍ତି–

"ଷଷ୍ଠ ଦିବସ ଅନ୍ତରେଣ
ପାଦ ଯେ ପାଣି ହେଲ କ୍ଷୀଣ
ବଉଦ ରୂପ ହେବାପାଇଁ
ପାଦ ପାଣି ମିଳିଲେ ତହିଁ ।" (୧୭୬)

ଅଚ୍ୟୁତାନନ୍ଦ ଦାସଙ୍କ କଳ୍ପନା ଅନୁଯାୟୀ କୃଷ୍ଣଙ୍କ ସଖା ସୁଦାମ ନିତ୍ୟ ରାସ-ସ୍ଥଳୀରୁ ଫେରିବା ସମୟରେ ବୁଦ୍ଧମାତା (ବୁଦ୍ଧମାତା)ଙ୍କଠାରୁ ନିରାକାର ମନ୍ତ୍ର ଦୀକ୍ଷା ଗ୍ରହଣ କରିଥିଲେ–

"ବୁଦ୍ଧମାତା ଆଦିଶକ୍ତି ସଖୀଛନ୍ତି କହି
ନିରାକାର ଭଜନେ ନିର୍ମଳ ଭକ୍ତି ପାଇ ।" (୧୭୭)

ପଞ୍ଚସଖାମାନେ ମହାଶୂନ୍ୟଙ୍କୁ ଆଦିମାତା ରୂପେ ସମ୍ମାନ ଦେଇଛନ୍ତି । (୧୭୮) ବୌଦ୍ଧ ମତରେ ମଧ୍ୟ ମହାଶୂନ୍ୟ ଆଦିମାତା, ବୁଦ୍ଧମାତା ଓ ପ୍ରଜ୍ଞା-ପାରମିତା ରୂପରେ ପ୍ରକୀର୍ତ୍ତିତା ହୋଇଛନ୍ତି । (୧୭୯) ଶୂନ୍ୟସଂହିତାରେ ଶ୍ରୀକୃଷ୍ଣ ନିଜେ ବୌଦ୍ଧ ରୂପେ ପ୍ରକାଶିତ ହେବାପାଇଁ ସୁଦାମଙ୍କୁ ପ୍ରତିଶ୍ରୁତି ଦେଇଥିବାର

ପ୍ରମାଣ ରହିଛି । ଏଇଠି ଶ୍ରୀକୃଷ୍ଣ ବ୍ରଜସୁନ୍ଦର ନନ୍ଦ-ନନ୍ଦନ ନୁହନ୍ତି, ବୌଦ୍ଧରୂପୀ ଜଗନ୍ନାଥ । ଅଚ୍ୟୁତାନନ୍ଦ 'ଶୂନ୍ୟସଂହିତା'ରେ ଜଗନ୍ନାଥଙ୍କ ପ୍ରସଙ୍ଗରେ ଲେଖିଛନ୍ତି–

"ନିଜ ବଂଶ ଘେନି ବଉଦ୍ଧ ରୂପରେ ନୀଳାଚଳେ ଅଛ ରହି
ନିଶ୍ଚଳ ଆସନେ ବସି ଯୋଗଧ୍ୟାନେ ଥକିତରେ ଥିବେ ଗ୍ରହି ।" (୧୮୦)

ମୂଢ଼ମାନଙ୍କୁ ତାରିବା ପାଇଁ ଜଗନ୍ନାଥ ବୁଦ୍ଧ ଅବତାର ଗ୍ରହଣ କରିଛନ୍ତି ବୋଲି ଅଚ୍ୟୁତାନନ୍ଦ ସୂଚନା ଦେଇଛନ୍ତି–

"ମୂଢ଼ଙ୍କ ଛଳେ ବଉଦ୍ଧ ମୂରତି ।" (୧୮୧)

ଷୋଡ଼ଶ ଶତାବ୍ଦୀର କବି ଦ୍ୱାରକା ଦାସଙ୍କ ଭାଗବତର ତ୍ରୟୋଦଶ ସ୍କନ୍ଧ ସପ୍ତମ ଅଧ୍ୟାୟରେ ବିଷ୍ଣୁଙ୍କ ନବମ ଅବତାର 'ବୁଦ୍ଧ'ଙ୍କ ସ୍ଥାନରେ 'ଜଗନ୍ନାଥ' ଅବତୀର୍ଣ୍ଣ ହୋଇଛନ୍ତି । ଚୈତନ୍ୟ ଦାସଙ୍କ ଭାଗବତରେ କୃଷ୍ଣ ଓ ବୁଦ୍ଧାବତାର ମଧ୍ୟରେ ତୁଳନା କରଯାଇ କୃଷ୍ଣାବତାରର ଅପକର୍ଷ ଓ ବୁଦ୍ଧାବତାରର ପ୍ରକର୍ଷ ପ୍ରଦର୍ଶିତ ହୋଇଅଛି । ଏ ବୁଦ୍ଧଙ୍କ ସହିତ ଜଗନ୍ନାଥ ହେଉଛନ୍ତି ସମ୍ପର୍କିତ । କବି ଦେବାନନ୍ଦ ଦାସ (୧୮୨), ପ୍ରତାପ ରାୟ (୧୮୩) ଓ ଦୀନକୃଷ୍ଣ ଦାସ (୧୮୪) ମଧ୍ୟ ଜଗନ୍ନାଥଙ୍କୁ ବୌଦ୍ଧ ରୂପଧାରୀ ବା ବୁଦ୍ଧାବତାର ଭାବରେ ବର୍ଣ୍ଣନା କରିଯାଇଅଛନ୍ତି । ମାଣବସା ପୁରାଣରେ ମଧ୍ୟ ଅଛି–

"ବୁଦ୍ଧ ଅବତାରେ ନୀଳକନ୍ଦରେ ଶ୍ରୀହରି
ଦର୍ଶନ କରିଣ ଭକ୍ତଗଣ ଯାନ୍ତି ତରି ।"

ବିପ୍ର ନୀଳାମ୍ବର ଦାସଙ୍କ 'ଦେଉଳ ତୋଳା' ଜଗନ୍ନାଥଙ୍କ ବୌଦ୍ଧ ରୂପାନ୍ତରର ଏକ ରୂପକ କହିଲେ ଭୁଲ ହେବ ନାହିଁ ।

ଡକ୍ଟର ବଂଶୀଧର ମହାନ୍ତି ପଶ୍ଚିମ ଓଡ଼ିଶାରୁ 'ଶ୍ରୀ ଜଗନ୍ନାଥ ପୁରାଣ' ବା 'ବୌଦ୍ଧ ପୁରାଣ' ନାମରେ ଏକ ବିରାଟ ଗ୍ରନ୍ଥର ପାଣ୍ଡୁଲିପି ସଂଗ୍ରହ କରିଛନ୍ତି, ଯାହାର ଲେଖକ ହେଉଛନ୍ତି ବଇଙ୍ଗିରପାଟଣାର ନକୁଳାନନ୍ଦ ନାୟକ । କବି ଏ ଗ୍ରନ୍ଥରେ

ଜଗନ୍ନାଥଙ୍କୁ ବୁଦ୍ଧାବତାର କହିବା ସଙ୍ଗେ ସଙ୍ଗେ ଜଗନ୍ନାଥ ଧର୍ମରେ ବୌଦ୍ଧ ଧର୍ମର ପ୍ରଭାବ ସୂଚିତ କରାଇଛନ୍ତି । ଜଗନ୍ନାଥଙ୍କ ମହାପ୍ରସାଦରେ ସେ ବୌଦ୍ଧ ସଂସ୍କୃତିର ସଙ୍କେତ ଦେଖିଛନ୍ତି–

"ଅଧରାମୃତ ନାମକ ଏ ଦିବ୍ୟ ପଦାର୍ଥ
ନିରିମାଇଁ ଜାଣଇଁ ସର୍ବ ଅଧରାମୃତ

*

ଏହି ସର୍ବସମକ୍ଷାନେ ଯେ ପାଳନ ହୋଇ
ଏ ଅଟେ ବଉଦ୍ଧ ଧର୍ମ ଭିନ୍ନ ନୋହେ କେହି

*

ଏ କାରଣୁ ଦାରୁବ୍ରହ୍ମ ପୁରୁଷ ଉତ୍ତମ
ସୁରକ୍ଷାକୁ ଚେ ପ୍ରକାଶି ବଉଧ ଧରମ ।" (୧୮୫)

ଯୁଗେ ଯୁଗେ ଓଡ଼ିଶାର ବହୁ କବି ସେମାନଙ୍କର ଭକ୍ତିମୂଳକ ଭଜନରେ ମଧ୍ୟ ଜଗନ୍ନାଥଙ୍କୁ ବୁଦ୍ଧ-ରୂପୀ ଭଗବାନ୍ ଭାବରେ ଭଜନ କରି ଆସିଅଛନ୍ତି ।

## ମତଭେଦ–

ଜଗନ୍ନାଥଙ୍କ ମୂଳ ସ୍ୱରୂପ ଏବେ ବି ରହସ୍ୟାଚ୍ଛନ୍ନ ଓ ଅନନ୍ତ ଭବିଷ୍ୟତ ପାଇଁ ରହସ୍ୟାବୃତ ରହିଥିବ ମଧ୍ୟ । ଏହି ରହସ୍ୟରେ ହିଁ ତାଙ୍କର ମହତ୍ତ୍ୱ ନିହିତ । ସକଳ ଅନ୍ୱୟର ଅନନ୍ୟ ସମନ୍ୱିତ ରୂପ ହିଁ ତ ଜଗନ୍ନାଥ । ବହୁ ବୌଦ୍ଧିକ ଗବେଷକ ଜଗନ୍ନାଥଙ୍କ ମଧ୍ୟରେ ବୁଦ୍ଧତ୍ୱ ଆରୋପ କଲାବେଳେ ବହୁ ବିଦଗ୍ଧ ପଣ୍ଡିତ ଓ ଗବେଷକ ଜଗନ୍ନାଥଙ୍କ ମଧ୍ୟରେ ବୌଦ୍ଧ ଧର୍ମର ନିଶ୍ଚିତ ପ୍ରଭାବକୁ ଅସ୍ୱୀକାର କରିଥାନ୍ତି । ଦ୍ୱିତୀୟ ଧାରାର ଆଲୋଚକମାନେ ହେଉଛନ୍ତି ଅଧ୍ୟାପକ ପ୍ରଭାତ ମୁଖାର୍ଜୀ (୧୮୬), ମହାମହୋପାଧ୍ୟାୟ ପଣ୍ଡିତ ସଦାଶିବ ମିଶ୍ର (୧୮୭, ୧୮୮), ପଣ୍ଡିତ ଶ୍ରୀ ସୂର୍ଯ୍ୟନାରାୟଣ ଦାଶ (୧୮୯), ଶ୍ରୀ ଗୁରୁଦାସ ସରକାର (୧୯୦), ମନମୋହନ ଗାଙ୍ଗୁଲୀ (୧୯୧), ଡକ୍ଟର ବେଣୀମାଧବ ପାଢ଼ୀ (୧୯୨), ସର୍ବସ୍ୱ ସର୍ବରମ୍ (୧୯୩) ଓ ସଚ୍ଚିଦାନନ୍ଦ ରାଉତରାୟ (୧୯୪) ପ୍ରଭୃତି ।

ତେବେ ଶାବର, ଜୈନ ଓ ବୈଷ୍ଣବ ସଂସ୍କୃତି ପରି ବୌଦ୍ଧ ସଂସ୍କୃତି ମଧ୍ୟ ଜଗନ୍ନାଥ ଚେତନା, ଜଗନ୍ନାଥ ଓ ଜଗନ୍ନାଥ ଧର୍ମର ବିବର୍ତ୍ତନରେ କୌଣସି ଗୌଣ ଭୂମିକା ଗ୍ରହଣ କରିନାହିଁ ।

## ଆଦିବାସୀ, ଜୈନ ଓ ବୌଦ୍ଧ ସଂସ୍କୃତିରେ ଶ୍ରୀ ଜଗନ୍ନାଥ ଏକ କ୍ରମବିକାଶ–

ଆଦିବାସୀ ଓ ଜୈନ ସଂସ୍କୃତି ସହିତ ଏ ଦିଗରେ ବୌଦ୍ଧ ସଂସ୍କୃତିର ସହଯୋଗ ଆଲୋଚନା କରାଯାଇ ପାରେ । ଯଦି ଆଦିବାସୀମାନଙ୍କୁ ଜଗନ୍ନାଥ ଚେତନାର ସ୍ରଷ୍ଟା ବୋଲି ଗ୍ରହଣ କରାଯାଏ, ତେବେ ବୌଦ୍ଧମାନଙ୍କୁ ତାହାର ବିକାଶକ ବୋଲି ସ୍ୱୀକାର କରିବାକୁ ହେବ । ଅଶୋକଙ୍କ ସମୟରେ କିପରି ଓଡ଼ିଶାର ଶବରମାନେ ବୌଦ୍ଧ ଧର୍ମରେ ଦୀକ୍ଷିତ ହୋଇଥିଲେ, ତାହାର ଆଲୋଚନା ପୂର୍ବରୁ କରାଯାଇଛି । ଶବରମାନେ ବୌଦ୍ଧମାନଙ୍କର ତ୍ରିରତ୍ନରୁ ତ୍ରିମୂର୍ତ୍ତି ଗଢ଼ି ଦାରୁପୂଜା କରିଥାଇ ପାରନ୍ତି । ଅଥବା ବୌଦ୍ଧମାନେ ନିଜ ତ୍ରିରତ୍ନ ସହିତ ଶବରମାନଙ୍କ ଦ୍ୱାରା ଆଦିମ କାଳରୁ ଉପାସିତ ତ୍ରି-ଦେବତା (ଦୁଇ ପୁରୁଷ ଦେବତା ଓ ଏକ ନାରୀ ଦେବତା)ର ସାମ୍ୟ ଦେଖି ଉଭୟର ସମୀକରଣ କରି ଶବରମାନଙ୍କୁ ନିଜ ଧର୍ମ ପ୍ରତି ଆକୃଷ୍ଟ କରିପାରି ଥାଆନ୍ତି । ଏହି ତ୍ରିଦେବତା ତ୍ରିରତ୍ନରେ ପରିଣତ ହୋଇ ଶେଷରେ ବ୍ରାହ୍ମଣ୍ୟ ଧର୍ମ ପ୍ରଭାବରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାରେ ପରିଣତ ହେଲେ । ଆଦିମ ଶବରମାନଙ୍କ ଦ୍ୱାରା ଗଠିତ ମୂର୍ତ୍ତି ଅପୂର୍ଣ୍ଣ, ଅତିକ୍ଷଣ ଓ କଦାକାର ହେବା ସ୍ୱାଭାବିକ । ପରବର୍ତ୍ତୀ କାଳରେ ବୌଦ୍ଧ ତ୍ରିମୂର୍ତ୍ତି ଓ ବ୍ରାହ୍ମଣ୍ୟ ଧର୍ମ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଅସମ୍ପୂର୍ଣ୍ଣ କଦାକାର ହେବାର କାରଣ ସ୍ୱରୂପ ସମାନ ପ୍ରକାରର କିମ୍ବଦନ୍ତୀ ସୃଷ୍ଟିଲାଭ କରିଛି । ତେଣୁ ଶବର, ବୌଦ୍ଧ ଓ ବ୍ରାହ୍ମଣ-ବୈଷ୍ଣବ ସଂସ୍କୃତି ମଧ୍ୟରେ ଏକ ସଂଯୋଗ ସୂତ୍ର ସନ୍ଧାନ କରିବାରେ କୌଣସି ଅସମୀଚୀନତା ନାହିଁ ।

ଯଦି ଜଗନ୍ନାଥଙ୍କୁ ଜୈନ ଦେବତା ବୋଲି ଗ୍ରହଣ କରାଯାଏ, ତଥାପି ଜଗନ୍ନାଥଙ୍କୁ ବୌଦ୍ଧ ଧର୍ମ ସହିତ ସମ୍ପର୍କିତ କରାଯିବାରେ କୌଣସି ବାଧା ସୃଷ୍ଟି

ହେଉନାହିଁ । ଭାରତୀୟ ସଂସ୍କୃତିରେ ଜୀନ ଓ ବୁଦ୍ଧ ଏକାକଥା । ଗୌତମ ଯେପରି ନିଜକୁ 'ବୁଦ୍ଧ' ବୋଲି କହୁଥିଲେ, ମହାବୀର ସେହିପରି ନିଜକୁ 'ବୁଦ୍ଧ' ବୋଲି କହୁଥିଲେ । ଶଙ୍କରାଚାର୍ଯ୍ୟ ସର୍ବଦା ବୁଦ୍ଧଙ୍କୁ 'ଜୀନ' ଆଖ୍ୟା ଦେଇଛନ୍ତି । ବଜ୍ରଯାନୀ ଇନ୍ଦ୍ରଭୂତିଙ୍କ ସମୟକୁ ଅର୍ଥାତ୍ ସପ୍ତମ-ଅଷ୍ଟମ ଶତାବ୍ଦୀ ବେଳକୁ ଜୀନ, ବୁଦ୍ଧ ଓ ଜଗନ୍ନାଥ ମଧ୍ୟରେ ସାମ୍ୟ ପ୍ରତିଷ୍ଠିତ ହୋଇ ସାରିଥିବାରୁ ସେ ଗୋଟିଏ ଶ୍ଳୋକରେ 'ଜଗନ୍ନାଥ', 'ସର୍ବଜୀନ ବରାର୍ଚ୍ଚିତ' ଓ 'ସର୍ବ ବୁଦ୍ଧମୟ' ଶବ୍ଦ ଏକ ଅର୍ଥରେ ବ୍ୟବହାର କରିଛନ୍ତି । ଯେ ଜୀନ, ସେ ବୁଦ୍ଧ, ସେ ଜଗନ୍ନାଥ । (୧୯୫)

ରଥ ସମ୍ପର୍କରେ ଆମର ପ୍ରାଚୀନ ପୁରାଣ ରାମାୟଣ, କୌଟିଲ୍ୟଙ୍କ ଅର୍ଥ-ଶାସ୍ତ୍ର, ଲଟ୍ୟାୟନ ଶ୍ରୌତ ସୂତ୍ର ଓ ହେମଚନ୍ଦ୍ର ସୂରୀଙ୍କ ପରିଶିଷ୍ଟ ନିର୍ବାଣରେ ଉଲ୍ଲେଖ ଥିବାରୁ ଜଗନ୍ନାଥଙ୍କ ରଥଯାତ୍ରା ବୌଦ୍ଧ ରଥଯାତ୍ରାର ପ୍ରଭାବର ଫଳ ଭାବିବା ଅମୂଳକ ବୋଲି ଅଧ୍ୟାପକ ପ୍ରଭାତ ମୁଖାର୍ଜୀ ମତ ଦେଇଛନ୍ତି । (୧୯୬) ତେବେ ବିଷ୍ଣୁ ବା ତାଙ୍କ ଅବତାରମାନଙ୍କର ପୂଜା ଉତ୍ସବରେ ରଥଯାତ୍ରା ଏକ ଅଙ୍ଗ ହେବାର ପ୍ରମାଣ କୌଣସିଠାରେ ମିଳୁ ନାହିଁ । କିନ୍ତୁ ବୁଦ୍ଧ ବା ବୋଧିସତ୍ତ୍ୱ-ମାନଙ୍କର ପୂଜା-ଉତ୍ସବରେ ରଥଯାତ୍ରା ଏକ ବିଶିଷ୍ଟ ଅଙ୍ଗ ଥିବାର ବହୁ ପ୍ରମାଣ ରହିଛି । ଜଗନ୍ନାଥଙ୍କ ରଥଯାତ୍ରା ମଧ୍ୟ ଅତି ପ୍ରାଚୀନ ହୋଇଥିବାର କୌଣସି ଐତିହାସିକ ପ୍ରମାଣ ନାହିଁ । ପରବର୍ତ୍ତୀ କାଳରେ ବୌଦ୍ଧ ରଥଯାତ୍ରାର ଅନୁକୃତିରେ ବୁଦ୍ଧରୂପୀ ଜଗନ୍ନାଥଙ୍କର ରଥଯାତ୍ରାର ପରମ୍ପରା ପ୍ରଚଳନ ସମ୍ଭାବନାର ଅଧିକ ନିକଟବର୍ତ୍ତୀ ।

ସମ୍ଭବତଃ ଶଙ୍କରାଚାର୍ଯ୍ୟଙ୍କ ପୁରୀ ଆଗମନ ପର୍ଯ୍ୟନ୍ତ ଜଗନ୍ନାଥ ଥିଲେ ବୌଦ୍ଧାୟିତ । ଶଙ୍କରାଚାର୍ଯ୍ୟଙ୍କ ସ୍ମାର୍ତ୍ତ ପଦ୍ଧତିରେ ସେ ହେଲେ ଯୁଗପତ୍ ଶୈବାୟିତ ଓ ବୈଷ୍ଣବାୟିତ । ଯୁଗ ଯୁଗରେ ବିଭିନ୍ନ ଧର୍ମ ପ୍ରଚାରକଗଣ ନିଜ ନିଜ ଧର୍ମର ସ୍ୱୀକୃତି, ପ୍ରଚାର ଓ ପ୍ରସାର ପାଇଁ ସର୍ବଧର୍ମର ସମନ୍ୱୟ କ୍ଷେତ୍ର ପୁରୁଷୋତ୍ତମ (ପୁରୀ) କ୍ଷେତ୍ରକୁ ଆସିଛନ୍ତି ଓ ବହୁମତର ସମନ୍ୱିତ ଆଦର୍ଶରେ ଜଗନ୍ନାଥଚେତନାର ପୁଷ୍କଳ ବିକାଶ ଘଟାଇ ଯାଇଛନ୍ତି । ବିଭିନ୍ନ ଧର୍ମର ମତବାଦ ଜଗନ୍ନାଥଙ୍କର ସାର୍ବଜନୀନ

ଉଦାର ମହିମା ଦ୍ୱାରା ଗୋଟିଏ ସୂତ୍ରରେ ଗ୍ରଥିତ ହୋଇ ଜଗନ୍ନାଥ ଧର୍ମରେ ପରିଣତ ହୋଇଛି । ଏହାରି ଭିତରେ ପ୍ରତିଫଳିତ ହୋଇଛି ବୌଦ୍ଧ, ଶୈବ, ଶାକ୍ତ, ବୈଷ୍ଣବାଦି ଧର୍ମର ସ୍ୱରୂପ । ଜଗନ୍ନାଥଙ୍କର ଏ ଅନନ୍ୟ ସମନ୍ୱୟ ପାଇଁ ବୌଦ୍ଧ-ଧର୍ମର ଅନ୍ୱୟ ଆଦୌ ନଗଣ୍ୟ ନୁହେଁ, ବରଂ ଅନନ୍ୟ ସାଧାରଣ ।

## ବ୍ରାହ୍ମଣ୍ୟ ଧର୍ମ ଓ ଶ୍ରୀ ଜଗନ୍ନାଥ–

ଜଗନ୍ନାଥଙ୍କ ମଧ୍ୟରେ ଯେତେ ଯେତେ ଧର୍ମର ସଙ୍ଗମ ଘଟିଥାଉ ପଛକେ, ଶେଷରେ ସେ ବ୍ରାହ୍ମଣ୍ୟ ଧର୍ମର ବିଶେଷତଃ ବୈଷ୍ଣବ ଧର୍ମର ଦେବତା ହୋଇ-ଯାଇଛନ୍ତି । ବ୍ରାହ୍ମଣ ତାଙ୍କୁ ନିଜସ୍ୱ କରିବା ପାଇଁ ବେଦ, ଉପନିଷଦ, ପୁରାଣ, ଦର୍ଶନଶାସ୍ତ୍ର, କାବ୍ୟ, ଇତିହାସ ପ୍ରଭୃତିରୁ କମ୍ ଉପାଦାନ ଖୋଜି ନାହିଁ । ବେଦର ପୁରୁଷ-ଚେତନା, ଗୀତାର ପୁରୁଷୋତ୍ତମ ଚେତନା, ଭାଗବତ ଧର୍ମ, କୃଷ୍ଣ-ବାସୁଦେବ ଧର୍ମ, ମାଧବ ଉପାସନା ଓ ଆଧୁନିକ ବୈଷ୍ଣବ ଧର୍ମ ସହିତ ଜଗନ୍ନାଥଙ୍କୁ ଜଡ଼ିତ କରିଦେବା ପାଇଁ ଆପାତ ବଳିଷ୍ଠ ପ୍ରମାଣର ଅଭାବ ନାହିଁ ।

## ପୁରୁଷୋତ୍ତମ ତତ୍ତ୍ୱ ଓ ଶ୍ରୀ ଜଗନ୍ନାଥ–

ଭାରତୀୟ ଦର୍ଶନ ଶାସ୍ତ୍ରରେ 'ପୁରୁଷ' ଶବ୍ଦ ପରମାତ୍ମା ଅର୍ଥରେ ବ୍ୟବହୃତ । ପୁରୁଷ ହିଁ ଅମୃତ ତତ୍ତ୍ୱର ଆଧାର । ତାହାଙ୍କୁ ସମଗ୍ର ବିଶ୍ୱର ଆଧାର ଓ ସୃଷ୍ଟି-ସ୍ଥିତି-ବିଲୟର କାରଣ ଭାବରେ ଅଭିହିତ କରଯାଇଛି । ଋଗ୍‌ବେଦରେ ସେହି ପୁରୁଷଙ୍କୁ ସହସ୍ର-ଶୀର୍ଷା, ସହସ୍ରାକ୍ଷ, ସହସ୍ରପାଦ ଭାବରେ ସ୍ତୁତି କରଯାଇଅଛି । ସେ ସ୍ୱୟଂ ଅମୃତ ଓ ଅମୃତତ୍ୱର ନିୟାମକ । ସେ ମର୍ତ୍ତ୍ୟ, ଅନ୍ତରୀକ୍ଷ ଓ ସ୍ୱର୍ଗକୁ ଆଧେୟ କରି ସମସ୍ତଙ୍କୁ ପାଳନ କରୁଛନ୍ତି । (୧୯୭) ଋଗ୍ ବେଦର "ଅଦୋ ଯଦାର ପ୍ଲବତେ ସିନ୍ଧୋଃ ପାରେ ଅପୁରୁଷମ୍/ତଦାରଭସ୍ୱ ଦୁର୍ହଣୋ ତେନ ଗଚ୍ଛ ପରସ୍ତରମ୍ ।" (୧୯୮ ମତରେ ସାୟଣାଚାର୍ଯ୍ୟ ଦାରୁକୁ ଦାରୁ ଦେବତା ପୁରୁଷୋତ୍ତମ ରୂପରେ

କଳ୍ପନା କରିଛନ୍ତି । ଅନେକ ପଣ୍ଡିତ 'ଅ-ପୁରୁଷ' ଶବ୍ଦରେ 'ପୁରୁଷୋତ୍ତମ' ଅର୍ଥ ଦ୍ୟୋତିତ ହେଉନାହିଁ ଓ ଚତୁର୍ଦ୍ଦଶ ଶତାବ୍ଦୀ ବେଳକୁ ଜଗନ୍ନାଥ ହିନ୍ଦୁମାନଙ୍କର ପରମ ଆରାଧ୍ୟ ଦେବତା ହୋଇ ଉଠିଥିବାରୁ ଦାରୁ-ଦେବତାଙ୍କର ବୈଷ୍ଣବତ୍ୱ ପ୍ରତିପାଦନ ପାଇଁ ତତ୍କାଳୀନ ସାୟଣାଚାର୍ଯ୍ୟ (୧୩୦୦ ଖ୍ରୀ:—୧୩୮୦ ଖ୍ରୀ:)ଙ୍କର ଏହା ଏକ ସଚେତନ ଚେଷ୍ଟା ବୋଲି ମତ ଦେଇଛନ୍ତି । ତେବେ 'ଅପୁରୁଷ'କୁ 'ପୁରୁଷ' କରି ତାହାଙ୍କ ମାଧ୍ୟମରେ ପରସ୍ତର (ବୈଷ୍ଣବ ଲୋକ)କୁ ଯିବାପାଇଁ ଋଷି ଦୁର୍ହଣଙ୍କୁ ଉପଦେଶ ଦେଇଛନ୍ତି ବୋଲି ଯଦି ଧରାଯାଏ, ତେବେ ସେଥିରେ ତତ୍କାଳୀନ 'ପୁରୁଷ' ବା 'ପୁରୁଷୋତ୍ତମ' ଉପାସନାର ଆଭାସ ମିଳୁଅଛି ।

ଉପନିଷଦମାନଙ୍କରେ ଯେଉଁ 'ପୁରୁଷ'ଙ୍କର ପ୍ରଶସ୍ତି ଗାନ କରାଯାଇଅଛି, ତହିଁରୁ ସୂଚିତ ହେଉଛି—ପୁରୁଷ ପୂର୍ଣ୍ଣତମ, (୧୯୯) ସେ ନିଖିଳ ବିଶ୍ୱର ସ୍ରଷ୍ଟା, ହସ୍ତ ପଦ ନ ଥାଇ ମଧ୍ୟ ସେ ସର୍ବାଧିକାରୀ, ଚକ୍ଷୁ ନ ଥାଇ ସର୍ବଦର୍ଶୀ, କର୍ଣ୍ଣ ନ ଥାଇ ସର୍ବ ଶ୍ରୋତା । ସେ ସର୍ବଜ୍ଞାତା ଓ ଅଚିନ୍ତ୍ୟ ଶକ୍ତି । (୨୦୧) ଗୀତାରେ 'ପୁରୁଷୋତ୍ତମ' ଯୋଗର ବ୍ୟାଖ୍ୟା ବେଳେ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ କହିଛନ୍ତି—''ଯସ୍ମାତ୍ କ୍ଷରମତୀତୋଽହମକ୍ଷରାଦପି ଚୋତ୍ତମଃ/ଅତୋଽସ୍ମି ଲୋକେ ବେଦେ ଚ ପ୍ରଥିତଃ ପୁରୁଷୋତ୍ତମଃ ।'' (୨୦୨) ଅର୍ଥାତ୍ ମୁଁ କ୍ଷର (ବିନାଶଶୀଳ ଶରୀର) ଓ ଅକ୍ଷର (ଅବିନାଶୀ ଚୈତନ୍ୟ)ଠାରୁ ଅତୀତ ଓ ଉତ୍କୃଷ୍ଟ । ଏହିହେତୁ ଲୋକ ସମୂହରେ ଓ ବେଦରେ ପୁରୁଷୋତ୍ତମ ନାମରେ ଖ୍ୟାତ । ଗୀତାର ସମୟ ୧ମ-୨ୟ ଶତାବ୍ଦୀ ବୋଲି ଅନୁମାନ କରାଯାଏ । ତେଣୁ ବୋଧହୁଏ, ସେତେବେଳକୁ ଲୋକସମୂହ ମଧ୍ୟରେ 'ପୁରୁଷୋତ୍ତମ' ଉପାସନା ପ୍ରଚଳିତ ହୋଇ ସାରିଲାଣି । ଯୋଗଦର୍ଶନ ଶାସ୍ତ୍ରରେ ପୁରୁଷ ଓ ପ୍ରକୃତିର ନିୟାମକ ଭାବରେ ଜଣେ ପ୍ରଧାନ ପୁରୁଷଙ୍କର କଳ୍ପନା କରାଯାଇଛି ଓ ତାଙ୍କୁ 'ପୁରୁଷୋତ୍ତମ' ଭାବରେ ଅଭିହିତ କରାଯାଇଛି । ଏହି ତଥ୍ୟକୁ ଭିତ୍ତି କରି ପଣ୍ଡିତ ନୀଳକଣ୍ଠ ଦାସ 'ପୁରୁଷୋତ୍ତମ' ଉପାସନାର ଉନ୍ମେଷ ଖ୍ରୀଷ୍ଟପୂର୍ବ କାଳରେ ଘଟି ଯାଇଛି ବୋଲି ଅନୁମାନ କରିଛନ୍ତି । (୨୦୩)

ତେବେ ବେଦ ଓ ଉପନିଷଦମାନଙ୍କରେ ଉଲ୍ଲିଖିତ ଏହି 'ପୁରୁଷ' ବା 'ପୁରୁଷୋତ୍ତମ' ଶବ୍ଦକୁ ଭିତ୍ତିକରି ଆମେ ଓଡ଼ିଶାର ପୁରୁଷୋତ୍ତମ କ୍ଷେତ୍ରର ପୁରୁ-

ଷୋତ୍ତମ ଶ୍ରୀ ଜଗନ୍ନାଥଙ୍କର ଉପାସନା ଓ ପ୍ରତିଷ୍ଠା ପ୍ରମାଣ କରି ପାରିବା ନାହିଁ । ସର୍ବ ପ୍ରଥମେ ୬ଷ୍ଠ-୭ମ ଶତାବ୍ଦୀରେ ରଚିତ ବାର୍ହସ୍ପତ୍ୟ ସୂତ୍ରରେ ଭାରତବର୍ଷର ବହୁ ପବିତ୍ର ବୈଷ୍ଣବ କ୍ଷେତ୍ର ମଧ୍ୟରେ ପୁରୁଷୋତ୍ତମ କ୍ଷେତ୍ରର ଉଲ୍ଲେଖ ମିଳେ । (୨୦୪) ୭ମ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଲିଖିତ କୈଲନ୍ ତାମ୍ରଲେଖରୁ ଜଣାଯାଏ ସମତଟର ରଜା ପରମ ବୈଷ୍ଣବ ଶ୍ରୀ ଧାରଣ ରାତ 'ପୁରୁଷୋତ୍ତମ' ଦେବତାଙ୍କୁ ସୃଷ୍ଟି-ସ୍ଥିତି-ପ୍ରଳୟ-କର୍ତ୍ତା ଭାବରେ ସ୍ତୁତି କରିଛନ୍ତି । ଏହି ସମୟରେ ପୁରୁଷୋତ୍ତମ ଭାବରେ ବିଷ୍ଣୁଙ୍କର ପୂଜା କେବଳ ଓଡ଼ିଶାରେ ପ୍ରଚଳିତ ଥିବାରୁ ଏ ପୁରୁଷୋତ୍ତମ ଦେବତା ପୁରୀର ଜଗନ୍ନାଥ ବୋଲି ଦିନେଶ ଚନ୍ଦ୍ର ସରକାର ମତ ଦେଇଛନ୍ତି । (୨୦୫) ୮ମ ଶତାବ୍ଦୀରେ ଭୌମ ବଂଶୀୟ ରଜା ଶୁଭକର ଦେବ (୧ମ)ଙ୍କର ନେଉଳପୁର ତାମ୍ର ଲେଖରେ ୪ ଥର 'ପୁରୁଷୋତ୍ତମ' ୩ ଥର 'ବଳଭଦ୍ର' ଓ ଥରେ 'ହଳଧର' ଶବ୍ଦ ଦେଖିବାକୁ ମିଳେ । ଏଗୁଡ଼ିକ ଦାତାମାନଙ୍କର ନାମ ତାଲିକାର ଅନ୍ତର୍ଭୁକ୍ତ । ଏହି ସବୁ ଶବ୍ଦର ଉଲ୍ଲେଖରୁ ଡକ୍‌ଟର କାହ୍ନୁଚରଣ ମିଶ୍ର ଅନୁମାନ କରନ୍ତି, ତତ୍କାଳରେ ଏ ଅଞ୍ଚଳରେ ପୁରୁଷୋତ୍ତମ ଓ ବଳଭଦ୍ର ଉପାସ୍ୟ ଦେବତା ଥିଲେ । ତେଣୁ ଲୋକମାନେ ପୁତ୍ରମାନଙ୍କର ନାମ ପୁରୁଷୋତ୍ତମ, ବଳଭଦ୍ର, ହଳଧର ପ୍ରଭୃତି ଦେବାକୁ ଆଗ୍ରହୀ ହେଉଥିଲେ ଏବଂ ଏହି ସମୟକୁ ସମୁଦ୍ର କୂଳର ପବିତ୍ର ପୀଠରେ ବଳଭଦ୍ର-ଜଗନ୍ନାଥ ମଧ୍ୟ ପ୍ରତିଷ୍ଠିତ ହୋଇଥିବେ । (୨୦୬) ଇନ୍ଦ୍ରଭୂତି (୮ମ ଶତାବ୍ଦୀ)ଙ୍କର ଜ୍ଞାନସିଦ୍ଧି ଗ୍ରନ୍ଥରେ 'ପ୍ରଣିପତ୍ୟ ଜଗନ୍ନାଥଂ ସର୍ବଜିନ ବରାର୍ଚ୍ଚିତମ୍ । ସର୍ବବୁଦ୍ଧମୟଂ ସିଦ୍ଧି ବ୍ୟାପିନଂ ଗଗନୋପମମ॥''–ସ୍ତୁତି ଭିତରେ ଜଗନ୍ନାଥଙ୍କୁ ବୁଦ୍ଧରୂପୀ କୁହାଯାଇଛି କି ଜଗନ୍ନାଥ' ଶବ୍ଦ ବୁଦ୍ଧଦେବଙ୍କର ବିଶେଷଣ, ଏପର୍ଯ୍ୟନ୍ତ ବିବଦମାନ ହୋଇ ରହିଥିଲେ ହେଁ ଲେଖକ ଉତ୍କଳୀୟ ଥିବାରୁ ଏଠାରେ ଉତ୍କଳର ଦେବତା ଜଗନ୍ନାଥଙ୍କୁ ଲକ୍ଷ୍ୟ କରିଥିବାର ସମ୍ଭାବନା ବେଶୀ । 'ସିଦ୍ଧି ବ୍ୟାପିନଂ' 'ଗଗନୋପମମ' ପଦମାନଙ୍କରେ ଜଗନ୍ନାଥଙ୍କର 'ପୁରୁଷୋତ୍ତମତ୍ୱ' ସୂଚିତ ହେଉଅଛି । ମୁରାରି ମିଶ୍ରଙ୍କର ସଂସ୍କୃତ ନାଟକ 'ଅନର୍ଘରାଘବ' (୯ମ ଶତାବ୍ଦୀ)ର ପ୍ରସ୍ତାବନାରେ ପୁରୁଷୋତ୍ତମ ଜଗନ୍ନାଥଙ୍କ ପ୍ରତି ଭକ୍ତି ଅର୍ପଣ କରାଯାଇଛି–''ଅଳମତି ବିସ୍ତରେଣ, ଭୋ ଭୋ ଲବଣୋଦବେଳା-ବନାଳି-ତମାଳତରୁ କନ୍ଦଳସ୍ୟ ତ୍ରିଭୁବନ ମୌଳିମଣ୍ଡନ ମହାନୀଳମଣେଃ କମଳା-

କୃତ କଳସ ପତ୍ରାଙ୍କ ରସ୍ୟ ଭଗବତଃ ପୁରୁଷୋତ୍ତମସ୍ୟ ଯାତ୍ରାୟାମୁପସ୍ଥାନୀୟାଃ ସଭାସଦଃ ।" (୨୦୭) ଏହି ନାଟକ ରଥଯାତ୍ରାବେଳେ ଜଗନ୍ନାଥଙ୍କୁ ଉତ୍ସର୍ଗୀକୃତ ହୋଇଥିଲା ଓ ସର୍ବ ପ୍ରଥମେ ପୁରୁଷୋତ୍ତମ କ୍ଷେତ୍ରରେ ଅଭିନୀତ ହୋଇଥିଲା । ଏଥିରୁ ମନେହୁଏ ଜଗନ୍ନାଥଙ୍କ ରଥଯାତ୍ରା ଏହି ସମୟକୁ ପ୍ରସିଦ୍ଧି ଲାଭ କରି ସାରିଥିଲା । ମଧ୍ୟପ୍ରଦେଶର ସତ୍ନା ଜିଲାନ୍ତର୍ଗତ ମୈହାର ଗ୍ରାମରୁ ପ୍ରାପ୍ତ ୧୦ମ ଶତାବ୍ଦୀର ଏକ ତାମ୍ରଲେଖରୁ ଜଣାଯାଏ, ଓଡ୍ରେଶ ପୁରୁଷୋତ୍ତମ ସେତେବେଳକୁ ମଧ୍ୟ-ଭାରତରେ ମଧ୍ୟ ଆରାଧ୍ୟ ଦେବତା ଭାବରେ ଆକର୍ଷଣୀୟ ହୋଇ ଉଠିଥିଲେ—"ସମୁଦ୍ର ମଜ୍ଜନାନ୍ତୁ ନମୋଡ୍ରେଶଂ ପୁରୁଷୋତ୍ତମମ୍ ଦୃଷ୍ଟା ତଦନ୍ତିକେ ଭୂୟଃ ପ୍ରତ୍ୟଗଚ୍ଛତ୍ୟୟଂ ଶିଶୁଃ ।" (୨୦୮) ଗାଙ୍ଗେୟ ରାଜା ରାଜରାଜ ୧ମ (୧୦୨୨-୨୩ ଖ୍ରୀ:)ଙ୍କ କାର୍ଲିଡିଣ୍ଡୀ ଦାନପତ୍ର (୧୦୩୧ ଖ୍ରୀ:)ରେ ଶ୍ରୀଧାମ ଓ ଶ୍ରୀ ପୁରୁଷୋତ୍ତମ ଜଗନ୍ନାଥଙ୍କର ପ୍ରଶସ୍ତି ଗାନ କରାଯାଇଛି "ଶ୍ରୀ—ଧାମ୍ନଃ ପୁରୁଷୋତ୍ତମସ୍ୟ ମହତୋ ନାରାୟଣସ୍ୟ ପ୍ରଭୋର୍ନାଭିପଙ୍କେରୁହୋଦ୍‌ଭବ—ଜଗତଃ ସ୍ରଷ୍ଟା ସ୍ୱୟମ୍ଭୂଃ ସୁତଃ ।" (୨୦୯) ନାଗବଂଶୀୟ ଗୋପାଳଦେବଙ୍କ ପୂଜାରୀପଲ୍ଲୀ ଅଭିଲେଖ (୧୧ଶ ଶତାବ୍ଦୀ)ରେ ମଧ୍ୟ ପୁରୁଷୋତ୍ତମ କ୍ଷେତ୍ରର ବର୍ଣ୍ଣନା ରହିଛି । (୨୧୦) କୃଷ୍ଣ ମିଶ୍ରଙ୍କର ସଂସ୍କୃତ ନାଟକ 'ପ୍ରବୋଧ ଚନ୍ଦ୍ରୋଦୟ'ରେ ପୁରୁଷୋତ୍ତମଙ୍କ ଦେବାୟତନର ବର୍ଣ୍ଣନା ରହିଛି—"ଅହମୁତ୍କଳ ଦେଶାଦାଗତୋଽସ୍ମି । ଅସ୍ତିତତ୍ର ସାଗରତୀର ସନ୍ନିବେଶେ ପୁରୁଷୋତ୍ତମ ଶବ୍ଦିତଂ ଦେବାୟତନମ୍ ।" ଶତାନନ୍ଦଙ୍କ 'ଭାସ୍ୱତୀ'ରୁ ଜଣାଯାଏ, ସେ ପୁରୁଷୋତ୍ତମ ନିବାସୀ ଓ ଏହି କ୍ଷେତ୍ରରେ ଗ୍ରନ୍ଥଟି ୧୧୦୦ ଖ୍ରୀଷ୍ଟାବ୍ଦରେ ସମ୍ପୂର୍ଣ୍ଣ କରିଥିଲେ । ଏହାଛଡ଼ା ରୁଦ୍ରଯାମଳ, ମତ୍ସ୍ୟପୁରାଣ, କାଳିକାପୁରାଣ ଓ ଚଣ୍ଡଯାମଳ ପ୍ରଭୃତି ଗ୍ରନ୍ଥରେ ପୁରୁଷୋତ୍ତମ ଦେବତା ଓ ଧାମର ବର୍ଣ୍ଣନା ରହିଛି ।

•

ବେଦ, ଉପନିଷଦ ଓ ଗୀତା ବର୍ଣ୍ଣିତ ପୁରୁଷୋତ୍ତମଙ୍କୁ ପୁରୀର ଜଗନ୍ନାଥ ରୂପେ ଗ୍ରହଣ କରିବାରେ କୌଣସି ଯାଥାର୍ଥ୍ୟ ନ ଥାଇ ପାରେ, ତେବେ ସେହି ପୁରୁଷୋତ୍ତମ-ଚେତନାର ପ୍ରେରଣାରେ ଅନ୍ତତଃ ପଞ୍ଚମ ଶତାବ୍ଦୀବେଳକୁ ପୁରୀ ବା ପୁରୁଷୋତ୍ତମ କ୍ଷେତ୍ରରେ ଏକ ପୁରୁଷୋତ୍ତମ ସଂସ୍କୃତି ଗଢ଼ି ଉଠିଥିଲା ଓ

ତାହାର ଉପାସ୍ୟ ଦେବତା ଥିଲେ ପୁରୁଷୋତ୍ତମ ଜଗନ୍ନାଥ)—ଏ କଥା କଳ୍ପନା କରିବା ଇତିହାସ-ସିଦ୍ଧ । ପୁରୀର ଜଗନ୍ନାଥ ସଂସ୍କୃତି ହେଉଛି ଏହି ପୁରୁଷୋତ୍ତମ ସଂସ୍କୃତିର ବିକଶିତ ରୂପ ଓ ଜଗନ୍ନାଥ ହେଉଛନ୍ତି ଏହି ଉପାସ୍ୟ ଦେବତା ପୁରୁଷୋତ୍ତମଙ୍କର ଏକ ବିକଶିତ ରୂପ । ହୁଏତ ଏହି ସଂସ୍କୃତି ପୁରୀକୁ କେନ୍ଦ୍ରକରି ଗଢ଼ି ଉଠିଥାଇ ପାରେ, ଯାହା ଫଳରେ 'ପୁରୀର' ନାମ ପୁରୁଷୋତ୍ତମ ଓ ଦେବତାଙ୍କ ନାମ ପୁରୁଷୋତ୍ତମ ହୋଇଅଛି ।

୧୧୦୪ ଖ୍ରୀଷ୍ଟାବ୍ଦ ବେଳକୁ ପୁରୁଷୋତ୍ତମ (ଜଗନ୍ନାଥ)ଙ୍କ ସଙ୍ଗରେ ଲକ୍ଷ୍ମୀ ସମ୍ପୃକ୍ତ ହେଲେଣି ବୋଲି ନାଗପୁର ଶିଳାଲେଖରୁ ଜଣାଯାଇ ଥାଏ । (୨୧୧) ୧୧୩୭ ଖ୍ରୀଷ୍ଟାବ୍ଦରେ ମନୋରଥ ନାମକ ଜଣେ ବ୍ୟକ୍ତି ପୁରୁଷୋତ୍ତମ କ୍ଷେତ୍ରକୁ ତୀର୍ଥଯାତ୍ରାରେ ଆସିଥିବାର ଐତିହାସିକ ପ୍ରମାଣ ଗୋବିନ୍ଦପୁର ଶିଳାଲେଖରୁ ମିଳିଥାଏ । (୨୧୨) ୧୧୪୨ ଖ୍ରୀଷ୍ଟାବ୍ଦରେ ଚୋଡ଼ଗଙ୍ଗଦେବଙ୍କ ଦ୍ୱାରା ପୁରୀ ମନ୍ଦିର ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇଥିଲା ଓ ଏଥିରେ ଜଗନ୍ନାଥଙ୍କୁ ପ୍ରତିଷ୍ଠା କରଯାଇଥିଲା । ଏହି ଜଗନ୍ନାଥଙ୍କୁ ପୁରୁଷୋତ୍ତମ ଭାବରେ ସ୍ତୁତି କରଯାଇଛି । ବେଦ ଓ ଗୀତାର ପୁରୁଷୋତ୍ତମଙ୍କ ସହିତ ଏହି ପୁରୁଷୋତ୍ତମଙ୍କର ଯଥେଷ୍ଟ ସାମ୍ୟ ରହିଛି—"ସେ ପୁରୁଷୋତ୍ତମ ଯାହାଙ୍କର ତ୍ରିପାଦ ହେଉଛି ତ୍ରିଭୁବନ, ନାଭିମଣ୍ଡଳ ହେଉଛି ଅନ୍ତରୀକ୍ଷ, କର୍ଣ୍ଣ ହେଉଛି ସର୍ବଦିଗ, ନୟନଯୁଗଳ ହେଉଛି ସୂର୍ଯ୍ୟ-ଚନ୍ଦ୍ର ଓ ମସ୍ତକ ହେଉଛି ସ୍ୱର୍ଗ" (୨୧୩, ୨୧୪) "ପଦୌ ଯସ୍ୟ ଧରନ୍ତରୀକ୍ଷମଖିଳଂ ନାଭିସ୍ତୁ ସର୍ବାଦିଶଃ । ଶ୍ରୋତେ ନେତ୍ରଯୁଗଂ ରବୀନ୍ଦୁଯୁଗଳଂ ମୂର୍ଦ୍ଧାପି ଚ ଦ୍ୟୌରସୌ ।" ଏଥିରେ ଲକ୍ଷ୍ମୀ ମନ୍ଦିରର ବର୍ଣ୍ଣନା ମଧ୍ୟ ରହିଛି । ୧୩ ଶତାବ୍ଦୀରେ ରଚିତ ସ୍କନ୍ଦ-ପୁରାଣ (ଉତ୍କଳଖଣ୍ଡ)ର ବହୁ ସ୍ଥଳରେ ପୁରୁଷୋତ୍ତମ ଧାମ ଓ ପୁରୁଷୋତ୍ତମଙ୍କର ମାହାତ୍ମ୍ୟ ବର୍ଣ୍ଣିତ ହୋଇଅଛି । ପଞ୍ଚମ ଶତାବ୍ଦୀବେଳକୁ ଯେଉଁ ପୁରୁଷୋତ୍ତମ ଉପାସନାର ଉନ୍ମେଷ ହୋଇଥିଲା ତ୍ରୟୋଦଶ ଶତାବ୍ଦୀବେଳକୁ ତାହାର ଏକ ପ୍ରତିଷ୍ଠାୟିତ ରୂପାୟନ ଦେଖିବାକୁ ମିଳିଥାଏ ।

## କୃଷ୍ଣ ବାସୁଦେବ ଓ ଜଗନ୍ନାଥ-

ବିଷ୍ଣୁ ବୈଦିକ ଦେବତା ହେଲେହେଁ ମହାଭାରତ ରଚନାକାଳ ପର୍ଯ୍ୟନ୍ତ 'ବୈଷ୍ଣବ' ନାମରେ କୌଣସି ଧର୍ମ ବା ସମ୍ପ୍ରଦାୟ ସୃଷ୍ଟି ଲାଭ କରିଥିବାର ସୂଚନା ମିଳେ ନାହିଁ । ମହାଭାରତରେ ମଧ୍ୟ 'ବୈଷ୍ଣବ' ଶବ୍ଦର ଉଲ୍ଲେଖ ନାହିଁ । ତେବେ ଭାଗବତ, ସାତ୍ୱତ ଐକାନ୍ତିକ ପଞ୍ଚରାତ୍ର ଓ ନାରାୟଣୀୟ ପ୍ରଭୃତି ବୈଷ୍ଣବ ସମ୍ପ୍ରଦାୟଗୁଡ଼ିକର ନାମୋଲ୍ଲେଖ ଦେଖିବାକୁ ମିଳେ । (୨୧୫) ତେବେ ଏହାର ଐତିହାସିକ ଭିତ୍ତି ନାହିଁ । ଏ ଅଂଶ ପରବର୍ତ୍ତୀ ପ୍ରକ୍ଷେପ ହେବାର ଆଶଙ୍କା ମଧ୍ୟ ରହିଛି । କିନ୍ତୁ ଆମେ ଐତିହାସିକ ଭିତ୍ତିରେ 'ବାସୁଦେବକ' ନାମକ ବାସୁଦେବ (ବିଷ୍ଣୁ) ଭକ୍ତ ସମ୍ପ୍ରଦାୟ ଖ୍ରୀ:ପୂ: ୪ର୍ଥ-୫ମ ଶତାବ୍ଦୀରେ ଥିବାର ପ୍ରମାଣ ପାଣିନିଙ୍କର ଅଷ୍ଟାଧ୍ୟାୟୀରେ ପାଉଥାଉ । (୨୧୬)

ବିଷ୍ଣୁଙ୍କର ଅବତାର ମଧ୍ୟରୁ ରାମ-ଦାଶରଥି ଓ କୃଷ୍ଣ-ବଳରାମ ହେଉଛନ୍ତି ଦୁଇଟି ପୂର୍ଣ୍ଣାବତାର । କୃଷ୍ଣ-ବାସୁଦେବଙ୍କୁ କେନ୍ଦ୍ର କରି ଖ୍ରୀ: ପୂ: ୫ମ ଶତାବ୍ଦୀରୁ ଭାଗବତ ଧର୍ମ ଗଢ଼ି ଉଠିଥିବାର ସମ୍ଭାବନା ପାଣିନିଙ୍କର ଅଷ୍ଟାଧ୍ୟାୟୀରୁ ପ୍ରମାଣିତ ହେଉଅଛି । ସର୍ବପ୍ରଥମେ ତୈତ୍ତିରୀୟ ଆରଣ୍ୟକରେ ବାସୁଦେବ ନାମର ଉଲ୍ଲେଖ ମିଳେ—"ନାରାୟଣାୟ ବିଦମହେ, ବାସୁଦେବାୟ ଧୀମହି, ତନ୍ନୋ ବିଷ୍ଣୁଃ ପ୍ରଚୋଦୟାତ୍ ।" (୨୧୭) ଏଠାରେ 'ବାସୁଦେବ' ବିଷ୍ଣୁଙ୍କର ଏକ ନାମ ।

ବୌଦ୍ଧ ଦଶରଥ ଜାତକରେ ରାମଙ୍କ ଗଳ୍ପ ପରି ଘଟଜାତକ (୨୧୮)ରେ ବାସୁଦେବଙ୍କ ସମ୍ପର୍କରେ ଏକ ଗଳ୍ପ ରହିଛି । ଏଥିରେ ବାସୁଦେବଙ୍କୁ ଉତ୍ତର ମଥୁରାର ଏକ ରାଜବଂଶର ସନ୍ତାନ ଭାବରେ ବର୍ଣ୍ଣନା କରାଯାଇଛି । ରାଜବଂଶର ନାମୋଲ୍ଲେଖ ନ ଥିଲେ ହେଁ ଏହା 'ବୃଷ୍ଣି' ବଂଶ ବୋଲି ଅନୁମିତ ହେଉଅଛି । (୨୧୯) ଖ୍ରୀ: ପୂ: ତୃତୀୟ ଶତାବ୍ଦୀର ଘସୁଣ୍ଡି ଶିଳାଲେଖରେ ଭାଗବତ, ସଙ୍କର୍ଷଣ ଓ ବାସୁଦେବଙ୍କ ପାଇଁ ଏକ ପୂଜାବେଦୀ ନିର୍ମିତ ହୋଇଥିବାର ସୂଚନା ମିଳେ । (୨୨୦) ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତକର ବେଶ୍ନଗର ଶିଳାଲେଖରୁ ଜଣାଯାଏ ଯେ

ପ୍ରଭୁ ବାସୁଦେବଙ୍କ ଉପାସନା ମନ୍ଦିର ଆଗରେ ଗ୍ରୀକ୍ ରାଜଦୂତ ହେଲିଓଡୋର ଗ୍ରୀକ୍ ରାଜା ବାସୁଦେବ ଭକ୍ତ ଆଣ୍ଟିଆଲ୍‌କୀଦାସଙ୍କ ନିର୍ଦ୍ଦେଶରେ ଏକ ଗରୁଡ଼ଧ୍ୱଜ ନିର୍ମାଣ କରିଥିଲେ । (୨୨୧) ଖ୍ରୀ: ପୂ: ୧ମ ଶତାବ୍ଦୀର ନାନାଘାଟ ଶିଳାଲେଖର ସଙ୍କର୍ଷଣ ଓ ବାସୁଦେବଙ୍କର ପ୍ରଶସ୍ତି ଗାନ କରଯାଇଅଛି । ଗୀତା (ଖ୍ରୀଷ୍ଟୀୟ ୨ୟ ଶତକ)ରେ ଶ୍ରୀକୃଷ୍ଣ ନିଜକୁ ବାସୁଦେବ ଭବରେ ପରିଚିତ କରଇଛନ୍ତି । ସେ ବୃଷ୍ଣି-ବଂଶଜ । (୨୨୨) କୌଟିଲ୍ୟଙ୍କର ଅର୍ଥଶାସ୍ତ୍ର, ତୈତ୍ତିରୀୟ ସଂହିତା (୨୨୩, ତୈତ୍ତିରୀୟ ବ୍ରାହ୍ମଣ (୨୨୪), ଶତପଥ ବ୍ରାହ୍ମଣ (୨୨୫) ଓ ଜୈମିନୀୟ ଉପନିଷଦ୍ ବ୍ରାହ୍ମଣ (୨୨୬) ପ୍ରଭୃତିରେ ବାସୁଦେବଙ୍କ ସମ୍ପର୍କରେ ସୂଚନା ଅଛି ।

ପଦ୍ମତନ୍ତ୍ରରେ ଦୁଇଜଣ ବାସୁଦେବଙ୍କର ପରିଚୟ ମିଳେ । ଜଣେ ସାତ୍ୱତ ଧର୍ମର ପ୍ରବର୍ତ୍ତକ ଏବଂ ଆଉ ଜଣେ ସଙ୍କର୍ଷଣଙ୍କର ଭାଇ ଭଗବତ ଧର୍ମର ପ୍ରବର୍ତ୍ତକ କୃଷ୍ଣ-ବାସୁଦେବ । ଭଣ୍ଡାରକରଙ୍କ ମତରେ ବାସୁଦେବ ଓ କୃଷ୍ଣ ଦୁଇଟି ଭିନ୍ନ ନାମ । ଜଣେ ଯାଦବ ବା ବୃଷ୍ଣି ବା ସାତ୍ୱତ ବଂଶର ବାସୁଦେବ, ଆଉ ଜଣେ ପୌରାଣିକ ଦେବତା ବସୁଦେବ-ପୁତ୍ର କୃଷ୍ଣ-ବାସୁଦେବ । କିନ୍ତୁ କିଥ ଦୁହିଁଙ୍କୁ ଅଭିନ୍ନ ମନେ କରନ୍ତି । (୨୨୭) ମହାଭାରତରେ ଲେଖା ଅଛି—ସାତ୍ୱତ ବା ଭଗବତ ଧର୍ମ କୃଷ୍ଣ-ବାସୁଦେବଙ୍କ ଦ୍ୱାରା ପ୍ରବର୍ତ୍ତିତ ହୋଇଥିଲା । (୨୨୮)

ପ୍ରକୃତରେ କୃଷ୍ଣ ବାସୁଦେବ ହେଉଛନ୍ତି ଏକ ଐତିହାସିକ ଚରିତ୍ର । କିନ୍ତୁ ତାଙ୍କର ଅସାଧାରଣ ବୀରତ୍ୱ, ବିଦ୍‌ବତ୍ତା ଓ ତତ୍ତ୍ୱଜ୍ଞାନ ତାଙ୍କୁ ଦେବତା ସ୍ତରକୁ ଉତ୍ତୀର୍ଣ୍ଣ କରାଇଦେଇଛି । ଫଳରେ ତାଙ୍କ ପାଇଁ ଗଢ଼ି ଉଠିଛି ଅସଂଖ୍ୟ ଅଦ୍ଭୁତ କପୋଳ-କଳ୍ପିତ କାହାଣୀ । ତାଙ୍କ ଭିତରେ ବିଷ୍ଣୁ, ସୂର୍ଯ୍ୟ ପ୍ରଭୃତି ଦେବତାଙ୍କର ଅଲୌକିକ ଗୁଣ ସବୁ ନ୍ୟାସିତ କରିଦିଆଯାଇଛି । ମହାଭାରତରେ ମଧ୍ୟ ବସୁଦେବପୁତ୍ର ଭବରେ ପରିଚିତ ହୋଇଥିଲେ ହେଁ ବହୁ ସ୍ଥାନରେ ଅଲୌକିକ ଗୁଣରେ ସମନ୍ୱିତ । ସେ ସକଳ ପ୍ରାଣୀର ମୂଳାଧାର । ସକଳ ବିଶ୍ୱକୁ ସୂର୍ଯ୍ୟ ରୂପରେ କିରଣ ଜାଲରେ ଛାଇ ଦେଉଥିବାରୁ ନାମ ତାଙ୍କର ବାସୁଦେବ । (୨୨୯)

ସେ ଦେବତାମାନଙ୍କର ଆଶ୍ରୟ ସ୍ଥଳ । ମାୟା ଜାଲରେ ପ୍ରାଣୀମାନଙ୍କୁ ଆବୋରି ହୋଇଥିବାରୁ ସେ ବାସୁଦେବ । (୨୩୦) ଖ୍ରୀଷ୍ଟପୂର୍ବ ତୃତୀୟ ଶତକବେଳକୁ ବାସୁଦେବ ଏକ ଜନପ୍ରିୟ ଦେବତା ଭାବରେ ପ୍ରାଧାନ୍ୟ ଲାଭ କରିସାରିଥିଲେ । ଖ୍ରୀ: ପୂ: ଦ୍ୱିତୀୟ ଶତକ ବେଳକୁ ସେ ଦେବଦେବ ଉପାଧିରେ ଭୂଷିତ ହେଲେଣି । (୨୩୧) ତେଣୁ ଅନ୍ୟତମ ପ୍ରାଚୀନ ଉପନିଷଦ ଛାନ୍ଦୋଗ୍ୟ ଉପନିଷଦରେ ଯେଉଁ କୃଷ୍ଣ-ବାସୁଦେବ ଋଷି ଘୋର ଅଙ୍ଗୀରସଙ୍କ ଶିଷ୍ୟ ଭାବରେ ମାନବିକ ଏବଂ ଐତିହାସିକ ଚରିତ୍ର-ସମ୍ପନ୍ନ ଭଗବତ୍ ଗୀତାରେ ସେ ବିଶ୍ୱରୂପ ପ୍ରକାଶକ 'ଏକୋଽହଂ' ଅଦ୍ୱିତୀୟ ଦେବତା । ଯୁଦ୍ଧରେ ଜୟଲାଭ କରି ପୁରୁ ରଜା ଯେଉଁ 'ହେରକ୍ଲସ୍' ମୂର୍ତ୍ତିକୁ ଆଣି ବିତସ୍ତା ନଦୀ କୂଳରେ ପ୍ରତିଷ୍ଠା କରିଥିଲେ, ତାହା 'କୃଷ୍ଣ ବାସୁଦେବ' ମୂର୍ତ୍ତି ବୋଲି ଭଣ୍ଡାରକରଙ୍କର ମତ । (୨୩୨) ଟଲେମି ବିତସ୍ତା ନଦୀ ଅଞ୍ଚଳର ଲୋକମନାଙ୍କୁ ବାସୁଦେବ-ଉପାସକ ଭାବରେ ବର୍ଣ୍ଣନା କରିଛନ୍ତି । (୨୩୩) ଦିନେଶଚନ୍ଦ୍ର ସରକାରଙ୍କ ମତରେ ଖ୍ରୀ: ପୂ: ଦ୍ୱିତୀୟ ଶତକରେ ସମଗ୍ର ଭାରତବର୍ଷରେ ବାସୁଦେବ ଉପାସନାର ପ୍ରଚଳନ ଥିଲା । (୨୩୪)

ଓଡ଼ିଶାର ପ୍ରାଚୀ ଉପତ୍ୟକାରେ ବୈଷ୍ଣବଧର୍ମ ବାସୁଦେବ ଉପାସନା ରୂପରେହିଁ ପ୍ରଚଳିତ ଥିଲା । ବାସୁଦେବଙ୍କର ଚିହ୍ନ ହେଉଛି ଶଙ୍ଖ, ଚକ୍ର, ଗଦା, ପଦ୍ମ । ଶଙ୍ଖନିଧି (ସମ୍ପଦ) ଓ ସମୃଦ୍ଧିର (୨୩୫), ଚକ୍ର ବିଶ୍ୱଭାବର, ଗଦା ଶକ୍ତିର ଓ ପଦ୍ମ ପବିତ୍ରତାର ପ୍ରତୀକ । ମଙ୍ଗଳମୟ ବାସୁଦେବଙ୍କ ମୂର୍ତ୍ତିରେ ଅଭୟା ଓ ବରଦା ମୁଦ୍ରା ଲକ୍ଷ୍ୟ କରଯାଏ । ପ୍ରାଚୀ ଉପତ୍ୟକାରେ ମୂର୍ତ୍ତିତତ୍ତ୍ୱ (iconography) ଦୃଷ୍ଟିରୁ ଚିହ୍ନିତ କେତେକ ବାସୁଦେବ ମୂର୍ତ୍ତି ଦେଖିବାକୁ ମିଳେ । ପରେ ବାସୁଦେବ-ଉପାସନା ମାଧବ ଉପାସନାରେ ପରିଣତ ହୋଇଥିଲା ।

ପଣ୍ଡିତ ବିନାୟକ ମିଶ୍ର ଖ୍ରୀ: ପୂ: ପ୍ରଥମ ଶତକର କଳିଙ୍ଗରାଜ ଖାରବେଳଙ୍କୁ ବାସୁଦେବଧର୍ମୀ ବୋଲି ଅନୁମାନ କରିଛନ୍ତି । (୨୩୬) କିନ୍ତୁ

ରାମାୟଣର ସଗର-କପିଳ ଉପାଖ୍ୟାନରେ ଉଲ୍ଲିଖିତ 'ବାସୁଦେବ' ଶବ୍ଦଟିକୁ ଭିତ୍ତିକରି ଏପରି ଏକ ଅନୁମାନ କରିବା ଯଥାର୍ଥ ନୁହେଁ । ପଣ୍ଡିତ ନୀଳକଣ୍ଠ ବାସୁଦେବ-ଧର୍ମକୁ ଗୀତା ରଚନାକାଳ ଠାରୁ ଆହୁରି ପ୍ରାଚୀନ କହି, ପୁରୁଷୋତ୍ତମ ଧର୍ମକୁ ଗୀତାର ସମକାଳୀନ ବୋଲି ଧରିଛନ୍ତି । ଓଡ଼ିଶାରେ ବାସୁଦେବ ଧର୍ମ ଗୀତା ରଚନାର ଅନ୍ତତଃ ତିନିଶହ ଚାରିଶହ ବର୍ଷ ପୂର୍ବରୁ ଅର୍ଥାତ ଖ୍ରୀ ପୂଃ ୧ମ-୨ୟ ଶତକରୁ ପ୍ରସାର ଲାଭ କରିଥିଲା ବୋଲି ସେ ଅନୁମାନ କରିଛନ୍ତି ଓ ବାସୁଦେବ ଧର୍ମସହ ପୁରୁଷୋତ୍ତମ ଧର୍ମର ପୂର୍ବ-ପର ଘନିଷ୍ଠ ସମ୍ପର୍କ ସ୍ଥାପନ କରିଛନ୍ତି । (୨୩୭) ପ୍ରାଚୀ ଉପତ୍ୟକାର ବାସୁଦେବ ମୂର୍ତ୍ତି ମଧ୍ୟ ଏ ଅନୁମାନ ପାଇଁ ଉପାଦାନ ଯୋଗାଇଥାଏ ।

'ବାସୁଦେବ' 'ଜଗନ୍ନାଥ'ରେ ପରିଣତ ହୋଇଥିବାର କୌଣସି ଐତିହାସିକ ପ୍ରମାଣ ନାହିଁ । 'ତେବେ ବାସୁଦେବ' କ୍ରମେ 'ମାଧବ' 'ନୀଳମାଧବ,'ରେ ପରିଣତ ହୋଇ ଶେଷରେ 'ଜଗନ୍ନାଥ' ହୋଇଥିବାର ସମ୍ଭାବନା ଉଜ୍ଜ୍ୱଳ ।

ଅଧ୍ୟାପକ ପ୍ରଭାତ ମୁଖାର୍ଜୀଙ୍କ ମତରେ ଗୁପ୍ତସମ୍ରାଟମାନେ ବାସୁଦେବ-ଉପାସକ ଥିଲେ ଓ ସେମାନଙ୍କର ରାଜୁତି କାଳରେ ଓଡ଼ିଶାରେ ବାସୁଦେବ ଧର୍ମର ପ୍ରଚଳନ ଘଟିଥିଲା । ବିଷ୍ଣୁ-ବାସୁଦେବ ଚକ୍ରଭୁଜ ଓ ଅନନ୍ତ ସାଇଁ ପ୍ରଭୃତି ରୂପରେ ପୂଜିତ ହେଉଥିଲେ । ପଞ୍ଚମ ଶତାବ୍ଦୀରେ ରାଜ-ପୃଷ୍ଠପୋଷକତା ଲାଭ କରି ଓଡ଼ିଶାରେ ଭାଗବତ ଧର୍ମ (ବାସୁଦେବ ଧର୍ମ) ଉତ୍ତରୋତ୍ତର ପ୍ରସାରିତ ହେବାରୁ ସଙ୍କର୍ଷଣ ଓ ବାସୁଦେବ ଯଥାକ୍ରମେ ବଳରାମ ଓ କୃଷ୍ଣ-ବାସୁଦେବ ରୂପରେ ପରିଚିତ ହେଲେ । (୨୩୮) ବରାହମିହିର (ଖ୍ରୀଷ୍ଟୀୟ ୫ମ ଶତାବ୍ଦୀ)ଙ୍କ ବୃହତ୍ ସଂହିତାରେ ବଳଦେବ ଓ କୃଷ୍ଣଙ୍କ ମଧ୍ୟରେ ଏକାନଂଶା ସ୍ଥାନ ପାଇଛନ୍ତି—

"ଏକାନଂଶା କାର୍ଯ୍ୟା ଦେବୀ ବଳଦେବ୍ କୃଷ୍ଣୟୋର୍ମଧ୍ୟେ
କଟି-ସଂସ୍ଥିତ-ବାମକରା ସରୋଜମିତରେଣ ଚୋଦ୍ୱହତୀ ।"

(୨୩୯) ଅଧ୍ୟାପକ ମୁଖାର୍ଜୀ ବଳଦେବଙ୍କୁ ବଳଭଦ୍ର, କୃଷ୍ଣଙ୍କୁ ଜଗନ୍ନାଥ ଓ ଏକାନଂଶାଙ୍କୁ ସୁଭଦ୍ରା ରୂପେ ଗ୍ରହଣ କରିଛନ୍ତି । ଏକାନଂଶା ସୁଭଦ୍ରା ରୂପେ

ଜଗନ୍ନାଥ ଓ ବଳଭଦ୍ରଙ୍କ ମଧ୍ୟରେ ଅବସ୍ଥାପିତ ହୋଇଥିବା ପଣ୍ଡିତ ନୀଳକଣ୍ଠ ସମର୍ଥନ କରନ୍ତି । ପରବର୍ତ୍ତୀ କାଳରେ ପୁରୁଷ-ପ୍ରକୃତି ଦର୍ଶନ-ପ୍ରତିପାଦକ ସାଂଖ୍ୟ ତତ୍ତ୍ୱକୁ ଆଶ୍ରୟ କରି ଅବତାର ସହିତ ଶକ୍ତିର କଳ୍ପନା କରାଯାଇଅଛି । ବୋଧହୁଏ ଏଥିପାଇଁ ସ୍କନ୍ଦ ପୁରାଣରେ (୨୪୦) (ଉତ୍କଳଖଣ୍ଡ, ୧୯ଶ ଅଧ୍ୟାୟ, ୧୭ଶ ଶ୍ଳୋକ) ସୁଭଦ୍ରାଙ୍କୁ ଜଗନ୍ନାଥଙ୍କର ଶକ୍ତିରୂପେ (ଉଭୟ ଭଗିନୀ ଓ ସ୍ତ୍ରୀ ରୂପେ) ବର୍ଣ୍ଣନା କରାଯାଇଅଛି । ଡକ୍ଟର ହରେକୃଷ୍ଣ ମହତାବ ଯୁକ୍ତିସହ ଏ ମତର ଖଣ୍ଡନ କରିଛନ୍ତି । ସାଂଖ୍ୟ ଦର୍ଶନ ଅନୁଯାୟୀ ଅବତାର ସହିତ ଶକ୍ତିର ପରିକଳ୍ପନା ଦେଖା ଦେଇଛି ଅନ୍ଦାଜ ୮ମ-୯ମ ଶତାବ୍ଦୀରେ । ଅବତାର ସହ ଶକ୍ତିର ସମ୍ପର୍କ ହେଉଛି ପତି-ପତ୍ନୀର ସମ୍ପର୍କ । କୌଣସିଠାରେ ପତ୍ନୀ ବିନା ଅନ୍ୟ କେହି ଶକ୍ତି ରୂପରେ ସମାବେଶିତ ହୋଇନାହାନ୍ତି । କୃଷ୍ଣ-ବାସୁଦେବ ପୂଜା କେବଳ ଓଡ଼ିଶାରେ ନୁହେଁ, ସମଗ୍ର ଭାରତବର୍ଷରେ ଅନ୍ତତଃ ଖ୍ରୀଷ୍ଟପୂର୍ବ ୫ମ ଶତାବ୍ଦୀରୁ ପ୍ରବର୍ତ୍ତିତ ହେଲାଣି । କୌଣସିଠାରେ କୃଷ୍ଣ-ବାସୁଦେବ ନାମ ସ୍ଥାନରେ ଜଗନ୍ନାଥ ନାମ ନାହିଁ, କିମ୍ବା ତାଙ୍କ ସହିତ ସୁଭଦ୍ରାଙ୍କର ସମାବେଶ ନାହିଁ । ତେଣୁ କୃଷ୍ଣ-ବାସୁଦେବଙ୍କ ସହିତ ଜଗନ୍ନାଥଙ୍କୁ ସାମିଲ କରିଦେବାର କୌଣସି ସମୀଚୀନତା ନାହିଁ ବୋଲି ତାଙ୍କର ମତ । (୨୪୧) ତେବେ 'ଜଗନ୍ନାଥ'ଙ୍କ ପ୍ରକାଶ ମୂଳରେ ଓଡ଼ିଶାର ବାସୁଦେବ ଧର୍ମର ପରମ୍ପରାକୁ ସମ୍ପୂର୍ଣ୍ଣ ପ୍ରତ୍ୟାଖ୍ୟାନ କରାଯାଇ ପାରିବ ନାହିଁ ।

## ଓଡ଼ିଶାରେ ମାଧବ ପୂଜା ଓ ଜଗନ୍ନାଥ-

ଆଦିତ୍ୟ ସେନଙ୍କର ଏକ ଶିଳାଲେଖରୁ ଜଣାଯାଏ ଯେ ଗୁପ୍ତଯୁଗର ଶାସକ ମାଧବଗୁପ୍ତ (୭ମ ଶତାବ୍ଦୀର ପ୍ରଥମ ଭାଗ) ଥିଲେ 'ମାଧବ'-ଉପାସକ । ଏହି 'ମାଧବ' ହେଉଛନ୍ତି 'ବାସୁଦେବ'ଙ୍କର କ୍ରମ ପରିଣତି । (୨୪୨) ମାଧବ-ଗୁପ୍ତଙ୍କ ସମକାଳୀନ ଓଡ଼ିଶାରେ ଅର୍ଥାତ୍ ଶୈଳୋଦ୍ଭବ ବଂଶର ରାଜତ୍ୱକାଳୀନ ଓଡ଼ିଶାରେ ମାଧବ-ଉପାସନାର ସମ୍ଭାବନା ଥାଇପାରେ । ପ୍ରାଚୀ ଉପତ୍ୟକାରେ

ବହୁ ମାଧବ-ମୂର୍ତ୍ତି ଆବିଷ୍କୃତ ହୋଇଅଛି ଓ ଏଗୁଡ଼ିକରୁ ଅନେକର ଉପାସନା ସପ୍ତମ ଶତାବ୍ଦୀରୁ ଆରମ୍ଭ ହୋଇଥିବା ଅନୁମେୟ । ଅନ୍ତତଃ ସପ୍ତମ ଶତାବ୍ଦୀ ପୂର୍ବରୁ କଙ୍ଗୋଦ (ଦକ୍ଷିଣ ଓଡ଼ିଶା)ରେ 'ଚକ୍ରଧର ମାଧବ'ଙ୍କର ପୂଜା ପ୍ରଚଳିତ ଥିଲା । ଶୈଳୋଦ୍‌ଭବ ବଂଶୀୟ ରାଜା ମାଧବ ବର୍ମନ ନିଜକୁ ଭଗବାନ୍ ଚକ୍ରଧରଙ୍କ ସହିତ ତୁଳନା କରିଛନ୍ତି । ଦକ୍ଷିଣ କୋଶଳର ସିରପୁରରୁ ବୌଦର ସୁବର୍ଣ୍ଣପୁରକୁ ରାଜଧାନୀ ଉଠାଇ ଆଣି ସୋମବଂଶୀ ରାଜାମାନେ ସେଠାରେ ଚକ୍ରଧର ମାଧବଙ୍କର ପୂଜା କରୁଥିଲେ । ପ୍ରତ୍ନତତ୍ତ୍ୱ ଓ ଗଠନ ପ୍ରଣାଳୀ ଦୃଷ୍ଟିରୁ ବୌଦ ନିକଟସ୍ଥ ଗନ୍ଧରାଡ଼ିରେ ନିର୍ମିତ ନୀଳମାଧବ ମନ୍ଦିର ପୁରୀ ମନ୍ଦିରଠାରୁ ବହୁ ପ୍ରାଚୀନତର । (୨୪୩)

ମଧ୍ୟଭାରତରୁ ଓଡ଼ିଶାର ଉପକୂଳ ପର୍ଯ୍ୟନ୍ତ ପ୍ରବାହିତ ମହାନଦୀ ଓ ତା'ର ଶାଖା ନଦୀର କୂଳେ କୂଳେ ବହୁ ମାଧବ-ମନ୍ଦିର ଦୃଷ୍ଟିଗୋଚର ହୋଇଥାଏ । ଗନ୍ଧରାଡ଼ି ନୀଳମାଧବ ମନ୍ଦିର ଓ କଣ୍ଟିଲୋ ନୀଳମାଧବ ମନ୍ଦିର–ଏଗୁଡ଼ିକ ମଧ୍ୟରେ ଉଲ୍ଲେଖଯୋଗ୍ୟ ନିଦର୍ଶନ । ପ୍ରାଚୀ ଉପତ୍ୟକାରେ ପୂଜିତ ମାଧବ ମୂର୍ତ୍ତିଗୁଡ଼ିକର ସାଧାରଣ ଲକ୍ଷଣ ହେଉଛି–ଉପର ଦକ୍ଷିଣ ହସ୍ତରେ ଚକ୍ର, ଉପର ବାମ ହସ୍ତରେ ଶଙ୍ଖ, ତଳ ଦକ୍ଷିଣ ହସ୍ତରେ ପଦ୍ମ ଓ ତଳ ବାମ ହସ୍ତରେ ଗଦା । ପ୍ରାଚୀନଦୀ ଉପତ୍ୟକାରେ ମାଧବମୂର୍ତ୍ତିର ପରିମାଣ ଏତେ ବେଶି ଯେ, ଏହି ଉପତ୍ୟକାରେ ମାଧବ ଧର୍ମର ବହୁଳ ପ୍ରସାର ଘଟିଥିଲା ବୋଲି ସହଜରେ ପ୍ରମାଣ ମିଳିଯାଏ । ନିଆଳି ଶୋଭନେଶ୍ୱର ମନ୍ଦିର ବେଢ଼ାରେ ୧୦ଟି ମାଧବ ମୂର୍ତ୍ତି, ନିଆଳି ବ୍ରହ୍ମ ମନ୍ଦିରର ଜଗମୋହନ ଭିତରେ ଥିବା ଦୁଇଟି ମାଧବ ମୂର୍ତ୍ତି, କୋରକଙ୍ଗ ଠାରେ ଗଛତଳେ ଥିବା ମାଧବ ମୂର୍ତ୍ତି, ଚହଟାର ଲଳିତ ମାଧବ ମୂର୍ତ୍ତି, ଅମରେଶ୍ୱରରେ ଅମରେଶ୍ୱର ମନ୍ଦିରର ଜଗମୋହନ ଭିତରେ ରଖାଯାଇଥିବା ଦୁଇଟି ମାଧବ ମୂର୍ତ୍ତି, ପୀତପଡ଼ାରେ ଏକ ଗ୍ରାମଘରେ ପୂଜା ପାଉଥିବା ଦୁଇଟି ମାଧବ ମୂର୍ତ୍ତି, ସୁହାଗପୁର ରାମେଶ୍ୱର ମନ୍ଦିରର ନାଟମନ୍ଦିର ଭିତରେ ଥିବା ୪ ଫୁଟ ୨ ଇଞ୍ଚ ବିଶିଷ୍ଟ ମାଧବ ମୂର୍ତ୍ତି, ନିବାରଣର ଗ୍ରାମେଶ୍ୱର ମନ୍ଦିର ବେଢ଼ାରେ ଏକ କ୍ଷୁଦ୍ର ମନ୍ଦିରରେ ପୂଜା

ପାଉଥିବା ମାଧବ ମୂର୍ତ୍ତି ସମୂହ, ନୀଳକଣ୍ଠପୁର ମନ୍ଦିରର ନୀଳମାଧବ ମୂର୍ତ୍ତି, କାକଟପୁର ମଙ୍ଗଳାଙ୍କ ମନ୍ଦିର ବେଢ଼ାରେ ଥିବା ମାଧବ ମୂର୍ତ୍ତି ସମୂହ ଇଚାହରଣ ଗ୍ରାମର ଗ୍ରାମେଶ୍ୱର ମନ୍ଦିର ଜଗମୋହନ ଭିତରେ ଥିବା ମାଧବ, ମୂର୍ତ୍ତି ସମୂହ, ମୁଦଗଳ ମାଧବ ଗ୍ରାମର ମୁଦ୍ଗଳ ମାଧବ ମୂର୍ତ୍ତି ସୋମେଶ୍ୱର ମନ୍ଦିର ଜଗମୋହନ ମଧ୍ୟରେ ଥିବା ମୂର୍ତ୍ତି ସମୂହ, କୃଷ୍ଣପ୍ରସାଦଗଡ଼ର ବିଶ୍ୱନାଥ ମନ୍ଦିରର ଜଗମୋହନ ଭିତରେ ଥିବା ମାଧବ ମୂର୍ତ୍ତି, କେନ୍ଦୁଲିର ମାଧବ ମୂର୍ତ୍ତି, ଅଡ଼ସପୁର ମାଧବ ମୂର୍ତ୍ତି, କଣ୍ଡାପଡ଼ା ଗୋକର୍ଣ୍ଣେଶ୍ୱର ମନ୍ଦିର ବେଢ଼ାରେ ଥିବା ମାଧବ ମୂର୍ତ୍ତି, ବୋଇଗ ଗ୍ରାମ ମନ୍ଦିରର ମାଧବ ମୂର୍ତ୍ତି, ରଘୁନାଥପୁର (କାକଟପୁର ଥାନା) ଗ୍ରାମର ମାଧବ ମୂର୍ତ୍ତି, ଗମ୍ଭାରିପଡା (କାକଟପୁର ଥାନା)ର ଭଗ୍ନ ଶିବ ମନ୍ଦିର ଭିତରେ ଥିବା ମାଧବ ମୂର୍ତ୍ତି, ନାସିକେଶ୍ୱର ଶିବ ମନ୍ଦିର ଭିତରେ ଥିବା ମାଧବ ମୂର୍ତ୍ତି, ପ୍ରାଚୀ ଉପତ୍ୟକାରେ ମାଧବ ଧର୍ମର ଆକୃତି ଓ ପ୍ରସାରର ବଳିଷ୍ଠ ପ୍ରମାଣ ପ୍ରଦାନ କରେ । ନିଆଳି ଏବଂ ମାଧବ ଗ୍ରାମ ମଧ୍ୟବର୍ତ୍ତୀ ଅଞ୍ଚଳ ମାଧବ ଉପାସନାର କେନ୍ଦ୍ରସ୍ଥଳୀ । ୭ମ ଶତାବ୍ଦୀ ଠାରୁ ଆରମ୍ଭ କରି ଗଙ୍ଗ ଗଜପତିଙ୍କ ଶେଷ ପର୍ଯ୍ୟନ୍ତ ସମୟ ମଧ୍ୟରେ ଓଡ଼ିଶାର ପ୍ରାଚୀ ଉପତ୍ୟକାରେ ମାଧବ-ଉପାସନା ଅତୀବ ଜନପ୍ରିୟ ହୋଇ ଉଠିଥିଲା । (୨୪୪)

ଏଇଠି ଜଗନ୍ନାଥଙ୍କ ପୂର୍ବ ରୂପ ଭାବରେ 'ନୀଳମାଧବ'ଙ୍କୁ ଗ୍ରହଣ କରି ଯେଉଁ କିମ୍ବଦନ୍ତୀ ଗଢ଼ି ଉଠିଛି ତା' ପ୍ରତି ଦୃଷ୍ଟି ପକାଇବା ଆବଶ୍ୟକ ହେଉଛି । ନୀଳଗିରିରେ ନୀଳମାଧବ ବିଶ୍ୱାବସୁ ଶବରଦ୍ୱାରା ପୂଜିତ ହେଉଥିଲେ । ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ଦ୍ୱାରା ପ୍ରେରିତ ବିଦ୍ୟାପତି ଛିଶ୍ୱାବସୁ ଶବରର କନ୍ୟା ଲଳିତାଙ୍କୁ ବିବାହ କରି ତା ମାଧ୍ୟମରେ କୌଶଳରେ 'ନୀଳମାଧବ'ଙ୍କର ସନ୍ଧାନ ପାଇବା ପରେ ବିଶ୍ୱାବସୁ କହିଛି, "ଯେଉଁ ରାଜା ଏହି କ୍ଷେତ୍ରକୁ ଆସିବେ ସେ ନୀଳମାଧବଙ୍କୁ ଦର୍ଶନ କରିପାରିବେ ନାହିଁ, କାରଣ ଅଳ୍ପକାଳ ମଧ୍ୟରେ ଭଗବାନ ସୁନାର ବାଲୁକାରାଶି ଦ୍ୱାରା ପୋତି ହୋଇ ପଡ଼ିବେ ।" ସତକୁ ସତ ହଠାତ୍ ବାଲୁକା ଝଡ଼ରେ ନୀଳମାଧବ ପୋତି ହୋଇ ପଡ଼ିଲେ । ଶୂନ୍ୟରୁ ବାଣୀ ହେଲା—

"ଦୁଃଖ କରିବାର କିଛି ନାହିଁ. ନୀଳମାଧବ ପୁଣି ଦାରୁ ରୂପରେ ଶ୍ରୀକ୍ଷେତ୍ରରେ ପ୍ରକଟିତ ହେବେ ।" କିମ୍ବଦନ୍ତୀଟି ଭିତରେ ସୂଚିତ ହେଉଛି ଯେ ଓଡ଼ିଶାରେ ନୀଳ-ମାଧବଙ୍କ ପୂଜା ପରେ ଦାରୁବ୍ରହ୍ମ ଜଗନ୍ନାଥଙ୍କର ପୂଜା ଆରମ୍ଭ ହୋଇଛି । ଐତିହାସିକ ପ୍ରମାଣ ମିଳେ ଯେ ଓଡ଼ିଶାରେ ଚତୁର୍ଭୁଜ ମାଧବ କ୍ରମେ ଦ୍ୱିଭୁଜ କୃଷ୍ଣ-ଗୋପୀନାଥରେ ପରିଣତ ହୋଇଛନ୍ତି । ଜୟଦେବଙ୍କ ଗୀତଗୋବିନ୍ଦ ରଚନା (ଦ୍ୱାଦଶ ଶତାବ୍ଦୀ) ବେଳକୁ ମାଧବ କୃଷ୍ଣ-ଗୋପୀନାଥ ଭାବରେ ସମୀକୃତ ହୋଇ-ଗଲେଣି ଓ ଏହି କୃଷ୍ଣ, 'ଅବତାର' ନୁହେଁ, 'ଅବତାରୀ' ଭାବରେ କଳ୍ପିତ ହେଲେଣି । ଏହି ଶତାବ୍ଦୀରେ ଜଗନ୍ନାଥ ଓଡ଼ିଶାର ଶ୍ରେଷ୍ଠ ଉପାସ୍ୟ ଦେବତା ଭାବରେ ପ୍ରଚାରରେ ପ୍ରତିଷ୍ଠିତ ହୋଇସାରିଥିବାରୁ ଜଗନ୍ନାଥଙ୍କ ମଧ୍ୟରେ କୃଷ୍ଣତ୍ୱ ସନ୍ଧାନ କରଯାଇଛି ।

## ଓଡ଼ିଶାରେ ଅନ୍ୟାନ୍ୟ ବ୍ରାହ୍ମଣ୍ୟ ଦେବତାଙ୍କର ଉପାସନା

ବୈଦିକ ଦେବତା ବିଷ୍ଣୁ ବହୁ ପରେ ଧର୍ମ ଜଗତରେ ଶ୍ରେଷ୍ଠତ୍ୱ ଲାଭକରିବା ଫଳରେ କୃଷ୍ଣ, ବାସୁଦେବ, ଭଗବତ, ମାଧବ, ନାରାୟଣ, ରାମ ଓ ଜଗନ୍ନାଥ ଆଦି ରୂପ ତାଙ୍କ ସହିତ ସଂପୃକ୍ତ କରିଦିଆଯାଇଛି । ବିଷ୍ଣୁଙ୍କ ନାମରେ 'ବୈଷ୍ଣବ' ଧର୍ମର ନାମକରଣ ଅର୍ବାଚୀନ । 'ବିଷ୍ଣୁ ସ୍ୱୟଂ ପରମେଶ୍ୱର ବୋଲି କେବେ ପରିକଳ୍ପିତ ଓ ପୂଜିତ ହେଲେ କହିବା କଠିନ । ଋଗ୍‌ବେଦରେ 'ବିଷ୍ଣୁ' ଇନ୍ଦ୍ରଙ୍କ ଠାରୁ ଗୌଣ । 'ଶତପଥ' ବ୍ରାହ୍ମଣରେ ତାଙ୍କର ପ୍ରାଧାନ୍ୟ ପ୍ରଦର୍ଶିତ ହୋଇଥିଲେ ହେଁ ସେ ପରମେଶ୍ୱର ନୁହନ୍ତି । କୃଷ୍ଣ, ବାସୁଦେବ, ମାଧବ, ନାରାୟଣାଦି କେବେ 'ବିଷ୍ଣୁ'ଙ୍କ ସହିତ ସମୀକୃତ ହେଲେ କହିବା କଠିନ । ତେବେ କାଳକ୍ରମେ ବୈଷ୍ଣବ ସଂସ୍କୃତିରେ ଏମାନେ ଏକ ସତ୍ତାର ବିଭିନ୍ନ ରୂପ ଭାବେ ବିବେଚିତ ହୋଇଛନ୍ତି ।

ଓଡ଼ିଶାର ସାଂସ୍କୃତିକ ଇତିହାସରେ ଭଗବତ, ବାସୁଦେବ, ମାଧବ, ନାରାୟଣ, ଗୋପୀନାଥ, ରାମ ଆଦିଙ୍କର ଉପାସନା ବିଷ୍ଣୁ ଉପାସନା ଭାବରେ ଗୃହୀତ ହୋଇଥାଏ ।

ଓଡ଼ିଶାରେ ଚତୁର୍ଥ ଶତାବ୍ଦୀରୁ ରାଜତ୍ୱ କରୁଥିବା ମାଠର ବଂଶୀୟ ରାଜା-ମାନେ ମଧ୍ୟଭାରତରେ ବୈଷ୍ଣବ ଧର୍ମର ଅଭ୍ୟୁଦୟ ଘଟାଇଥିବାର ଐତିହାସିକ

ପ୍ରମାଣ ରହିଛି । (୨୪୫) ଏମାନେ ନିଜକୁ ନାରାୟଣଙ୍କର ଉପାସକ ଭଗବତ ଧର୍ମୀ ଭାବରେ ପରିଚିତ କରାଉଥିଲେ । ଷଷ୍ଠ ଶତାବ୍ଦୀର ମାଠରବଂଶୀ ରାଜା ପ୍ରଭଞ୍ଜନ ବର୍ମନ୍ ନିଜକୁ "ଭଗବତ ସ୍ୱାମୀ-ନାରାୟଣ-ପାଦାନୁଧ୍ୟାତଃ" ବୋଲି ଅଭିହିତ କରିଛନ୍ତି । (୨୪୬) ୯ମ-୧୦ମ ଶତାବ୍ଦୀ ବେଳକୁ ନାରାୟଣଙ୍କ ସଙ୍ଗରେ ଲକ୍ଷ୍ମୀଙ୍କୁ ସଂପୃକ୍ତ କରଯାଇ ଲକ୍ଷ୍ମୀ ନାରାୟଣ ଉପାସନାର ପ୍ରବର୍ତ୍ତନ କରଯାଇଥିଲା । ପ୍ରାଚୀ ଉପତ୍ୟକାରେ ମିଳିଥିବା ଲକ୍ଷ୍ମୀ-ନାରାୟଣ ମୂର୍ତ୍ତି ଗୁଡ଼ିକୁ ଦ୍ୱାଦଶ-ତ୍ରୟୋଦଶ ଶତାବ୍ଦୀର ବୋଲି ଧରଯାଇପାରେ । ନାରାୟଣଙ୍କ ସଙ୍ଗରେ ଲକ୍ଷ୍ମୀଙ୍କର ସଂସ୍ଥାନ ମୂଳରେ ରହିଛି ନାରାୟଣ ଓ ବିଷ୍ଣୁଙ୍କର ଅଭେଦ କଳ୍ପନା । ରମାନୁଜାଚାର୍ଯ୍ୟ ଜଗନ୍ନାଥ ମନ୍ଦିର ବେଢ଼ାରେ ଲକ୍ଷ୍ମୀଙ୍କର ମନ୍ଦିର ପ୍ରତିଷ୍ଠା କରଇବା ମୂଳରେ ରହିଛି, ବିଷ୍ଣୁ, ନାରାୟଣ ଓ ଜଗନ୍ନାଥଙ୍କ ମଧ୍ୟରେ ଅଭିନ୍ନତାର ଆରୋପଣ ।

ବରାହ ହେଉଛି ବିଷ୍ଣୁଙ୍କର ଅନ୍ୟତମ ରୂପ । ଭାରତବର୍ଷର ବିଭିନ୍ନ ସ୍ଥାନରୁ ମିଳିଥିବା ବରାହ ମୂର୍ତ୍ତି ଗୁଡ଼ିକୁ ମୂର୍ତ୍ତିତତ୍ତ୍ୱ ଦୃଷ୍ଟିରୁ ବିଚାର କଲେ ମନେ ହୁଏ ଭାରତରେ ଗୁପ୍ତରାଜତ୍ୱ କାଳରେ ବରାହ-ଉପାସନା ଥିଲା । ମଧ୍ୟ-ଭାରତର ଏରାନରେ ଥିବା ୫ମ ଶତାବ୍ଦୀର ଶିଳାସ୍ତମ୍ଭ ଲେଖରେ ଏକ ବରାହ ମନ୍ଦିରର ଉଲ୍ଲେଖ ମିଳେ । (୨୪୭) ଗୁପ୍ତରାଜତ୍ୱକାଳୀନ ବରାହ ମନ୍ଦିର ଏବେ ବି ଦେଓଗଡ଼ରେ ରହିଛି । (୨୪୮) ବଙ୍ଗଳାର ଦାମୋଦରପୁରରୁ ପ୍ରାପ୍ତ ବୁଦ୍ଧଗୁପ୍ତଙ୍କ ସମୟର ଏକ ତାମ୍ର-ଲେଖରୁ ନେପାଳର କୌଣସି ଠାରେ 'ଶ୍ୱେତ ବରାହ' ମନ୍ଦିର ନିର୍ମିତ ହୋଇଥିବାର ପ୍ରମାଣ ମିଳେ । (୨୪୯) ଓଡ଼ିଶାର ପ୍ରାଚୀ ଉପତ୍ୟକାସ୍ଥ ଅଡଶପୁରର ବରାହ ମନ୍ଦିର ଦ୍ୱାଦଶ ଶତାବ୍ଦୀରେ ନିର୍ମିତ ହୋଇଥିଲା । ଏହି ଉପତ୍ୟକାରେ କୁଆଁଣପୁର ସୁନ୍ଦରଗ୍ରାମ, ନିଆଳି ମାଧବ, କାକଟପୁର, ବିଶ୍ୱାମିତ୍ର ଆଶ୍ରମ, ସୋମେଶ୍ୱର, ତ୍ରିବେଣୀ ଘାଟ ଓ କେନ୍ଦୁଲିରେ ଏବଂ ଯାଜପୁର ବୈତରଣୀକୂଳ, ଚନ୍ଦନପୁର ନିକଟ ଭାର୍ଗବୀ କୂଳରେ କେତୋଟି ବରାହ ମୂର୍ତ୍ତି ରହିଛି । ସପ୍ତମ-ଅଷ୍ଟମ ଶତାବ୍ଦୀରେ ନିର୍ମିତ ଭୁବନେଶ୍ୱରର ପର୍ଶୁରାମେଶ୍ୱର ମନ୍ଦିରର ଉପରି ଭାଗରେ ବରାହ ଓ ଜଗମୋହନରେ ତାଙ୍କର ଶକ୍ତି ବରାହମୂର୍ତ୍ତି ରହିଛି । ଏସବୁରୁ

ପ୍ରମାଣିତ ହୁଏ ଯେ ଓଡ଼ିଶାରେ ବୈଷ୍ଣବ ଧର୍ମ ପ୍ରାଧାନ୍ୟ ବିସ୍ତାର କରିଥବାରୁ ବିଷ୍ଣୁ ବରାହ ରୂପରେ ମଧ୍ୟ ଉପାସିତ ହେଉଥିଲେ ।

ବରାହ ପରି ନୃସିଂହ ମଧ୍ୟ ସେହିପରି ବିଷ୍ଣୁଙ୍କର ଅବତାର ବିଶେଷ । ଓଡ଼ିଶାରେ ଅନ୍ତତଃ ସପ୍ତମ ଶତାବ୍ଦୀରୁ ନୃସିଂହ ଉପାସନାର ପ୍ରଚଳନ ଘଟିଛି ଓ ପୁରୀରେ ଜଗନ୍ନାଥଙ୍କର ପ୍ରତିଷ୍ଠା ପର୍ଯ୍ୟନ୍ତ ବର୍ତ୍ତି ରହିଛି । ସପ୍ତମ-ଅଷ୍ଟମ ଶତାବ୍ଦିର ଭୁବନେଶ୍ୱର ରାମେଶ୍ୱର ମନ୍ଦିରର (ମାଉସୀମା) ବହିର୍ଦେଶରେ ଥିବା ଲକ୍ଷ୍ମୀ ନୃସିଂହ ମୂର୍ତ୍ତି, ଯାଜପୁର ଧର୍ମଶାଳାରୁ ପ୍ରାପ୍ତ ଅଷ୍ଟମ ଶତାବ୍ଦୀ ଓ ନବମ ଶତାବ୍ଦୀର ଦୁଇଟି ନୃସିଂହ ମୂର୍ତ୍ତି (ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ), ତେଲ ନଦୀର ସ୍ୱଙ୍ଗତ ଉପନଦୀ କୂଳସ୍ଥ ସଇଁତାଳର ଚଣ୍ଡୀ ମନ୍ଦିରର ବେଦୀ ତଳେ ଥିବା ନୃସିଂହ ମୂର୍ତ୍ତି (ନବମ ଶତାବ୍ଦୀ), ଭୁବନେଶ୍ୱର ଲିଙ୍ଗରାଜ ବେଢ଼ାରେ ଥିବା ଦୁଇଟି ନୃସିଂହ ମୂର୍ତ୍ତି, ରୋଷେଇଶାଳ ନିକଟ ଲକ୍ଷ୍ମୀ ନୃସିଂହ ମନ୍ଦିରର ନୃସିଂହ ମୂର୍ତ୍ତି, ଗଣେଶ ମନ୍ଦିରର ଏକ ସ୍ତମ୍ଭରେ ଖୋଦିତ କ୍ଷୁଦ୍ର ଗଣେଶ ମୂର୍ତ୍ତି ( ଦଶମ ଏକାଦଶ ଶତାବ୍ଦୀ ), ଶିଖରେଶ୍ୱର ମନ୍ଦିର ନିକଟସ୍ଥ ମଣିଭଦ୍ରେଶ୍ୱର ମନ୍ଦିରର ନୃସିଂହାବତାର ମୂର୍ତ୍ତି (ସପ୍ତମ ଅଷ୍ଟମ ଶତାବ୍ଦୀ), ପଶ୍ଚିମ ଓଡ଼ିଶାର ନୃସିଂହନାଥ, ଭୁବନେଶ୍ୱର ଠାରୁ ୬ କିଲୋମିଟର ଦୂରବର୍ତ୍ତୀ ଚଉଷଠି ଯୋଗିନୀ ପୀଠର ନାରସିଂହୀ ମୂର୍ତ୍ତି ପ୍ରଭୃତି ଓଡ଼ିଶାରେ ନରସିଂହ-ଉପାସନା ପରମ୍ପରାର ପ୍ରମାଣ । ଗଙ୍ଗବଂଶୀୟ ରାଜାମାନଙ୍କ ମଧ୍ୟରୁ ଅନେକେ ନୃସିଂହ ଭକ୍ତ ଥିଲେ । ଫଳରେ ୨୭ ଜଣ ରାଜାଙ୍କ ମଧ୍ୟରୁ ୭ ଜଣଙ୍କ ନାମରେ ନୃସିଂହ ନାମ ଯୋଗ କରାଯାଇଛି । ବୋଧହୁଏ ନୃସିଂହଙ୍କ କୃପା ଲଭ ପାଇଁ ନାମରେ ଏ ନୃସିଂହ ଶବ୍ଦର ସଂଯୋଗ । (୨୫୦, ୨୫୧) ନୃସିଂହଙ୍କ ଶକ୍ତି ଓ ଜଗନ୍ନାଥଙ୍କ ଶକ୍ତି ହେଉଛନ୍ତି ଲକ୍ଷ୍ମୀ । ଓଡ଼ିଶାରେ ପୂର୍ବରୁ ଲକ୍ଷ୍ମୀ-ନୃସିଂହ ପୂଜା ରହିଥିବା ସୂଚିତ ହୋଇଅଛି । ତେଣୁ ଜଗନ୍ନାଥଙ୍କ ମଧ୍ୟରେ ନୃସିଂହତ୍ୱ ଆରୋପ କରାଯାଇଅଛି ଓ ଜଗନ୍ନାଥ ପୀଠରେ ପ୍ରଥମେ ନୃସିଂହନାଥ ପୂଜା ଥିଲା ବୋଲି ଅନେକେ ଅନୁମାନ କରିଛନ୍ତି । ତେଣୁ ସ୍କନ୍ଦପୁରାଣ ଉତ୍କଳ ଖଣ୍ଡରେ ଜଗନ୍ନାଥ ନୃସିଂହ ମୂର୍ତ୍ତିରୂପେ ଇନ୍ଦ୍ରଦ୍ୟୁମ୍ନଙ୍କୁ ଦର୍ଶନ ଦେଇଥିବା ଉଲ୍ଲିଖିତ ହୋଇଅଛି । ଇନ୍ଦ୍ରଦ୍ୟୁମ୍ନଙ୍କ ଦ୍ୱାରା ପ୍ରେରିତ ବିଦ୍ୟାପତି

ମଧ୍ୟ ନୃସିଂହଙ୍କୁ ଦର୍ଶନ କରିଥିଲେ । ଇନ୍ଦ୍ରଦ୍ୟୁମ୍ନ ଶ୍ରୀକ୍ଷେତ୍ରରେ ଜଗନ୍ନାଥ ବିଗ୍ରହ ସ୍ଥାପନ କରିବା ପୂର୍ବରୁ ଗୁଣ୍ଡିଚା ମନ୍ଦିର ନିକଟସ୍ଥ ଯଜ୍ଞ-ନୃସିଂହଙ୍କୁ ପୂଜା କରି ମହାବିଷ୍ଣୁ ଯଜ୍ଞ ସମ୍ପାଦନ କରିଥିଲେ ଓ ତା'ପରେ ନୃସିଂହରୂପୀ ଜଗନ୍ନାଥଙ୍କୁ ଦର୍ଶନ କରିଥିଲେ । ଏ କିମ୍ବଦନ୍ତୀରେ ଐତିହାସିକ ସତ୍ୟ ନଥାଉ ପଛକେ ଓଡ଼ିଶାର ଜନ-ମାନସରେ ନିଶ୍ଚିତ ଭାବରେ ନୃସିଂହ ଓ ଜଗନ୍ନାଥଙ୍କ ମଧ୍ୟରେ ସମରୂପତା ଥିବାରୁ ଏପରି କିମ୍ବଦନ୍ତୀର ସୃଷ୍ଟି ହୋଇଅଛି ।

ଓଡ଼ିଶାରେ ରାମ-ଉପାସନାର ଉନ୍ମେଷ କେବେ ହେଲା ସଠିକ୍ ରୂପେ ନିର୍ଣ୍ଣୀତ ହୋଇପାରି ନଥିଲେ ମଧ୍ୟ ଅଷ୍ଟମ ଶତାବ୍ଦୀ ବେଳକୁ 'ରାମାୟଣ' ଓଡ଼ିଶାରେ ଅତୀବ ଜନପ୍ରିୟ ହୋଇପାରିଥିବାରୁ ମୁରାରି ମିଶ୍ର ରାମାୟଣର ବିଷୟ ବସ୍ତୁ ଉପରେ ଏହି ଶତାବ୍ଦୀରେ ସଂସ୍କୃତରେ 'ଅନର୍ଘ ରାଘବ' ନାଟକ ରଚନା କରି ପୁରୀରେ ଅଭିନୀତ କରାଇ ଥିଲେ । ଏକାଦଶ ଶତାବ୍ଦୀରେ ନାରାୟଣ ସତ୍‌କବି 'ରାମାଭ୍ୟୁଦୟକାବ୍ୟମ୍' ରଚନା କରିଥିଲେ । କାଳକ୍ରମେ ଜଗନ୍ନାଥଙ୍କ ମଧ୍ୟରେ ରାମ ଆରୋପିତ ହୋଇଛନ୍ତି । ବୈଷ୍ଣବାଚାର୍ଯ୍ୟ ବିଷ୍ଣୁ ସ୍ୱାମୀ (୧୨ଶ ଶତାବ୍ଦୀର ଶେଷ ଭାଗ) ରାମଙ୍କୁ ବିଷ୍ଣୁଙ୍କର ପୂର୍ଣ୍ଣ-ସ୍ୱରୂପ ରୂପେ ଗ୍ରହଣ କରିଛନ୍ତି ଓ ଜଗନ୍ନାଥଙ୍କୁହିଁ ଶ୍ରୀରାମଙ୍କର ପରିପୂର୍ଣ୍ଣ ମୂର୍ତ୍ତି ରୂପେ ପରିକଳ୍ପନା କରିଛନ୍ତି । ଚତୁର୍ଦ୍ଦଶ ଶତାବ୍ଦୀରେ ରାମାନନ୍ଦ ମଧ୍ୟ ରାମଙ୍କୁ ପୂର୍ଣ୍ଣବ୍ରହ୍ମ ରୂପେ ଗ୍ରହଣ କରିଛନ୍ତି ଓ ଜଗନ୍ନାଥଙ୍କ ଭିତରେ ଏହି ରାମଙ୍କୁ ଦେଖିଛନ୍ତି । ପଞ୍ଚସଖାଙ୍କ ମଧ୍ୟରେ ବଳରାମ ମଧ୍ୟ ଜଗନ୍ନାଥଙ୍କ ଭିତରେ ଶ୍ରୀରାମଙ୍କର ପରିକଳ୍ପନା କରିଛନ୍ତି । ୨୫୨)

ବ୍ରାହ୍ମଣ୍ୟ ଧର୍ମର କେବଳ ବୈଷ୍ଣବ ଶାଖା ନୁହେଁ, ଶୈବ, ଶାକ୍ତ ଆଦି ଶାଖା ମଧ୍ୟ ଜଗନ୍ନାଥଙ୍କ ମଧ୍ୟରେ ନିଜର ନିର୍ଯ୍ୟାସ ନିର୍ଦ୍ଦେଶିତ କରିଛି । ଶିବ ଅନାର୍ଯ୍ୟତର ଦେବତା ହେଲେ ମଧ୍ୟ ବୈଦିକ ରୁଦ୍ର ଶିବଙ୍କ ସହିତ ସମଧର୍ମୀ ହୋଇ ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀ ବେଳକୁ ଭାରତୀୟ ସଂସ୍କୃତିରେ ପ୍ରିୟ ହୋଇ ଉଠିଥିଲେ । ଜୈନ ଓ ବୌଦ୍ଧ ଧର୍ମର ପ୍ରବଳ ପ୍ରତିରୋଧ ଫଳରେ ଶିବ ଅରୂପ ବେଶରେ ଲିଙ୍ଗ ରୂପରେ ଉପାସିତ ହେଲେ । ଓଡ଼ିଶାରେ ଜୈନ ଓ ବୌଦ୍ଧ ଧର୍ମର

ପ୍ରସାର ପୂର୍ବରୁ ଲିଙ୍ଗ-ଉପାସନା ଲୋକପ୍ରିୟ ଥିଲା ବୋଲି କେହି କେହି ମେଘାସ୍ଥିନିସ୍‌ଙ୍କ ବିବରଣକୁ ଭିତ୍ତି କରି ଅନୁମାନ କରନ୍ତି । ଡକ୍‌ଟର ମାୟାଧର ମାନସିଂହ ଜଗନ୍ନାଥ ମୂଳତଃ ଏକ ଶିବ ଲିଙ୍ଗ ଥିଲେ ଓ ନୀଳମୁଗୁନି ପଥରରେ ନିର୍ମିତ ଏହି ଶିବ କାଳକ୍ରମେ ଶବରମାନଙ୍କ ଦ୍ୱାରା 'ନୀଳମାଧବ' ଭାବରେ ପୂଜା ପାଇଲେ ବୋଲି ଯୁକ୍ତି ଉପସ୍ଥାପନ କରିଛନ୍ତି । (୨୫୩) ପୂର୍ବ ଭାରତରେ ଖ୍ରୀ : ପୂ : ୨ୟ-୧ମ ଶତାବ୍‌ଦୀରେ ସୁଙ୍ଗ ରାଜତ୍ୱ ପ୍ରତିଷ୍ଠା ସହିତ ବ୍ରାହ୍ମଣ୍ୟ ଧର୍ମ ଅଭ୍ୟୁତ୍‌ଥାନ ଘଟିଥିଲା । ସେତିକିବେଳେ ଓଡ଼ିଶାରେ ଶୈବ ଧର୍ମର ପ୍ରସାର ଘଟିଥିଲା । ଅଶନପାଟ ଓ ସୀତାବିଞ୍ଜି ପ୍ରଭୃତିରେ ଓଡ଼ିଶାର ପ୍ରାଚୀନତମ ଶୈବ ସ୍ଥାପତ୍ୟ ଦେଖିବାକୁ ମିଳେ । ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିରର ନିର୍ମାଣ କାଳ ୧୦ମ-୧୧ଶ ଶତାବ୍‌ଦୀ ହେଲେ ମଧ୍ୟ ଏକାମ୍ର କ୍ଷେତ୍ରରେ ଲିଙ୍ଗରାଜ ଉପାସନା ବହୁ ପ୍ରାଚୀନ ଓ ୭ମ ଶତାବ୍‌ଦୀରେ ଶଶାଙ୍କ ଭୁବନେଶ୍ୱରରେ ଯେଉଁ ତ୍ରିଭୁବନେଶ୍ୱରଙ୍କୁ ପ୍ରତିଷ୍ଠା କରିଥିଲେ, ତାହା ଲିଙ୍ଗରାଜ ବୋଲି ଅନୁମାନ କରାଯାଇପାରେ । ଖ୍ରୀଷ୍ଟୀୟ ଚତୁର୍ଥ ପଞ୍ଚମ ଶତାବ୍‌ଦୀରେ ଓଡ଼ିଶାରେ ବୌଦ୍ଧଧର୍ମର ମହତ୍ତ୍ୱକୁ କ୍ଷୁର୍ଣ୍ଣ କରି ଶୈବ ଧର୍ମ ବ୍ୟାପକ ଲୋକଧର୍ମର ଗୌରବ ଅର୍ଜନ କରିବା ପରେ ଓଡ଼ିଶାରେ କେତେ ସ୍ଥାନରେ କେତେ ଯେ ଶୈବ ମନ୍ଦିର ସ୍ଥାପିତ ହୋଇଛି ତା'ର ଇୟତା ନାହିଁ । ଫଳରେ ଓଡ଼ିଶାର ଗ୍ରାମେ ଗ୍ରାମେ ଶିବ ମନ୍ଦିର ଦେଖିବାକୁ ମିଳେ । ଅଷ୍ଟମ ଶତାବ୍‌ଦୀ ବେଳକୁ ବୌଦ୍ଧ ଓ ଶୈବ ଧର୍ମ ମଧ୍ୟରେ ସଂଯୋଗ ଘଟିଥିବା ଲକ୍ଷ୍ୟ କରାଯାଏ । ବୌଦ୍ଧ ଓ ଶୈବ ଉଭୟ ଧର୍ମରେ ଏହି ସମୟରୁ ଶକ୍ତି ଓ ତନ୍ତ୍ରର ଅନୁପ୍ରବେଶ ଘଟିଅଛି । ବୌଦ୍ଧ ଓ ଶୈବ ଉଭୟ ଧର୍ମ ଯେତେବେଳେ ଜଗନ୍ନାଥଙ୍କ ମଧ୍ୟରେ ନିଜ ଧର୍ମକୁ ଆରୋପ କରିଛି, ଜଗନ୍ନାଥ ଧର୍ମ ମଧ୍ୟରେ ତାନ୍ତ୍ରିକତା ସ୍ଥାନ ପାଇଛି, ଜଗନ୍ନାଥ ମହାଭୈରବ ଭାବରେ କଳ୍ପିତ ହୋଇଛନ୍ତି ଓ ଭୈରବ ମନ୍ତ୍ରରେ ପୂଜିତ ହୋଇଛନ୍ତି ।

## ଉପସଂହାର

ଓଡ଼ିଶାରେ ଶବର, ଜୈନ, ବୌଦ୍ଧ ଓ ବ୍ରାହ୍ମଣ୍ୟ ସଂସ୍କୃତିର ପ୍ରସାର-ଇତିହାସ ଏବଂ ଜଗନ୍ନାଥଙ୍କ ସହିତ ସେଗୁଡ଼ିକର ସଂପୃକ୍ତି ବିଶ୍ଳେଷଣ କଲେ,

ଜଗନ୍ନାଥ ମୂଳତଃ କଅଣ, ଜଗନ୍ନାଥ-ଧର୍ମର ପ୍ରକୃତ ସ୍ୱରୂପ କଅଣ ସିଦ୍ଧାନ୍ତ କରିବା ବାସ୍ତବରେ କଷ୍ଟସାଧ୍ୟ ହୋଇପଡ଼େ । ଯେ କୌଣସି ଧର୍ମ ସହିତ ଜଗନ୍ନାଥଙ୍କର ସମ୍ପର୍କ ପ୍ରତିଷ୍ଠା କରିବା ପାଇଁ ଅଳ୍ପ-ବହୁତ ବଳିଷ୍ଠ ଓ ମର୍ମସ୍ପର୍ଶୀ ପ୍ରମାଣ ଅଥବା ଦୃଷ୍ଟାନ୍ତ ରହିଛି ।

'ଜଗନ୍ନାଥ' ନାମଟି ଶବର 'ଜଗନ୍ତ', ଜୈନ 'ଜଗନ୍ନାଥ' (ଜଗତନାଥ ଜଗନ୍ନାଥ ଜିନନାଥ), ବୌଦ୍ଧ ଜଗନ୍ନାଥ' (ବୁଦ୍ଧ) ଓ ବ୍ରାହ୍ମଣ୍ୟ 'ଜଗନ୍ନାଥ' (ଜଗତର ନାଥ ବିଷ୍ଣୁ) ସହିତ ଘନିଷ୍ଠ ଭାବରେ ସମ୍ପୃକ୍ତ । ତେବେ ବ୍ରାହ୍ମଣ୍ୟ ଧର୍ମରେ ପୁରୁଷୋତ୍ତମ-ଅଧିଷ୍ଠିତ ପୁରୁଷୋତ୍ତମଙ୍କ ପାଇଁ 'ଜଗନ୍ନାଥ' ଶବ୍ଦ ବ୍ୟବହାର ପ୍ରଥମ ନିଦର୍ଶନ ବୋଧହୁଏ 'ରୁଦ୍ର ଯାମଳ ଗ୍ରନ୍ଥରେ ଦେଖିବାକୁ ମିଳେ ।

—"ମହାକନ୍ଦବାସୀ ମହାନନ୍ଦ ବାସ୍ୟ ପୁର ଗ୍ରାମବାସୀ ମହାପୀଠ ଦେଶ।
ଜଗନ୍ନାଥ-ବକ୍ଷସ୍ଥଳସ୍ଥେ। ବରେଣ୍ୟେ ବୃତାନନ୍ଦ କର୍ତ୍ତା ଶିବାନନ୍ଦ—କର୍ତ୍ତ୍ରୀ ।" (୨୫୪ ତେଣୁ ଶବର ଦ୍ୱାରା ପୂଜିତ 'ଜଗନ୍ତ' ଜୈନ ଓ ବୌଦ୍ଧମାନଙ୍କ ଦ୍ୱାରା ଗୃହୀତ ହୋଇ ସେହି ସେହି ଧର୍ମର ଉପାସ୍ୟ ଦେବତା ଭାବରେ ପୂଜିତ ହେବା ପରେ ବ୍ରାହ୍ମଣ୍ୟମାନେ ମଧ୍ୟ ତାହାଙ୍କୁ ଗ୍ରହଣ କରି ତାଙ୍କ ଭିତରେ ପୁରୁଷୋତ୍ତମ ବିଷ୍ଣୁଙ୍କୁ ଦେଖି ନିଜ ଧର୍ମର ବିଷ୍ଣୁ ପୁରାଣରେ ବିଷ୍ଣୁଙ୍କ ପାଇଁ ବ୍ୟବହୃତ 'ଜଗନ୍ନାଥ' ଶବ୍ଦ (୨୫୫) ସହ ଏ ଶବ୍ଦର ସାମ୍ୟ ଦେଖି ଏହାକୁ ପ୍ରୟୋଗ କରିଛନ୍ତି ।

ଏଇଠି ଗୋଟିଏ ପ୍ରଶ୍ନ ଉଠେ, ଜଗନ୍ନାଥ ପ୍ରଥମେ ଏକାକୀ ଥିଲେ କି ତ୍ରିମୂର୍ତ୍ତି ମଧ୍ୟରେ ଅନ୍ୟତମ ଥିଲେ । କିମ୍ବଦନ୍ତୀ କହେ, ବିଶ୍ୱାବସୁ ଶବର ଏକମାତ୍ର ମୂର୍ତ୍ତି ପୂଜା କରୁଥିଲେ । ଇନ୍ଦ୍ରଦ୍ୟୁମ୍ନଙ୍କୁ ସ୍ୱପ୍ନରେ ଓ ବିଦ୍ୟାପତିଙ୍କୁ ଶୂନ୍ୟବାଣୀରେ ଭଗବାନ୍ କହିଛନ୍ତି, ସେ ସମୁଦ୍ର କୂଳରେ ଦାରୁ ରୂପରେ ଆବିର୍ଭୂତ ହେବେ । ଏଇଠି ଅନ୍ୟ ଦୁଇ ଦେବତାଙ୍କର ସୂଚନା ନାହିଁ । ୮ମ ଶତାବ୍ଦୀର ଜ୍ଞାନସିଦ୍ଧି ଓ ପ୍ରଜ୍ଞୋପାୟ ବିନିଶ୍ଚୟ ସିଦ୍ଧି ପ୍ରଭୃତି ଗ୍ରନ୍ଥରେ କେବଳ 'ଜଗନ୍ନାଥ'ଙ୍କୁ ସ୍ତୁତି କରାଯାଇଛି । ୯ମ ଶତାବ୍ଦୀର ଅନର୍ଘ ରାଘବ ନାଟକ, ମଧ୍ୟପ୍ରଦେଶ ସତ୍‌ନା ଜିଲ୍ଲାରୁ ପ୍ରାପ୍ତ ୧୦ମ ଶତାବ୍ଦୀର ଶିଳାଲେଖ, ୧୦୨୨ ଖ୍ରୀଷ୍ଟାବ୍ଦର ୧ମ ରାଜରାଜଙ୍କ ଶିଳାଲେଖ

୧୧ଶ ଶତାବ୍ଦୀର ପୂଜାରୀପଲ୍ଲୀ ଅଭିଲେଖ, ୧୧୦୦ ଖ୍ରୀଷ୍ଟାବ୍ଦରେ ରଚିତ 'ପ୍ରବୋଧ ଚନ୍ଦ୍ରୋଦୟ' ନାଟକ, ମାଳବର ରଜା ଲକ୍ଷ୍ମଣ ଦେବଙ୍କ ୧୧୦୪ ଖ୍ରୀଷ୍ଟାବ୍ଦର ଶିଳାଲେଖ ଓ ୧୧୩୭ ଖ୍ରୀଷ୍ଟାବ୍ଦର ଗୋବିନ୍ଦପୁର ଦାନପତ୍ର ପ୍ରଭୃତିରେ 'ପୁରୁଷୋତ୍ତମ'ଙ୍କର ଉଲ୍ଲେଖ ଅଛି, ମାତ୍ର ବଳଭଦ୍ର ବା ସୁଭଦ୍ରାଙ୍କର ଉଲ୍ଲେଖ ନାହିଁ । ତେଣୁ ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ତ୍ରିମୂର୍ତ୍ତିର ଅସ୍ତିତ୍ୱ ସମ୍ପର୍କରେ କୌଣସି ଐତିହାସିକ ପ୍ରମାଣ ନାହିଁ । ଏପରିକି ଗ୍ରେଡଗଙ୍ଗ ଦେବଙ୍କ ଦ୍ୱାରା ଜଗନ୍ନାଥ ମନ୍ଦିର ନିର୍ମାଣ ସମାପ୍ତି ଓ ଜଗନ୍ନାଥଙ୍କ ପ୍ରତିଷ୍ଠା ପରେ ଯେଉଁ 'ପୁରୁଷୋତ୍ତମ'ଙ୍କ ମନ୍ଦିର ନିର୍ମାଣ ଓ ପ୍ରତିଷ୍ଠା ପାଇଁ ଗ୍ରେଡ଼ଗଙ୍ଗ ଦେବ ପଣ୍ଡିଜାରଙ୍କଦ୍ୱାର ଉଚ୍ଚ-ପ୍ରଶଂସିତ ହୋଇଛନ୍ତି, ସେଇ 'ପୁରୁଷୋତ୍ତମ' ଏକାକୀ ପ୍ରତିଷ୍ଠିତ ହେବା ସୂଚିତ ହେଉଅଛି । ପ୍ରମାଣ ଅଭାବରୁ ଅଧ୍ୟାପକ ପ୍ରଭାତ ମୁଖାର୍ଜି ଅନୁମାନ କରିଛନ୍ତି ଯେ ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ତ୍ରିମୂର୍ତ୍ତି ଜଗନ୍ନାଥ ମନ୍ଦିରରେ ପ୍ରତିଷ୍ଠିତ ହୋଇ ନଥିଲେ । ତ୍ରୟୋଦଶ ଶତାବ୍ଦୀରେ ଶୈ ସଂପ୍ରଦାୟର ପ୍ରାଧାନ୍ୟ ହ୍ରାସ ପାଇବା ପରେ ଓ ଶୈବ-ବୈଷ୍ଣବ ସଂପ୍ରଦାୟ ମଧ୍ୟରେ ସୌହାର୍ଦ୍ଦ୍ୟ ପ୍ରତିଷ୍ଠା ପରେ ରମାଇ ପଣ୍ଡିତଙ୍କ ଦ୍ୱାରା ଧର୍ମ-ପୂଜା-ବିଧାନର ସୃଷ୍ଟି ହେଲା ଓ ବୌଦ୍ଧ ବ୍ରାହ୍ମଣ୍ୟ ଧର୍ମ ମଧ୍ୟରେ ସମନ୍ୱୟ ଘଟିଥିଲା । ସେତିକିବେଳେ ବୁଦ୍ଧ ଜଗନ୍ନାଥ ରୂପେ ସ୍ଥାନ ପାଇଲେ ଓ ତାଙ୍କ ସଙ୍ଗରେ ରହିଲେ ବ୍ରାହ୍ମଣ୍ୟ ଦେବତା ବଳଭଦ୍ର ଏବଂ ସୁଭଦ୍ରା । (୨୫୬) ତାଙ୍କ ମତରେ ଏହି ଶତାବ୍ଦୀରେ ହିଁ ତ୍ରୟୀ-ପରିକଳ୍ପନା ଭାଗବତ-ସଂପ୍ରଦାୟ ଦ୍ୱାରା ପ୍ରଭାବିତ ହୋଇ ମୁଣ୍ଡ ଟେକିଥିଲା । ଫଳରେ ଭୁବନେଶ୍ୱରରେ ଅନନ୍ତ ବାସୁଦେବ ମନ୍ଦିରରେ ପ୍ରତିଷ୍ଠିତ ହେଲେ ଅନନ୍ତ (ବଳଦେବ), ବାସୁଦେବ (କୃଷ୍ଣ) ଓ ସୁଭଦ୍ରା, କୋଣାର୍କରେ ପ୍ରତିଷ୍ଠିତ ହେଲେ କୃଷ୍ଣ-ବାସୁଦେବ, ଶିବ ଏବଂ ଦୁର୍ଗା । (୨୫୭) କିନ୍ତୁ ତ୍ରୟୋଦଶ ଶତାବ୍ଦୀ ପୂର୍ବରୁ ଯେ ତ୍ରୟୀ ପରିକଳ୍ପନା ନଥିଲା ସେ କଥା କହିହେବ ନାହିଁ । ସୃଷ୍ଟି-ସ୍ଥିତି-ପ୍ରଳୟର ଦେବତା ଭାବରେ ବହୁ ଆଗରୁ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର, (ଶିବ) କଳ୍ପିତ ହୋଇଛନ୍ତି । ୫ମ ଶତାବ୍ଦୀରେ କୃଷ୍ଣ, ବଳଦେବ ଓ ଏକାନଂଶାଙ୍କୁ ନେଇ ବରାହ ମିହିରଙ୍କ ବୃହତ୍ ସଂହିତାରେ ତ୍ରୟୀର ପରିକଳ୍ପନା ହୋଇଛି ।

ଓଡ଼ିଶାର ଶବରମାନେ ପ୍ରଥମେ ଏକ ମୂର୍ତ୍ତି ପୂଜା କରୁଥିଲେ । ଅଶୋକଙ୍କ ଓଡ଼ିଶା ବିଜୟ ପରେ ଶବରମାନେ ବୌଦ୍ଧ ଧର୍ମରେ ଦୀକ୍ଷିତ ହେବା ପରେ ହୁଏତ

ସେଇ ଦାରୁ ଦେହରେ ବୁଦ୍ଧ, ସଂଘ, ଧର୍ମ ତ୍ରିରତ୍ନ ଚିହ୍ନକରି ଦେଇଛନ୍ତି । (୨୫୮) ହୁଏତ ଏ ତ୍ରିରତ୍ନ ପାଇଁ ଏକଦା ତ୍ରିମୂର୍ତ୍ତି ଅଲଗା ଅଲଗା ଗଠିତ ହୋଇଛନ୍ତି ଓ ଜାକେରି ପେନୁ, ମୁଣବି ପେନୁ ଏବଂ ତାନା ପେନୁ (ନାରୀ) ନାମ ଗ୍ରହଣ କରିଛନ୍ତି ।

ଶବରମାନେ ଜୈନ-ତ୍ରିରତ୍ନକୁ ମଧ୍ୟ ଗ୍ରହଣ କରିଥାଇ ପାରନ୍ତି । ତ୍ରିରତ୍ନର ଅନୁକରଣରେ ତ୍ରିମୂର୍ତ୍ତି ଗଠିତ ହୋଇଥିବାରୁ ଏମାନେ ହସ୍ତପଦ-ଶୂନ୍ୟ । ଏମାନଙ୍କର ହସ୍ତପଦ ଶୂନ୍ୟତା ପାଇଁ ପରବର୍ତ୍ତୀ କାଳରେ କିମ୍ବଦନ୍ତୀ ଓ ପୌରାଣିକ ଗଳ୍ପମାନ ଉଦ୍ଭାବିତ ହୋଇଛି । (୨୫୯) ଡଃ କୃଷ୍ଣବିହାରୀ ତ୍ରିପାଠୀଙ୍କ ମତରେ ଯେତେବେଳେ କଳିଙ୍ଗରେ ଜୈନ ଧର୍ମର ପ୍ରସାର ଘଟିଲା ଓ କଳିଙ୍ଗର ରାଜା ଜୈନ ଧର୍ମର ପୃଷ୍ଠପୋଷକତା କଲେ । ସେତେବେଳେ ଶବରମାନଙ୍କ ଦ୍ୱାରା ଦାରୁଦେବତା ଭାବରେ ପୂଜିତ ରକ୍ଷଦେବତା ସମ୍ଭବତଃ ଜୈନଧର୍ମର ସ୍ୱସ୍ତିକ ଓ ବଦ୍ଧମଙ୍ଗଳ ଚିହ୍ନର ସମ୍ମିଳିତ ରୂପ ପରିଗ୍ରହ କଲେ ଓ ଆଜିର ଜଗନ୍ନାଥ ମୂର୍ତ୍ତିରେ ପରିଣତ ହେଲେ । (୨୬୦)

ବୋଧହୁଏ ଓଡ଼ିଶାରେ ବ୍ରାହ୍ମଣ୍ୟଧର୍ମର ପୁନରୁତ୍‌ଥାନ କାଳରେ ତ୍ରିରତ୍ନ ମୂର୍ତ୍ତି ପରିବର୍ତ୍ତେ ତ୍ରିରତ୍ନ ସଦୃଶ ତିନୋଟି ହସ୍ତପଦ-ଶୂନ୍ୟ କାଷ୍ଠମୂର୍ତ୍ତି ସ୍ଥାପିତ ହୋଇଅଛି ଏବଂ ବଳଦେବ, କୃଷ୍ଣ, ଏକାନଂଶା ଅନୁକରଣରେ ବଳଭଦ୍ର, ଜଗନ୍ନାଥ (କୃଷ୍ଣ-ବାସୁଦେବ) ଓ ସୁଭଦ୍ରା ନାମ ଗ୍ରହଣ କରିଛନ୍ତି । ଓଡ଼ିଶାରେ ବୈଷ୍ଣବ ଧର୍ମର ଦୀର୍ଘ ପରମ୍ପରା ତ୍ରିରତ୍ନକୁ ବୈଷ୍ଣବଧର୍ମର ତ୍ରିଦେବତାରେ ପରିଣତ କରିଦେଇଛି । ବୌଦ୍ଧ ଓ ଶାକ୍ତ ଧର୍ମରେ ତନ୍ତ୍ରର ପ୍ରାଧାନ୍ୟ କାଳରେ ଏକାନଂଶା ହୋଇ ଉଠିଛନ୍ତି ଦୁର୍ଗା ବା ଭଦ୍ରା-ରୂପିଣୀ ସୁଭଦ୍ରା । ଏହି ସମୟରେ ଜଗନ୍ନାଥଙ୍କୁ ଭୈରବ ରୂପେ କଳ୍ପନା କରାଯାଇ ସୁଭଦ୍ରାଙ୍କୁ ତାଙ୍କର ଶକ୍ତି ରୂପେ କଳ୍ପନା କରାଯାଇଛି । ପୂର୍ବରୁ ସୁଭଦ୍ରା ଥିଲେ ଜଗନ୍ନାଥଙ୍କର ଭଗିନୀ, ପରେ ତନ୍ତ୍ରମତରେ ହୋଇଗଲେ ଶକ୍ତି । ତ୍ରୟୋଦଶ ଶତାବ୍ଦୀ ପୂର୍ବରୁ ଏହି ଦ୍ୱିଧା ଆସି ଯାଇଥିବାରୁ ସ୍କନ୍ଦ ପୁରାଣକାର ଲେଖିଲେ– "ତସ୍ୟ ଶକ୍ତି ସ୍ୱରୂପେୟଂ ଭଗିନୀ ସ୍ତ୍ରୀ ପ୍ରବର୍ତ୍ତିକା"

ଅଷ୍ଟମ ଶତାବ୍ଦୀ ପୂର୍ବରୁ ଜଗନ୍ନାଥଙ୍କ ମଧ୍ୟରେ ବୁଦ୍ଧତ୍ୱ କଳ୍ପିତ ହୋଇ ସାରିଛି, ତେଣୁ ଇନ୍ଦ୍ରଭୂତି ଜଗନ୍ନାଥଙ୍କୁ 'ସର୍ବବୁଦ୍ଧମୟ' ବୋଲି କହିଛନ୍ତି । 'ବୁଦ୍ଧ'

ଶବ୍ଦ ପରିବର୍ତ୍ତେ 'ତୁଷ୍ଟମୟ' ଶବ୍ଦର ବ୍ୟବହାର ବାସ୍ତବରେ ତାତ୍ପର୍ଯ୍ୟପୂର୍ଣ୍ଣ । ୯ମ ଶତାବ୍ଦୀ ବେଳକୁ ବୌଦ୍ଧଧର୍ମ ଓ ବ୍ରାହ୍ମଣ୍ୟ ଧର୍ମ ଉଭୟରେ ତନ୍ତ୍ରର ଅନୁପ୍ରବେଶ ଘଟିସାରିଛି । ତେଣୁ ଜଗନ୍ନାଥଙ୍କୁ ଭୈରବ ରୂପେ କଳ୍ପନା କରଯାଇଛି । ତେଣୁ କ୍ରମଶଃ ଦୁର୍ଗାରୂପିଣୀ ସୁଭଦ୍ରା ତାଙ୍କର ଶକ୍ତି ହୋଇ ଯାଇଛନ୍ତି । ୯ମ ଶତାବ୍ଦୀରେ ଶଙ୍କରାଚାର୍ଯ୍ୟଙ୍କ ପୁରୀ ଆଗମନ ଫଳରେ ବୌଦ୍ଧାୟତ ଜଗନ୍ନାଥ ସ୍ମାର୍ତ୍ତ ପଦ୍ଧତିରେ ଯୁଗପତ୍ ହେଲେ ଶୈବାୟିତ ଓ ବୈଷ୍ଣବାୟିତ । ତେଣୁ ଦଶମ ଶତାବ୍ଦୀ ବେଳକୁ ଜଗନ୍ନାଥଙ୍କ ମଧ୍ୟରେ ବୌଦ୍ଧ, ଶୈବ ଓ ବୈଷ୍ଣବ ଧର୍ମର ଚେତନା ସମନ୍ୱିତ ହୋଇସାରିଛି, ଯାହା ଫଳରେ ବୌଦ୍ଧ ଶୈବ-ତନ୍ତ୍ର-ପ୍ରଭାବିତ ବହୁ ବ୍ରାହ୍ମଣ୍ୟ ଗ୍ରନ୍ଥରେ ଜଗନ୍ନାଥଙ୍କ ପ୍ରଶସ୍ତି ଗାନ କରଯାଇଅଛି । ବିଭିନ୍ନ ଧର୍ମତର ସମନ୍ୱୟ ଫଳରେ ଭାରତର ବିଭିନ୍ନ ଅଞ୍ଚଳର ଧର୍ମ ପ୍ରଚାରକମାନେ ଏ ଧାମକୁ ଆକୃଷ୍ଟ ହୋଇ ଆସିଛନ୍ତି । ସକଳ ସମନ୍ୱୟ ସତ୍ତ୍ୱେ ବୈଷ୍ଣବଧର୍ମର ପ୍ରାଧାନ୍ୟ ଫଳରେ ଏହି ଧାମ ଶ୍ରୀ କ୍ଷେତ୍ର ଓ ପୁରୁଷୋତ୍ତମ କ୍ଷେତ୍ର ଭାବରେ ଅଭିହିତ ହୋଇଅଛି ଓ ଦେବତା ପୁରୁଷୋତ୍ତମ ଭାବରେ ମଧ୍ୟ ଅଭିହିତ ହୋଇଛନ୍ତି । ପୁରୁଷୋତ୍ତମ ତତ୍ତ୍ୱ ପରମ୍ପରାର ଦେବତା ଭାବରେ ସେ କୃଷ୍ଣ-ବାସୁଦେବ ଓ ଜଗତର ନାଥ ହୋଇ ସଙ୍ଗରେ ବଳଦେବ ଓ ସୁଭଦ୍ରାଙ୍କୁ ଗ୍ରହଣ କରିବା ସମୀଚୀନ ହୋଇଛି । କ୍ରମେ ଭାରତରୁ ଓ ତେଣୁ ଓଡ଼ିଶାରୁ ବୌଦ୍ଧଧର୍ମର ପ୍ରଭାବ ଲୋପ ପାଇବା ଫଳରେ ଓ ବ୍ରାହ୍ମଣ୍ୟ ଧର୍ମର ନିରବଚ୍ଛିନ୍ନ ପ୍ରବାହ ଫଳରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ବ୍ରାହ୍ମଣ୍ୟ ଧର୍ମର ଦେବତା ହୋଇ ଯାଇଛନ୍ତି । ବ୍ରାହ୍ମଣ୍ୟଧର୍ମର ଦେବତା ଭାବରେ ତାଙ୍କୁ ପ୍ରତିପାଦିତ ଓ ପ୍ରତିଷ୍ଠିତ କରିବା ପାଇଁ ବହୁଳ ପରିମାଣରେ ବୈଷ୍ଣବ ଗ୍ରନ୍ଥ ରଚିତ ହୋଇଛି । ତଥାପି ଜଗନ୍ନାଥଙ୍କ ମଧ୍ୟରୁ ବୌଦ୍ଧସତ୍ତା ବିସ୍ମୃତ ହେବାର ନୁହେଁ । ସାରଳା ଦାସ, ଜଗନ୍ନାଥ ଦାସ, ଅଚ୍ୟୁତାନନ୍ଦ ଦାସ ପ୍ରଭୃତି କବିମାନଙ୍କ ରଚନାରେ, ଅର୍ଥାତ ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟରେ ଜଗନ୍ନାଥଙ୍କ ବୌଦ୍ଧରୂପ ସ୍ୱୀକୃତ ହୋଇଛି । ସପ୍ତଦଶ ଶତାବ୍ଦୀରୁ କ୍ରମଶଃ ଜଗନ୍ନାଥଙ୍କ ବୌଦ୍ଧ-ସତ୍ତା ନିଷ୍ପ୍ରଭ ହୋଇଆସିଛି । ଜଗନ୍ନାଥଙ୍କ ଭିତରେ ଯେ ଶବର ସଂସ୍କୃତିର ସ୍ରୋତ ତଥାପି ଅନ୍ତଃସଳିଳା ଫଲ୍‌ଗୁ ପରି ପ୍ରବାହିତ ଏକଥା ଅବଶ୍ୟ ସ୍ୱୀକାର୍ଯ୍ୟ । ଶବରର 'ଦାରୁ ଜଗନ୍ତ' ବୈଷ୍ଣବର 'ଦାରୁବ୍ରହ୍ମ ଜଗନ୍ନାଥ' ବୈଷ୍ଣବ ଶବରର ଦାରୁକୁ ଗ୍ରହଣ

ଲକ୍ଷିନେବାରେ ସମୀଚୀନତା ଓ ସମର୍ଥନ ସନ୍ଧାନ କରିଛି ଋଗ୍‌ବେଦରେ, ଯେଉଁଠି ବର୍ଣ୍ଣିତ ହୋଇଛି—'ସେହି ବନ କିଏ ଓ ସେହି ବୃକ୍ଷ କିଏ, ଯାହା ସାହାଯ୍ୟରେ ଏହି ଆକାଶ ପୃଥିବୀ ତଥା ସ୍ୱର୍ଗ ବିଶ୍ୱ ବ୍ରହ୍ମାଣ୍ଡ ସୃଷ୍ଟି ଲାଭ କରିଛି । କେଉଁ ସ୍ଥାନରେ ବସି ସେହି ଈଶ୍ୱର ଏ ସବୁକୁ ସୃଷ୍ଟି କରିଥିଲେ ? (୨୬୧) ବ୍ରାହ୍ମଣ୍ୟ ଦାରୁପୂଜାକୁ ନିଜ ପରମ୍ପରାର ପରିପନ୍ଥୀ ବୋଲି ଭାବି ପାରିନାହିଁ । ଜଗନ୍ନାଥଙ୍କୁ ନିଜର ମୌଳିକ ସଂପଦ ବୋଲି ଯେତେ ଚେଷ୍ଟା କଲେ ମଧ୍ୟ ବ୍ରାହ୍ମଣ୍ୟ ଧର୍ମ ଶବରଙ୍କୁ, ସ୍ୱୀକୃତି ଦେଇଛି । ଜଗନ୍ନାଥଙ୍କ ପୂଜାବିଧାନ ଓ ରଥଯାତ୍ରାବେଳେ ଶବର ବଂଶଧର ଦଇତାମାନଙ୍କର ଭୂମିକାରେ ତାହା ପ୍ରମାଣିତ ହେଉଛି । ମୂଳ ବା ଗର୍ଭ ଯାହା ହେଉନା କାହିଁକି ଜଗନ୍ନାଥ ଧର୍ମର ମହାଦ୍ରୁମ ବାହ୍ୟତଃ ଶାଖା-ପ୍ରଶାଖା-ଫୁଲ ଫଳ ଧାରଣ କରି ବର୍ତ୍ତମାନ 'ବୈଷ୍ଣବ' ଭାବରେ ଦୃଶ୍ୟମାନ ହେଉଅଛି । ବାହ୍ୟ ଦୃଶ୍ୟ ଅନ୍ତରାଳରେ ତାର ପ୍ରାଣ-ନିର୍ଯ୍ୟାସ ସନ୍ଧାନ କରିବା ବାସ୍ତବରେ ଏକ କଷ୍ଟ-ସାଧ୍ୟ ବ୍ୟାପାର । ଜଗନ୍ନାଥଙ୍କ ସଂପର୍କରେ କୌଣସି ସିଦ୍ଧାନ୍ତ ସ୍ୱୟଂସଂପୂର୍ଣ୍ଣ ବା ଅପରିବର୍ତ୍ତନୀୟ ନୁହେଁ । ପ୍ରକୃତରେ ଜଗନ୍ନାଥ ବଡ଼ ରହସ୍ୟମୟ ଓ ଏହି ରହସ୍ୟମୟତାରେହିଁ ତାଙ୍କର ଅପରିମେୟ ମହତ୍ତ୍ୱ ନିହିତ ।

—o—

# ଜଗନ୍ନାଥ ଚେତନାର କେତୋଟି ବିଭବ

ଜଗନ୍ନାଥ ଏକ ଚେତନାର, ଚିନ୍ତାଧାରର, ସଂସ୍କୃତିର ସଂକେତ । ବିଶ୍ୱପ୍ରେମ, ଶାନ୍ତି, ସାମ୍ୟ, ମୁକ୍ତି ଓ ଅନନ୍ତ ବ୍ୟାପ୍ତିର ପ୍ରତୀକ । ସେ ଜଗତର ନାଥ ଅର୍ଥାତ୍ ଅସୀମ ବିଶ୍ୱବ୍ରହ୍ମାଣ୍ଡର ଈଶ୍ୱର । ସେ ସର୍ବବ୍ୟାପୀ ଭୂମା, ସେ ସାର୍ବଭୌମ । ଜଗନ୍ନାଥ 'ଅପାଣିପାଦ' ହେବା ମୂଳରେ ରହିଛି ଏହି ଚେତନା । ତାଙ୍କର ଆରମ୍ଭ ନାହିଁ, ତାଙ୍କର ଶେଷ ନାହିଁ । ସେ ଅନାଦି, ସେ ଅଶେଷ । ପୁଣି ତାଙ୍କର ଯେଉଁ ଦୁଇଟି ବାହୁର କଳ୍ପନା କରଯାଇଛି ତାହା ସମାନ୍ତରାଳ । ଦୁଇ ସମାନ୍ତରାଳ ସରଳ ରେଖାର ମିଳନ ଏକ ଅନନ୍ତ ବିନ୍ଦୁରେ । ଜଗନ୍ନାଥଙ୍କର ପରମ ଓ ଚରମ ସତ୍ତା ସେହି ଅନନ୍ତ ବିନ୍ଦୁରେ ହିଁ ଉପଲବ୍ଧି କରିହୁଏ । ସେ ଅରୂପ ପୁଣି ସରୂପ । ସେ ନିର୍ଗୁଣ, ପୁଣି ସଗୁଣ । ବ୍ରହ୍ମ ରୂପରେ ତାଙ୍କର ପରିକଳ୍ପନା । ଦେହାତୀତର ଚେତନାକୁ ଦେହ ଭିତରେ ଚେତେଇ ଦେବା ପାଇଁ ବିଭିନ୍ନ ରୂପରେ ପ୍ରତିଷ୍ଠିତ ଦେହର କଳ୍ପନା କରଯାଇଛି– ସେ 'ଜଗନ୍ନାଥ' । ବୈଷ୍ଣବ ତାଙ୍କୁ ଦେଖିଛି ବିଷ୍ଣୁ ରୂପରେ, ବୌଦ୍ଧ ଦେଖିଛି ବୁଦ୍ଧ ରୂପରେ, ଶୈବ ଦେଖିଛି ଶିବ ରୂପରେ, ଗାଣପତ୍ୟ ଦେଖିଛି ଗଣପତି ରୂପରେ । ପୁଣି ବୈଷ୍ଣବମାନେ ତାଙ୍କୁ କଳ୍ପନା କରିଛନ୍ତି କେତେବେଳେ ଶଙ୍ଖ ଚକ୍ର ଗଦା ପଦ୍ମଧାରୀ ମହାବିଷ୍ଣୁ ରୂପରେ, କେତେବେଳେ କୃଷ୍ଣ ରୂପରେ, କେତେବେଳେ ରାମଚନ୍ଦ୍ର ରୂପରେ । ତେଣୁ ଜଗନ୍ନାଥ କୌଣସି ଏକ ନିର୍ଦ୍ଦିଷ୍ଟ ସତ୍ତା, ସୀମା ବା ରୂପରେ ଆବଦ୍ଧ ନୁହନ୍ତି ।

ଗୋଟିଏ ବଳୟ ଭିତରେ, ଗୋଟିଏ ବୁଦ୍ଧି ଭିତରେ ତାଙ୍କର ସ୍ଥିତି କଳ୍ପନା କରଯାଇ ପାରେନା । ଏକରୁ ଅନେକରେ, ବ୍ୟଷ୍ଟିରୁ ସମଷ୍ଟିରେ, ଆଞ୍ଚଳିକତାରୁ

ବୈଶ୍ୱଭବରେ, ସଂକୀର୍ଣତାରୁ ପରିବ୍ୟାପ୍ତିରେ ତାଙ୍କୁ ଅନୁଭବ କରିହୁଏ । ବାହୁ ପ୍ରସାରଣ କରି ଜଗନ୍ନାଥ ସତେ ଯେମିତି ସମଗ୍ର ବିଶ୍ୱବାସୀଙ୍କୁ ଆଲିଙ୍ଗନ କରିବା ପାଇଁ ଉଦ୍ୟତ ।

ଜଗନ୍ନାଥ ହେଉଛନ୍ତି ବଡଠାକୁର । ଜଗନ୍ନାଥଙ୍କର ଦେଉଳ ହେଉଛି ବଡ଼ ଦେଉଳ, ତାଙ୍କର ଦାଣ୍ଡ ହେଉଛି ବଡଦାଣ୍ଡ, ତାଙ୍କର ପଣ୍ଡା ହେଉଛନ୍ତି ବଡ଼ପଣ୍ଡା, ତାଙ୍କର ଦୀପ ହେଉଛି ମହାଦୀପ, ତାଙ୍କର ଉଦଧି ମହାଉଦଧି (ମହୋଦଧି), ତାଙ୍କର ଶକ୍ତି ମହାଲକ୍ଷ୍ମୀ, ତାଙ୍କର ପ୍ରସାଦ ମହାପ୍ରସାଦ । ବଡ଼ଠାକୁର, ବଡଦେଉଳ ବଡ଼ ଦାଣ୍ଡ, ବଡ଼ ପଣ୍ଡା, ମହାଦୀପ, ମହୋଦଧି, ମହାଲକ୍ଷ୍ମୀ, ମହାପ୍ରସାଦ ଶବ୍ଦ ମଧ୍ୟରେ ରହିଛି ଏକ ମହୀନତାର ଆହ୍ୱାନ । ତେଣୁ ଜଗନ୍ନାଥ ଚେତନା ଭିତରେ ନାହିଁ ସଂକୀର୍ଣତା, ନାହିଁ କ୍ଷୁଦ୍ରତା, ସେଇଠି ବଡତ୍ୱ ବା ମହତ୍ୱ ହେଉଛି ମହତୀ ଚିନ୍ତାଧାରା । ଶ୍ରୀ କ୍ଷେତ୍ର, ସୁଭଦ୍ରା, ବଳଭଦ୍ର, ସୁଦର୍ଶନ ନାମ ଭିତରେ ରହିଛି ସୁ, ସୁନ୍ଦର, ଶିବ ବା ଶୁଭର ସୂଚନା । ନୀଳଚକ୍ର ଚିରନ୍ତନତାର ଚୈତନ୍ୟ । ମୁକ୍ତି ମଣ୍ଡପ, ରତ୍ନମଣ୍ଡପ, କୋଇଲି ବୈକୁଣ୍ଠ, ନାଲିବାନା, ସ୍ୱର୍ଗଦ୍ୱାର ଯଥାକ୍ରମେ ମୁକ୍ତି ଜ୍ଞାନ, ବା ସମୃଦ୍ଧି, ବିକୁଣ୍ଠା ବା ଉଦାରତା, ଅନୁରାଗ ବା ସ୍ନେହ ଓ ସ୍ୱର୍ଗୀୟତା ବା ଦିବ୍ୟଭବର ଦ୍ୟୋତକ ।

ଜଗତରେ କେହି ଅନାଥ, ନିରାଶ୍ରୟ ନ ହୁଅନ୍ତୁ ଏହି ଆଶ୍ୱାସନା ମିଳେ 'ଜଗନ୍ନାଥ' ନାମ ଭିତରେ । ଜଗତର ନାଥ ସେ ଜଗନ୍ନାଥ–ଆଞ୍ଚଳିକ ସୀମା ସରହଦ ଭିତରେ ସେ ସୀମିତ ନୁହନ୍ତି; ସେ ନାଥ, ସେ ନେତା, ସେ ପ୍ରଭୁ ।

ମାନସ ଭିତରେ ଅତିମାନସ ଚେତନା, ମାନବ ଭିତରେ ଅତିମାନବିକତା, ସସୀମ ଦୃଷ୍ଟି ଭିତରେ ଅସୀମ ଦୃଷ୍ଟି, ସସୀମ ସୃଷ୍ଟି ଭିତରେ ଅସୀମ ସୃଷ୍ଟି ଚେତନାର ଜାଗରଣ ପାଇଁ ସତେ ଯେପରି ଓଡ଼ିଆ ଜାତିର ଯୁଗଯୁଗାବ୍ଧି ତପସ୍ୟାର ଫଳଶ୍ରୁତ ହେଉଛନ୍ତି । ତାର ଇଷ୍ଟଦେବତା, ତା ସଂସ୍କୃତିର ପ୍ରାଣସତ୍ତା ଓ ପ୍ରାଣଦେବତା ପ୍ରଭୁ ଜଗନ୍ନାଥ । ତେଣୁ ଓଡ଼ିଆର ସଂସ୍କୃତି ହେଉଛି ଜଗନ୍ନାଥ ସଂସ୍କୃତି । ଏ ସଂସ୍କୃତି 'ଏକ' ଭିତରେ 'ଅନେକ' ଓ 'ଅନନ୍ତ'ର ଭୂୟୋଦର୍ଶନ ପାଇଁ,

ଅନ୍ୟ ପକ୍ଷରେ 'ଅନେକ' ଓ 'ଅନନ୍ତ' ଭିତରେ 'ଏକ'ର ଅନନ୍ୟ ଅନ୍ତଃଦର୍ଶନ ପାଇଁ ଜଗନ୍ନାଥ ଚେତନାର ସ୍ୱରୂପ ନିରୂପଣ କେବଳ ସେହି ଚେତନାରେ ହିଁ ସମ୍ଭବ, ବାସ୍ତବ ସତ୍ତା ଭିତରେ ନୁହେଁ । ତଥାପି 'ପ୍ରତୀକ' ସତ୍ତା 'ପ୍ରକୃତ' ସତ୍ତାର ପ୍ରତିଫଳନ ବା ପ୍ରତିବିମ୍ବନ ଭାବରେ ମୂଳ ଚେତନାର ଉପଲବ୍ଧିରେ କେତେକ ପରିମାଣରେ ସହାୟକ ହୋଇଥାଏ । ଜଗନ୍ନାଥଙ୍କ ସହିତ ସମ୍ପୃକ୍ତ ଅନେକ ଉପାଦାନ ଭିତରେ ଜଗନ୍ନାଥ-ଚେତନାର ମହତ୍ୱ ପ୍ରତିଫଳିତ । ସେ ସବୁର ଉପସ୍ଥାପନ ଏକ ବ୍ୟାପକ ଗବେଷଣାର ବିଷୟ । ଗୋଟିଏ ଗୋଟିଏ ପ୍ରତୀକ ଭିତରେ ଜଗନ୍ନାଥ ଚେତନା ବା ସଂସ୍କୃତିର କିପରି ମୁଦ୍ରାଙ୍କନ ହୋଇଛି, ତାହା ଲକ୍ଷ୍ୟ କରଯାଉ ।

## ତ୍ରିମୂର୍ତ୍ତି ଓ ଚତୁର୍ଦ୍ଧା ମୂର୍ତ୍ତି

ଜଗନ୍ନାଥ ଉପାସନାରେ 'ତ୍ରିମୂର୍ତ୍ତି' ପରିକଳ୍ପନା ସାର୍ବଜନୀନ ମୈତ୍ରୀ, ସାମ୍ୟ ଓ ସମନ୍ୱୟର ଅନନ୍ୟ ଅନ୍ୱୟ ପରି ମନେ ହୁଏ । ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଯଥାକ୍ରମେ କୃଷ୍ଣ, ଶ୍ୱେତ ଓ ପୀତ ବର୍ଣ୍ଣ ବିଶିଷ୍ଟ । ଏମାନେ ପୃଥିବୀର ତିନି ବର୍ଣ୍ଣର ମନୁଷ୍ୟ ଭିତରେ ସାମ୍ୟ ଓ ମୈତ୍ରୀ ପ୍ରତିଷ୍ଠା ପାଇଁ ତିନୋଟି ସାଙ୍କେତିକ ରୂପ । ଆଫ୍ରିକା ଓ ଭାରତର କୃଷ୍ଣାଙ୍ଗ, ୟୁରୋପ ଓ ଆମେରିକାର ଶ୍ୱେତାଙ୍ଗ, ଚୀନ ଓ ତିବ୍ବତର ପୀତାଙ୍ଗ ଭିତରେ ମିଳନର ଅଭିମନ୍ତ୍ର ଶୁଣାଇବା ପାଇଁ ଏମାନେ ଅବତୀର୍ଣ୍ଣ । (୨୬୨) ଚତୁର୍ଦ୍ଧା ମୂର୍ତ୍ତି ଭିତରେ ମଧ୍ୟ ଏହି ମିଳନର ଚିନ୍ତାଧାରା ରହିଛି । ଜଗନ୍ନାଥ ବଳଭଦ୍ର ଓ ସୁଭଦ୍ରାଙ୍କ ସଙ୍ଗକୁ ଚତୁର୍ଥ ମୂର୍ତ୍ତି ଭାବରେ ରହିଛନ୍ତି ସୁଦର୍ଶନ । ସୁଦର୍ଶନଙ୍କ ବର୍ଣ୍ଣ ଲୋହିତ । ସେ ଲୋହିତ ଭାରତୀୟ ଜାତିର ସଙ୍କେତ । ପୃଥିବୀରେ ବାସ୍ତବତଃ କୃଷ୍ଣ, ଶ୍ୱେତ, ପୀତ ଓ ଲୋହିତ ଏହି ଚାରିବର୍ଣ୍ଣର ଜାତି ହିଁ ବାସ କରନ୍ତି । କବି ଉପେନ୍ଦ୍ର ଭଞ୍ଜଙ୍କର ଜଗନ୍ନାଥ ପ୍ରଶସ୍ତି ଭିତରେ ଥିବା "ସେ କମ୍ବୁ କଟକ ଗଜାନାମ ଜଗନ୍ନାଥ । ଚାରିବର୍ଣ୍ଣେ ଚଉବର୍ଗ ଦେବାକୁ ସମର୍ଥ" (୨୬୩) ପଦରେ ଏହି ଚାରିବର୍ଣ୍ଣକୁ ଲକ୍ଷ୍ୟ କରଯାଇଥିବା ଅନୁମାନ କରଯାଇପାରେ । ସମଗ୍ର ବିଶ୍ୱବାସୀଙ୍କୁ ସ୍ଥୂଳତଃ ଚାରିଶ୍ରେଣୀରେ ବିଭକ୍ତ କରଯାଇପାରେ ଏବଂ ଏହି ଚାରି ଜାତିର ମାନବ ସଂସ୍କୃତିର ସମନ୍ୱିତ ରୂପ ଜଗନ୍ନାଥ ସଂସ୍କୃତିରେ ଲକ୍ଷଣୀୟ । ଆଜିର ପୃଥିବୀରେ ଏବେ ବି ରହିଛି ବର୍ଣ୍ଣ ବୈଷମ୍ୟ ଜନିତ ବିଷମ ବିଦ୍ୱେଷ ।

ବର୍ଣ୍ଣ ବିଦ୍ୱେଷର କୁ ପରିମାଣ ମାନବ ସମାଜକୁ କଳଙ୍କିତ କରି ପୃଥିବୀକୁ ଧ୍ୱଂସ ନ କରୁ । ଏହା ହେଉଛି ଜଗନ୍ନାଥ ସଂସ୍କୃତିର ଏକ ଆଦର୍ଶ ପରିକଳ୍ପନା । (୨୬୪) ପୁଣି କେହି କେହି ପ୍ରଣବ ଧ୍ୱନି 'ଓଁ' କୁ ଅ, ଉ, ମ, ଏହି ତିନି ଅକ୍ଷରର ସଂଯୋଗ ରୂପେ ଗ୍ରହଣ କରିଥାନ୍ତି ଓ ଏହି ତିନି ଅକ୍ଷରକୁ ଯଥାକ୍ରମେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କର ସଂକେତ ବୋଲି ବିଚାର କରିଥାନ୍ତି । ତେଣୁ ଜଗନ୍ନାଥ, ବଳଭଦ୍ର ସୁଭଦ୍ରା ଏହି ତିନି ମୂର୍ତ୍ତି ସୃଷ୍ଟିର ଆଦି ବୀଜ ରୂପେ ଗୃହୀତ ହୋଇପାରନ୍ତି ।

## ପୁରୁଷୋତ୍ତମ

ଜଗନ୍ନାଥଙ୍କର ଅନ୍ୟ ନାମ ପୁରୁଷୋତ୍ତମ । ତାଙ୍କ ନାମ ଅନୁସାରେ ତାଙ୍କ ଧାମର ନାମ ମଧ୍ୟ ପୁରୁଷୋତ୍ତମ । ଜଗନ୍ନାଥ ହିଁ ଭାରତୀୟ ଦର୍ଶନ ଶାସ୍ତ୍ରର 'ପୁରୁଷୋତ୍ତମ ଚେତନା'ର ଅଭିନ୍ନ ରୂପ । ଭାରତୀୟ ଦର୍ଶନ ଶାସ୍ତ୍ରରେ ପୁରୁଷ ଶବ୍ଦ ଆତ୍ମା ଓ ପରମାତ୍ମା ଅର୍ଥରେ ବ୍ୟବହୃତ । ତାହା ଇନ୍ଦ୍ରିୟାତୀତ । ପୁରୁଷ 'ଅମୃତତ୍ୱ'ର ପ୍ରତୀକ । ଅମୃତ-ସନ୍ଧାନୀ ଆର୍ଯ୍ୟ ଋଷିଗଣ ବହୁଧା ଅମୃତ ଆଧାର 'ପୁରୁଷ'ଙ୍କର ସ୍ତବଗାନ କରିଛନ୍ତି । (୨୬୫) ଏହି ପୁରୁଷ ସମସ୍ତ ବିଶ୍ୱର ଆଧାର, ସୃଷ୍ଟି-ସ୍ଥିତି-ଲୟର କାରଣ । ସେ ସହସ୍ରଶୀର୍ଷା, ସହସ୍ରାକ୍ଷ, ସହସ୍ରପାତ୍ ହୋଇ ସମଗ୍ର ବିଶ୍ୱକୁ ଆବିଷ୍ଟ କରି ଅତିକ୍ରମ କରିଯାଇଛନ୍ତି । (୨୬୬) ସେ ସ୍ୱୟଂ ଅମୃତ ଓ ଅମୃତତ୍ୱର ନିୟାମକ, ସେ ପୂର୍ଣ୍ଣ, ପୂର୍ଣ୍ଣତର, ପୂର୍ଣ୍ଣତମ, ଅପରିମେୟ ପୂର୍ଣ୍ଣ ପୂର୍ଣ୍ଣରୁ ପୂର୍ଣ୍ଣ ବାଦ୍ ଦେଲେ ଯାହା ଅବଶିଷ୍ଟ ରହେ ତାହା ମଧ୍ୟ ପୂର୍ଣ୍ଣ ।

ଓଁ ପୂର୍ଣ୍ଣମିଦଃ ପୂର୍ଣ୍ଣମିଦଂ ପୂର୍ଣ୍ଣାତ୍ ପୂର୍ଣ୍ଣମୁଦଚ୍ୟତେ
ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବାବଶିଷ୍ୟତେ ।" (୨୬୭)

ଏହି ବିନାଶଶୀଳ ଶରୀରରୁ ଅତୀତ ଓ ଅକ୍ଷର ଜୀବାତ୍ମାରୁ ଅଧିକ ଶ୍ରେୟ ପୁରୁଷଙ୍କୁ ପରମାତ୍ମା ଭାବରେ ଅଭିହିତ କରାଯାଇଛି । ସେ କ୍ଷରରୁ ଅତୀତ, ଅକ୍ଷରରୁ ଅତୀତ ଉତ୍ତମ ପୁରୁଷ 'ପୁରୁଷୋତ୍ତମ ।'

"ଯସ୍ମାତ୍ କ୍ଷରମତୀତୋଽହମକ୍ଷରାଦପି ଚୋତ୍ତମଃ
ଅତୋଽସ୍ମି ଲୋକେ ବେଦେ ଚ ପ୍ରଥିତଃ ପୁରୁଷୋତ୍ତମଃ ।" (୨୬୮)

କାଳକ୍ରମେ ଏହି ପୁରୁଷୋତ୍ତମ-ଚେତନାକୁ ଆଧାର କରି ଓଡ଼ିଶାରେ ଗଢ଼ି ଉଠିଲା ଏକ ଅନବଦ୍ୟ ସଂସ୍କୃତି, ତାହା 'ପୁରୁଷୋତ୍ତମ ସଂସ୍କୃତି' ବା ଜଗନ୍ନାଥ ସଂସ୍କୃତି' । ଏ ସଂସ୍କୃତିରେ ମୃତ୍ୟୁର ଚିନ୍ତା ଅପସରି ଯାଏ । ଜୀବନ ପ୍ରତି ଅମୃତ ଦୃଷ୍ଟିକୋଣ ସଂପ୍ରସାରିତ ହୋଇଯାଏ । ଜୀବନରେ ଅମୃତର ସ୍ୱାଦ ଆସ୍ୱାଦନା କରି ହୁଏ—ସେଇଠି ନାହିଁ ମୃତ୍ୟୁର ଭାବନା, ଶୋକ ଓ ଶୋଚନା, ନିରାଶା ଓ ମ୍ରିୟମାଣତା । ସେଇଠି ଏକ ଅନନ୍ତ ଜାଗରଣ ଓ ଜ୍ୟୋତି ଜୀବନକୁ ଚିର ସଂଜୀବିତ ଓ ଉର୍ଜସ୍ୱଳ କରି ରଖେ । ଓଡ଼ିଶାବାସୀ ଜଗନ୍ନାଥଙ୍କ ଭିତରେ ଏହି ଅମୃତତ୍ତ୍ୱର ସନ୍ଧାନ ପାଇଥିଲେ ବୋଲି ତାହାଙ୍କୁ 'ସର୍ବବିଶ୍ୱରେ' ପରିବ୍ୟାପ୍ତ ପରଂବ୍ରହ୍ମ ସ୍ୱରୂପୀ ପୁରୁଷୋତ୍ତମ' ବୋଲି ବନ୍ଦନା କରିଛନ୍ତି । ଅନନ୍ତ ବର୍ମା ଚୋଡ଼ଗଙ୍ଗ ଦେବଙ୍କର ଏକ ତାମ୍ରଲେଖ ଏହାର ପ୍ରମାଣ ।

" ପାଦୌ ଯସ୍ୟ ଧରାନ୍ତରୀକ୍ଷମଖିଳଂ
ନାଭିସ୍ତୁ ସର୍ବାଦିଶଃ
ଶ୍ରୋତ୍ରେ ନେତ୍ରଯୁଗଂ ରବୀନ୍ଦୁ ଯୁଗଳଂ
ମୂର୍ଦ୍ଧାପିଚ ଦ୍ୟୌରସୌ
ପ୍ରସାଦଂ ପୁରୁଷୋତ୍ତମସ୍ୟ ନୃପତେଃ କୋ ନାମ
କର୍ତ୍ତୁଂ କ୍ଷମଃ
ତସ୍ୟୋତ୍ୟାଦ୍ୟନ୍ନପୌରୁପେକ୍ଷିତମୟଂ
ଚକ୍ରେଥ ଗଙ୍ଗେଶ୍ୱରଃ । (୨୬୯)

ଉପନିଦ୍‌ମାନଙ୍କରେ 'ପୁରୁଷ'ଙ୍କୁ ଅପାଣିପାଦ, ଅଚକ୍ଷୁ, ଅକର୍ଣ୍ଣ ଆଦିଭାବରେ ବର୍ଣ୍ଣନା କରାଯାଇ ତାହାଙ୍କୁ ସର୍ବଂଗମ, ସର୍ବଦ୍ରଷ୍ଟା ଓ ସର୍ବଶ୍ରୋତା ଭାବରେ ପ୍ରମାଣ କରାଯାଇଅଛି ଯଥା :-

'ଅପାଣିପାଦୋ ଯବନୋଗ୍ରହୀତା
ପଶ୍ୟତ୍ୟଚକ୍ଷୁ ସ ଶୃଣୋତ୍ୟକର୍ଣ୍ଣଃ ।
ସ ବେତ୍ତି ବେଦ୍ୟଂ ନ ଚ ତସ୍ୟାସ୍ତି ବେତ୍ତା
ତମାହୁ ଆଗଧ୍ୟଂ ପୁରୁଷଂ ମହାନ୍ତମ୍ ।" ୨୭୦)

"ଅପାଣିପାଦୋହଂଅଚିନ୍ତ୍ୟଶକ୍ତିଃ
ପଶ୍ୟାମ୍ୟଚକ୍ଷୁ ଶୃଣୋମ୍ୟକର୍ଣ୍ଣଃ
ଅହଂ ବିଜାନାମି ବିବିକ୍ତ ରୂପୋ
ନ ଚାସ୍ତି ବେତ୍ତା ମମ ଚିତ୍ସଦହମ" । (୨୭୧)

ଉପନିଷଦମାନଙ୍କରେ ବର୍ଣ୍ଣିତ ଏହି ପୁରୁଷଙ୍କର ସ୍ୱରୂପ ସହିତ ପୁରୁଷୋତ୍ତମ ଶ୍ରୀ ଜଗନ୍ନାଥଙ୍କର ସ୍ୱରୂପ ଅଭିନ୍ନ ପ୍ରତିଭାତ ହେଉଅଛି ।

ନିଖିଳ ବିଶ୍ୱପାଇଁ ଆତ୍ମା-ପୁରୁଷର ପୂର୍ଣ୍ଣତା ପ୍ରାପ୍ତି ଓ ଆତ୍ମୋତ୍ସର୍ଗ ହିଁ ହେଉଛି ଉତ୍ତମ ପୁରୁଷ ବା ପୁରୁଷୋତ୍ତମର ଲକ୍ଷଣ, ଅର୍ଥାତ୍ ବିଶ୍ୱଚେତନା ହିଁ ପୁରୁଷୋତ୍ତମ ଚେତନା । ଜଗନ୍ନାଥ ସଂସ୍କୃତିର ପୁରୁଷୋତ୍ତମ ଚେତନା ଭିତରେ ରହିଛି ଏହି ବିଶ୍ୱୈକପ୍ରାଣତା (୨୭୨)

## ନୀଳଚକ୍ର :-

ଜଗନ୍ନାଥ ମନ୍ଦିର ଚୂଡାରେ ଶୋଭିତ ବିଶାଳ ନୀଳଚକ୍ର ଜଗନ୍ନାଥ ସଂସ୍କୃତିର ବହୁମୁଖୀ ବିଚାରଧାରାକୁ ନେଇ ଗଠିତ ଓ ପ୍ରତିଷ୍ଠିତ । ନୀଳଚକ୍ର ଗତିର ସୂଚନା ଦିଏ । ଚକ୍ର ସହିତ ଘୂର୍ଣ୍ଣନ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ । ଘୂର୍ଣ୍ଣନ ପ୍ରଖର ଗତିର, ପୂର୍ଣ୍ଣଗତିର, ପରିକ୍ରମା-ଗତିର ସୂଚନା । ଏହି ଚକ୍ର ପୁଣି ଅଧର୍ମ ଛେଦନର ପ୍ରତୀକ ।

ଚକ୍ର ପରିପୂର୍ଣ୍ଣତାର, ଅଖଣ୍ଡତାର ପ୍ରତୀକ । ନୀଳଚକ୍ର ପରିପୂର୍ଣ୍ଣତା (Perfection)ର ବାର୍ତ୍ତା ବହନ କରୁଅଛି । ଆଜିର ବିଶ୍ୱକୁ ଏ ବାର୍ତ୍ତା ଏକ ଆହ୍ୱାନ । ଚକ୍ର ପୁଣି ସବୁ ଦିଗରୁ ସମାନତା (ସମାନ ଗୁରୁତ୍ୱ, ସମାନ ମହତ୍ତ୍ୱ, ସମାନ ମର୍ଯ୍ୟାଦା, ସମାନ ସୁଯୋଗ, ସମାନ ଅଧିକାର ପ୍ରଭୃତି ର ସୂଚନା ଦେଇ-ଥାଏ । ବିଶ୍ୱ ଆଗରେ ସାମ୍ୟବାଦର ବାର୍ତ୍ତା ପ୍ରଚାର କରେ ନୀଳଚକ୍ର । (୨୭୩)

ବ୍ୟାବହାରିକ ନୀତିବାକ୍ୟରେ ଅଛି— 'ଚକ୍ରଂ ସେବ୍ୟଂ ନୃପଃ ସେବ୍ୟଃ ନ ସେବ୍ୟୋ ନୃପ କେବଳଃ ।' ଏଠାରେ ଚକ୍ର ଏକ 'ଜୀବନ ଗୋଷ୍ଠୀ'ର ବା ପ୍ରଜା ଚକ୍ରର ପରିଚାୟକ, ଯେଉଁ ଜୀବନଗୋଷ୍ଠୀ ଚକ୍ରକୁ ନେଇ ଶାସନକଳ ପରିଚାଳିତ

ହୁଏ । ଶାସକ ଏହି ଚକ୍ରକୁ ଅବହେଳା ପ୍ରଦର୍ଶନ କଲେ ଶାସନକଳ ଅଚଳ ହୋଇଯିବ । ପୁରୁଷୋତ୍ତମ କ୍ଷେତ୍ରରେ ଓ ସର୍ବୋପରି ପୁରୁଷୋତ୍ତମ ରାଷ୍ଟ୍ରରେ 'ପ୍ରଜାଚକ୍ର' ଏହି ମର୍ଯ୍ୟାଦା ଲାଭ କରିଛି । (୨୭୪) ଜଗନ୍ନାଥଙ୍କର ସମସ୍ତ ବିଜେ ପଟୁଆରରେ ରାଜା ନୁହନ୍ତି, ପ୍ରଜାଚକ୍ରର ପ୍ରତିନିଧି ଚକ୍ରଲେଙ୍କା (ବୁଢ଼ାଲେଙ୍କା) ନୀଳଚକ୍ରକୁ ହସ୍ତରେ ଧାରଣ କରି ଆଗେ ଆଗେ ଗ୍ଭଲିଲେ ପଟୁଆର ଆରମ୍ଭ ହୁଏ (୨୭୫) 'ନୀଳଚକ୍ର' ଗଣର ପ୍ରତୀକ ହୋଇଥିବାରୁ ଗଙ୍ଗବଂଶର ବୈଷ୍ଣବ ରାଜା ମାନେ ଏହାକୁ 'ଗଣପ୍ରତୀକ' ଭାବରେ ସମସ୍ତ ପ୍ରାସାଦରେ ସ୍ଥାପନ କରିଅଛନ୍ତି ଓ ପୁରୁଷୋତ୍ତମ ପୀଠର ମୁଦ୍ରା (ରାଜକୀୟ ମୋହର) ଭାବରେ ବ୍ୟବହାର କରିଛନ୍ତି । ତେଣୁ ନୀଳଚକ୍ର ଭିତରେ ରହିଛି 'ଜଣ' ବା 'ବ୍ୟଷ୍ଟି'ରୁ 'ଗଣ' ବା 'ସମଷ୍ଟି' ଆଡ଼କୁ ଅଭିମୁଖୀନ ହେବାର ସଂକେତ । (୨୭୬)

'ନୀଳଚକ୍ର'ରେ ରହିଥିବା 'ନୀଳ' ଶବ୍ଦ ଅତୀବ ମହତ୍ତ୍ୱପୂର୍ଣ୍ଣ । କେବଳ 'ଚକ୍ର' ପାଇଁ 'ନୀଳ' ଶବ୍ଦ ନୁହେଁ, ଜଗନ୍ନାଥ ଧାମର ବିଭିନ୍ନ ନାମରେ ମଧ୍ୟ ନୀଳ ଶବ୍ଦ ରହିଛି, ଯଥା– ନୀଳାଚଳ, ନୀଳଗିରି, ନୀଳଶୈଳ ପ୍ରଭୃତି । ଜଗନ୍ନାଥ ମଧ୍ୟ ପୂର୍ବରୁ ନୀଳମାଧବ ଭାବରେ ଉପାସିତ ହେଉଥିଲେ । ନୀଳ ଶବ୍ଦ ଦାର୍ଶନିକ ବ୍ୟଞ୍ଜନାରେ ରହସ୍ୟମୟ । କଳା ଓ ନୀଳ ଶବ୍ଦ ଉଭୟେ ଗୋଟିଏ ଅର୍ଥର ଦ୍ୟୋତକ ଦୀନକୃଷ୍ଣ ରସକଲ୍ଲୋଳରେ ଲେଖିଛନ୍ତି–"କଳା ପର୍ବତରେ ଲୀଳା କରି ଅନେକ । କଲେ ଇଚ୍ଛା ମନେ ହେବା କଂସ ଅନ୍ତକ ।" (୨୭୭) ତେଣୁ କଳା ଓ ନୀଳ ଏକ ଅର୍ଥ-ପର୍ଯ୍ୟାୟବାଚୀ ।

'କଳା' 'କାଳ' ଶବ୍ଦର ରୂପାନ୍ତର । ଜଗନ୍ନାଥ ମହାକାଳର ପ୍ରତୀକ । (୨୭୮) ତେଣୁ କଳା ନୀଳଚକ୍ର ସ୍ୱୟଂ ଜଗନ୍ନାଥଙ୍କର ପ୍ରତୀକ, ତେଣୁ ମହାକାଳର ପ୍ରତୀକ ଓ ସେଇ ହେତୁରୁ ନୀଳ ବା କଳା ।

ଯାହା ଅନନ୍ତ, ଅସୀମ ତାହା କଳା, ଯେପରି ଅନନ୍ତ ଆକାଶ, ଅନନ୍ତ ସମୁଦ୍ର ଅନନ୍ତ ବନାନୀ । ନୀଳଚକ୍ର ଅନନ୍ତତ୍ୱର ପ୍ରତୀକ, ତେଣୁ ନୀଳ ।

## ମହାପ୍ରସାଦ :-

ପ୍ରସାଦର ଅର୍ଥ ଆନନ୍ଦ, ପ୍ରୀତି, ପ୍ରେମ, ପ୍ରସନ୍ନତା, ନିର୍ମଳତା, ପବିତ୍ରତା ଓ ପାବକତା । ଜଗନ୍ନାଥଙ୍କ ପ୍ରସାଦର ନାମ ମହ ପ୍ରସାଦ । ଏହା ମହାନନ୍ଦ, ମହାପ୍ରେମ, ମହାଭାବ, ମହା ପବିତ୍ରତା ଆଦିର ପରିଚାୟକ । ଜଗନ୍ନାଥଙ୍କ ପ୍ରସାଦ ପୁଣି କୈବଲ୍ୟ ଓ ନିର୍ମାଲ୍ୟ ଭାବରେ ଅଭିହିତ । 'କେବଳ' ଶବ୍ଦରୁ କୈବଲ୍ୟ ଶବ୍ଦର ସୃଷ୍ଟି । ଏହାର ଅର୍ଥ ହେଉଛି, ଏକମାତ୍ର ପରମ ପଦାର୍ଥ । ମୁକ୍ତି ବା ଭଗବତ୍ ସାନିଧ୍ୟ ଯାହା କିଛି ଭକ୍ତର ପରମ ପଦାର୍ଥ ବା ପରମ କାମନା, କୈବଲ୍ୟ ଭିତରେ ରହିଛି ତାହାରି ପ୍ରାପ୍ତି । ଏହି 'ମୁକ୍ତି' କୈବଲ୍ୟ ଭିତରେ ନିହିତ ରହିଛି ବୋଲି କବି ଉପେନ୍ଦ୍ର ଭଞ୍ଜ ଗାଇଥିଲେ-

"ମୁକ୍ତି ଦେବା ଗୁପ୍ତ ହୋଇଅଛି ଯୁକ୍ତାକ୍ଷରେ" (୨୭୯)

ଜଗନ୍ନାଥଙ୍କ ନାମରେ ଏକମାତ୍ର ଯୁକ୍ତାକ୍ଷର ହେଉଛି 'ନ୍ନ' । ଏହାକୁ ସ୍ୱତନ୍ତ୍ର ଭାବରେ ଉଚ୍ଚାରଣ କରିହୁଏ ନାହିଁ, ଉଚ୍ଚାରଣ ପାଇଁ ପୂର୍ବରେ ସ୍ୱରବର୍ଣ୍ଣ 'ଅ' ସଂଯୁକ୍ତ କରିବାକୁ ହୁଏ, ଫଳରେ ଉଚ୍ଚାରଣଟି ହୁଏ 'ଅନ୍ନ' । ଏହି ଅନ୍ନ ହେଉଛି କୈବଲ୍ୟ । ମୁକ୍ତି ଦେବା ତତ୍ୱ ଏହି କୈବଲ୍ୟ ଭିତରେ ହିଁ ଗୁପ୍ତ ରହିଅଛି । ଜୈନ ଧର୍ମ ମଧ୍ୟ କୈବଲ୍ୟ ପ୍ରାପ୍ତିରେ ନିର୍ବାଣ ପ୍ରାପ୍ତି ହୁଏ ବୋଲି ବିଶ୍ୱାସ କରେ । ଏହି କୈବଲ୍ୟ ହେଉଛି କେବଳୀ ଭାବ ବା କେବଳୀତ୍ୱ । ଅଜୀବରୁ ଜୀବକୁ ଅଲଗା କରିଦେଲେ ବ୍ୟକ୍ତି ହୋଇଯାଏ କେବଳୀ ବା ନିର୍ବାଣ ପ୍ରାପ୍ତ । (୨୮୦)

ମହାପ୍ରସାଦକୁ କୁହାଯାଏ ନିର୍ମାଲ୍ୟ ଏଥିରେ ରହିଛି ନିର୍ମଳ ଭାବ, ପବିତ୍ରତା ଓ ପାବନକାରତା । ଜଗନ୍ନାଥ ତ ନିଜେ ପାବନକାରକ, ତେଣୁ ନାମ ତାଙ୍କର ପତିତପାବନ ।

ମହାପ୍ରସାଦ ସେବନରେ ନାହିଁ ଉଚ୍ଚ ନୀଚ ଭେଦ ଭାବ, ନାହିଁ ଜାତି ବିଚାରର ସଂକୀର୍ଣ୍ଣତା । ମହାପ୍ରାଣତାର, ମହାମାନବିକତାର ମହାନ୍ ପରିପ୍ରକାଶ ଘଟିଛି 'ମହାପ୍ରସାଦ' ଭିତରେ । ତେଣୁ ଉଦ୍‌ଘୋଷିତ ହୋଇଛି-

"ଜାତି ଭେଦୋ ନ କର୍ତ୍ତବ୍ୟଃ ପ୍ରସାଦେ ପରମାତ୍ମନଃ ।" (୨୮୧) ମହାଭବରେ ଅଭିଭୂତ ହେଲେ ଅପବିତ୍ରତା ଆପେ ଆପେ ଅପସରି ଯାଏ । ଅପବିତ୍ର ଅତଃ ପବିତ୍ର ହୋଇଯାଏ; ଅପବିତ୍ରତାର ମାରାତ୍ମକତା ଦେହ ମନକୁ ସ୍ପର୍ଶ କରି ପାରେ ନାହିଁ । ମହାପ୍ରସାଦ ସେବନରେ ସେହି ମହାଭବର ଉଦ୍ରେକ ରହିଛି, ଫଳରେ ଉଚ୍ଛିଷ୍ଟ ମଧ୍ୟ କ୍ଷତିକାରକ ନ ହୋଇ ଅମୃତରେ ପରିଣତ ହୋଇଯାଏ । ତାହାର ମାହାତ୍ମ୍ୟ ଅବର୍ଣ୍ଣନୀୟ, ଅନିର୍ବଚନୀୟ–

"ନାତ୍ର ବର୍ଣ୍ଣବିଗ୍ରହେଷ୍ଟି ନୋଚ୍ଛିଷ୍ଟାଦି ବିବେଚନମ୍
"ଜିହ୍ବା କୋଟି ସହସ୍ରୈସ୍ତୁ ବକ୍ତ୍ରକୋଟି ଶତୈରପି,
ମହାପ୍ରସାଦ ମହାତ୍ମ୍ୟଂ ବର୍ଣ୍ଣିତୁଂ ନୈବ ଶକ୍ୟତେ ।" (୨୮୨)
"ସୁଧୋପମ ପଚତ୍ୟନ୍ନଂ ଭୁଙ୍କ୍ତେ ନାରାୟଣ ପ୍ରଭୁଃ ।
ତଦୁଚ୍ଛିଷ୍ଟୋପଭୋଗୋ ହି ସର୍ବ ପାପକ୍ଷୟ କାରକଃ ।" (୨୮୩)

## ଆନନ୍ଦ ବଜାର

ମହାପ୍ରସାଦ ଆନନ୍ଦର ପ୍ରତୀକ ବୋଲି ମହାପ୍ରସାଦ ପ୍ରାପ୍ତିର ବଜାର 'ଆନନ୍ଦ ବଜାର' ନାମରେ ଅଭିହିତ । ସେଇଠି ମିଳେ କେବଳ ଆନନ୍ଦ, ମହାନନ୍ଦ । ସେଇଥିପାଇଁ କବି ବନମାଳୀ ଗାଇଥିଲେ–

"ଆନନ୍ଦ ବଜାରେ ବୁଲି ମୁଁ ମଜାରେ ଗାଉଥିବି ତୋର ନାମ
ତୋ ପ୍ରେମ ସାଗରେ ବୁଡ଼ି ଯାଉଥିବି ବୋଲି ହରେ କୃଷ୍ଣ ନାମ ।" । ୨୮୪ ।

## ଶ୍ରୀକ୍ଷେତ୍ର

ଭାରତବର୍ଷର ଚତୁର୍ଦ୍ଧାମ ମଧ୍ୟରେ ତଥା ସମଗ୍ର ବିଶ୍ୱରେ ନୀଳାଚଳ କ୍ଷେତ୍ର 'ଶ୍ରୀ' ଅର୍ଥାତ୍ 'ଶ୍ରେଷ୍ଠ' ହୋଇଥିବାରୁ ଏହା ଶ୍ରୀକ୍ଷେତ୍ର ନାମରେ ସର୍ବଜନବିଦିତ । । ୨୮୫ । ଶ୍ରୀ ହେଉଛି ସୌନ୍ଦର୍ଯ୍ୟ, ଶୋଭନୀୟତା, ସୁଲକ୍ଷଣ, ଶୌର୍ଯ୍ୟ ଓ ସମୃଦ୍ଧିର ସଙ୍କେତ । ଲକ୍ଷ୍ମୀଙ୍କର ଅନ୍ୟ ନାମ ଶ୍ରୀ । 'ଲକ୍ଷ୍ମୀ' ଶବ୍ଦ ମଧ୍ୟରେ ବି ସୁଲକ୍ଷଣର ସୂଚନା ରହିଛି । ତେଣୁ ଶ୍ରୀକ୍ଷେତ୍ର ଏହି ସବୁ ମହତ୍ ଗୁଣଗୁଡ଼ିକର ଉତ୍ତରୋତ୍ତର ଉତ୍ତରଣ ପାଇଁ ଆହ୍ୱାନ ଦେଇଥାଏ । 'ଶ୍ରୀ' ପୁଣି ଆଦ୍ୟ, ପ୍ରଥମ, ସର୍ବପ୍ରଧାନ । ତେଣୁ ସର୍ବୋତ୍କୃଷ୍ଟ ଗୁଣ ନେଇ ସର୍ବୋତ୍ତମ ବା ପୁରୁଷୋତ୍ତମ । ତେଣୁ କୁହାଯାଇଛି–

"ସର୍ବେଷାଂ ଚୈବ ଦେବାନାଂ ରଜା ଶ୍ରୀ ପୁରୁଷୋତ୍ତମଃ
ସର୍ବେଷାଂ ଚୈବ କ୍ଷେତ୍ରାଣାଂ ରଜା ଶ୍ରୀ ପୁରୁଷୋତ୍ତମଃ । ୨୮୬ ।

ପୁରୁଷୋତ୍ତମ ଶବ୍ଦ ଭିତରେ ଯେଉଁ ଉଦ୍‌ବୋଧନ ରହିଛି, ଶ୍ରୀ ଶବ୍ଦ ମଧ୍ୟରେ ବି ସେହି ଉଦ୍‌ବୋଧନ ରହିଛି ।

## ଶରଧା ବାଲି

ଜଗନ୍ନାଥ ଧାମର ବାଲି ଭିତରେ କି ମହାଚେତନାର ମହାଶ୍ରାବଣ ! ତାକୁ ଦେହରେ ବୋଳି, ମଥ ରେ ଟୋକି ଭକ୍ତର ଆଖିରୁ ଝରିଯାଏ ଆନନ୍ଦାଶ୍ରୁର କି ମହାଶ୍ରାବଣ ! ଶରଧା ବାଲିରେ ଗଡ଼ିଯବାରେ କି ମହା ଆନନ୍ଦ । ତେଣୁ କବି ବନମାଳୀ ଜୀବନରେ ଆଉ କିଛି ଗ୍ରହିଁ ନାହାନ୍ତି, କେବଳ ଗ୍ରହିଛନ୍ତି ମୁଠାଏ ବୋଲି ଶରଧା ବାଲି–

"ଜଗନ୍ନାଥ ହେ ! କିଛି ମାଗୁନାହିଁ ତୋତେ
ଧନ ମାଗୁ ନାହିଁ ଜନ ମାଗୁନାହିଁ ମାଗୁଛି ଶରଧା ବାଲିରୁ ହାତେ ।

ଏଇଠି ଶ୍ରୀ ଚୈତନ୍ୟ ଦେବଙ୍କର ଅହୈତୁକୀ ଭକ୍ତି ସମ୍ପର୍କରେ ଉକ୍ତିଟି ମନେପଡ଼େ–

"ନ ଧନଂ ନ ଜନଂ ନ ସୁନ୍ଦରୀଂ କବିତାଂ ବା
ଜଗଦୀଶ ! କାମୟେ
ମମ ଜନ୍ମନି ଜନ୍ମନୀଶ୍ୱରେ ଭଗବତ୍ ଭକ୍ତି-
ରହୈତୁକୀ ତ୍ୱୟି ।"

ଓଡ଼ିଆ କବି ଦୃଷ୍ଟିରେ ଶରଧା ବାଲି ଓ ଅହୈତୁକୀ ଭକ୍ତି ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । ଅହୈତୁକୀ ଭକ୍ତିରେ ମିଳେ ଅପାର ଭଗବତ୍ କରୁଣା । ଶରଧା ବାଲି ହେଉଛି ସେହି ଅଖଣ୍ଡ ଭଗବତ୍ କରୁଣା । 'ଶରଧା ବାଲି'ର ଶରଧା ଶବ୍ଦ ଭିତରେ ରହିଛି ହୃଦୟର ଅସୀମ ସ୍ନେହ, ସୌହାର୍ଦ୍ଦ୍ୟ, ଆବେଗ ଓ ଆଗ୍ରହର ଅସରନ୍ତି ପ୍ରବାହ । ମଣିଷକୁ ମଣିଷ ପ୍ରେମରେ ଆଲିଙ୍ଗନ କରିବା ପାଇଁ, ନିଜ ଭିତରେ ସମଗ୍ର ବିଶ୍ୱସତ୍ତାକୁ ମିଶାଇ ଦେବା ପାଇଁ ଏହା ଭିତରେ ରହିଛି ଶାଶ୍ୱତ ସନ୍ଦେଶ ।

## ପତିତପାବନ

ପୁରୁଷୋତ୍ତମ ସଂସ୍କୃତିରେ ସମାଜର ସର୍ବ ଉଚ୍ଚ ସ୍ତରରେ ଥିବା ମଣିଷ ଓ ସର୍ବନିମ୍ନ ସ୍ତରରେ ଥିବା ମଣିଷ ସମାନ । ସର୍ବନିମ୍ନ ସ୍ତରରେ ଅବହେଳିତ, ଲାଞ୍ଛିତ ଅବନତ ଅବସ୍ଥାରେ ଥିବା ମଣିଷଟିକୁ ଉଚ୍ଚସ୍ତରକୁ ଟାଣି ନେବା, ତାର ପାପ, ତାପ ଅଭାବ, ଅନାଟନରୁ ତାକୁ ଉଦ୍ଧାର କରିବା, ଅପବିତ୍ର ଅବସ୍ଥାକୁ ପବିତ୍ର କରିବା ହେଉଛି ଜଗନ୍ନାଥ ଧର୍ମର ଏକ ବିଶିଷ୍ଟ ଦିଗ । ତେଣୁ ଜଗନ୍ନାଥଙ୍କ ନାମ 'ପତିତପାବନ', ତାଙ୍କ ପତାକାର ନାମ 'ପତିତପାବନ ବାନା' । ପତିତପାବନ ଅର୍ଥରେ ଜଗନ୍ନାଥଙ୍କୁ ଅଗତିର ଗତି, ଅନାଥର ନାଥ, ଦୀନବନ୍ଧୁ, ଆର୍ତ୍ତତ୍ରାଣ ଇତ୍ୟାଦି ସ୍ତବରେ ମଧ୍ୟ ସମ୍ବୋଧନ କରଯାଏ । ଓଡ଼ିଆ କବିମାନେ ଜଗନ୍ନାଥଙ୍କୁ ଏଇ ନାମମାନଙ୍କରେ ସମ୍ବୋଧନ କରିଛନ୍ତି ଓ ପତିତ, ଅଗତି, ଅନାଥ, ଦୀନ, ଆର୍ତ୍ତ ଅବସ୍ଥାରୁ ଉଦ୍ଧାର କରିବା ପାଇଁ ପ୍ରାର୍ଥନା କରିଛନ୍ତି । ତାହାର କେତୋଟି ଦୃଷ୍ଟାନ୍ତ ଏଠାରେ ଉଲ୍ଲେଖ କରଯାଇପାରେ—

୧ । "ଜୟ ନୀଳାଚଳ ନାଥ ଅଗତି-ତାରଣ
ଜୟ ରମାପତି ପ୍ରଭୁ ମାନ ଉଦ୍ଧାରଣ ।
ବଡ଼ ଦେଉଳେ ବସିଛ ହୋଇ ବନ୍ଧୁ ସେଠା
ପତିତପାବନ ବୋଲି ଉଡ଼ାଉଛ ବାନା
ମୁଁ ପତିତ ମୋ ଗୁହାରି ଶ୍ରବଣେ ଅକ୍ଷମ
ଅଜାମିଳ ଠାରୁ ମୁଁ କି ଅଟଇ ଅଧମ ?"— ସାରଳା ଦାସ

୨ । "ଦୀନବାନ୍ଧବ ନାମରେ ଯେଉଁ ବାନା
ଉଡ଼େ ବ୍ରହ୍ମଲୋକ ଯାଏ ।"— ଦୀନକୃଷ୍ଣ ଦାସ

୩ । 'ଆରତ ତାରଣ ଶରଣ ରକ୍ଷଣ
କାରଣେ ବାନା ଉଡ଼ଇ ।"— ବୈଦ୍ୟନାଥ ଦ୍ୱିଜ

୪ । "ସ୍ନାନ ଗୁଣ୍ଡିଚା ଏ ବେନି ସ୍ୱୟଂ ଲୀଳା ଯାର
ପତିତପାବନ ଅର୍ଥେ ପ୍ରସାଦୁଁ ବାହାର ।"— ଉପେନ୍ଦ୍ର ଭଞ୍ଜ

୫ । "ପତିତ ଜନଙ୍କୁ ଉଦ୍ଧାରିବା ପାଇଁ
ଉଡ଼ାଅ ଅଛ ପତାକା ।"— ନିତ୍ୟାନନ୍ଦ ଦାସ

୬ । "ଆରତ ଭଞ୍ଜନ ପତିତପାବନ
ଅନ୍ତାହିଁକି ବଜ୍ରସେହ୍ନା ଅଟଇ ।" — ଚଣ୍ଡୀ ଦାସ

୭ । "ଅନାଥର ନାଥ ଦେବ ଜଗନ୍ନାଥ
ଦେବ ନାକପଦ ମନ ! ଭଜରେ ।"— ବଲ୍ଲଭ ଦାସ

୮ । "ଫିଟାଅ ପତିତପାବନ ବାନାକୁ ଶ୍ରୀ ମଧୁସୂଦନ
ପତିତପାବନ ବାନା ତୁମ୍ଭର
ପତିତମାନଙ୍କୁ କର ଉଦ୍ଧାର ।"— ବୀର କେଶରୀ ଦେବ

୯ । ମୁଁ ଛାର ପତିତ ଭରସା ରଖିଛି
ଶ୍ରୀରଙ୍ଗା ଚରଣ ତଳେ ।"— ବୀର କେଶରୀ ଦେବ

୧୦ । "ପତିତପାବନ ବାନା ଆଜ କେତେ ବେଳକୁ
ଉଷିଗଲି ଭବ ଜଳେ ନାବ ଦିଅ କୂଳକୁ "— ବୀରକେଶରୀ ଦେବ

ପଣ୍ଡିତ ନୀଳକଣ୍ଠ ଦାଶ ମତ ଦେଇଛନ୍ତି—"ପଶ୍ଚିମ ଏସିଆରେ ପ୍ରକାଶ ପାଇଥିବା ଇହୁଦି ଧର୍ମ, ଜୋରୋଥାଷ୍ଟୀୟ ଧର୍ମ, ତତ୍ ପ୍ରସୂତ ଖ୍ରୀଷ୍ଟଧର୍ମ ପ୍ରଭୃତି, ଯେଉଁ ଧର୍ମରେ ପୃଥିବୀର ମହାଶକ୍ତିଶାଳୀ ସମ୍ରାଟ ଦୃଷ୍ଟିରୁ ତା ଠାରୁ ଆହୁରି ବଡ଼, ଆଧ୍ୟାତ୍ମିକ ସମ୍ରାଟ ରୂପେ ଇଶ୍ୱରଟିଏ କଳ୍ପନା କରି ତାଙ୍କରି ଠାରେ ସଂପୂର୍ଣ୍ଣ ଆତ୍ମ ସମର୍ପଣ କରିବା ଓ କରାଇବାରେ ଲାଗିବାକୁ ହୁଏ, ସେ ସବୁ ମୂଳରୁ ସ୍ୱତଃ 'ପତିତପାବନ' ଧର୍ମ । ସେଥିବେ ପାପୀ ମାନବର ତ୍ରାଣ କାର୍ଯ୍ୟରେ ଇଶ୍ୱର ବରାବର ଲାଗିଥାନ୍ତି ଓ ସେଇ ଈଶ୍ୱରଙ୍କର ସେଇ କାର୍ଯ୍ୟ କରିବା ପାଇଁ ତାଙ୍କରି 'ସତ୍ୟ ସମାଚାର' ଆଦେଶ ଓ ଉପଦେଶମାନ ଧରି ଧାର୍ମିକମାନେ ବି ଲାଗି ପଡ଼ିଥାନ୍ତି । ଏ ଧର୍ମ, ଚିନ୍ତା ବା ଦର୍ଶନ ହୀନ, ଦୁଃସ୍ଥ, ପ୍ରପୀଡ଼ିତ ମାନବକୁ ବଡ଼ ସୁଖ ଲାଗେ ଓ ସେ ତାହା ସହଜରେ ଧରି ନିଏ । ତେଣୁ ପୃଥିବୀରେ ଏହି ଧର୍ମର ପ୍ରଭାବ ଇ

ବେଶୀ । ଏଇ ପ୍ରଭାବ ଚିର କାଳ ଭରତ ଦ୍ୱାରରେ ଧକା ଦେଇଛି । ତେଣୁ ଅତି ଆଦିମ କାଳରେ ଏକ ଆଡ଼େ ଏଇ ପ୍ରାକୃତ ଧର୍ମଇ ପତିତପାବନ ଧର୍ମ ଓ ଅନ୍ୟ ଆଡ଼େ ଦାର୍ଶନିକ ଆତ୍ମ ଧର୍ମ ବା ମୈତ୍ରୀ ଧର୍ମ, ପୁଣି ଏଥି ମଧ୍ୟରେ ନାନା ଶାଖା, ପ୍ରଶାଖା ପ୍ରଭାବ ପରିଣତିରେ ଦୁହିଁଙ୍କ ଭିତରେ ଆଦାନ ପ୍ରଦାନର ଇତିହାସ ।...... ଖୁବ୍ ମନେ କରାଯାଇ ପାରେ, ପଶ୍ଚିମର ପତିତପାବନ' ଧର୍ମର ପ୍ରଭାବ ପଡ଼ି, ବୌଦ୍ଧର ନିଗଳନ୍ତ 'ମୈତ୍ରୀ'ରେ ପ୍ରକାଶ ପାଇଥିଲା ମହାଯାନର 'କରୁଣା' ଓ ତହିଁ ସଙ୍ଗେ ବୁଦ୍ଧ ରୂପୀ ଇଶ୍ୱରଙ୍କଣ ଓ ତାଙ୍କ ଭକ୍ତଙ୍କର ପାପ-ତ୍ରାଣର ପ୍ରଚେଷ୍ଟା । ସେଇଥିରୁ ପୁଣି 'ଯୋଗାଗ୍ରର' ବାଟେ କାଳ କ୍ରମେ ନାନା ଶାଖା ପ୍ରଶାଖାରେ ଶାକ୍ତ, ବୈଷ୍ଣବ ଓ ସନ୍ଥ ଧର୍ମମାନଙ୍କର ପ୍ରକାଶ ଓ ପ୍ରତିଷ୍ଠା " (୨୮୭) ପଣ୍ଡିତ ନୀଳକଣ୍ଠଙ୍କର ଦୃଷ୍ଟି କୋଣ ମୌଳିକ ଓ ନିଜସ୍ୱ, କିନ୍ତୁ ଏଥିରେ ସତ୍ୟତା କେତେ ଦୂର ରହିଛି ପରୀକ୍ଷା କରିବାର କଥା । ଜଗନ୍ନାଥ-ଚେତନା ବା ପୁରୁଷୋତ୍ତମ-ଚେତନାର ଉଦ୍ଭବ ମୂଳରେ ରହିଛି ମୈତ୍ରୀ, ସାମ୍ୟ, କରୁଣା ଓ ବିଶ୍ୱଭାବ । ଏଥିରେ ପତିତମାନଙ୍କୁ ଘୃଣା ଦୃଷ୍ଟିରେ ନ ଦେଖି ମୈତ୍ରୀ ଓ ଭ୍ରାତୃତ୍ୱରେ ଅଭିସ୍ନାତ କରି ତାହାକୁ ଉର୍ଦ୍ଧ୍ୱାୟିତ କରିବା ହେଉଛି ମୁଖ୍ୟ ଆଭିମୁଖ୍ୟ । ତେଣୁ ଜଗନ୍ନାଥ ଧାମର 'ପତିତପାବନ ଚେତନା ପଶ୍ଚିମାଗତ ନୁହେଁ, ଏହା ନିଜସ୍ୱ ।

## କୋଇଲିବୈକୁଣ୍ଠ –

'କୋଇଲି' ଏକ ଦ୍ରାବିଡ଼ ଶବ୍ଦ ଯାହାର ଅର୍ଥ ମନ୍ଦିର । ଜଗନ୍ନାଥ ପୀଠ ମନ୍ଦିରର ବୈକୁଣ୍ଠ' । କୁଣ୍ଠା ବିଗତ ହୋଇଅଛି ଯହିଁରୁ ତାହା ବିକୁଣ୍ଠା । ବିକୁଣ୍ଠାର ସ୍ଥାନ ବୈକୁଣ୍ଠ । ଜଗନ୍ନାଥ ପୀଠ ବିକୁଣ୍ଠା ଭବର ପୀଠ । ଏ ବିକୁଣ୍ଠା ସ୍ନେହ-ମମତା ଅର୍ପଣ ପାଇଁ, ମହାମାନବିକତା ପ୍ରଦର୍ଶନ ପାଇଁ, ତ୍ୟାଗ ପାଇଁ, ତିତିକ୍ଷା ପାଇଁ । ଜଗନ୍ନାଥ ଏ ସବୁର ମାର୍ମିକ ପ୍ରତୀକ ।

## ଜଗନ୍ନାଥ ଚେତନାର ପ୍ରେରଣା–

ଜଗନ୍ନାଥଙ୍କ ସହିତ ସଂପୃକ୍ତ ଅଜସ୍ର ଉପାଦାନ ମଧ୍ୟରେ ଜଗନ୍ନାଥ-ଚେତନାର ସ୍ୱରୂପ କିପରି ପାଖୁଡ଼ା ପାଖୁଡ଼ା ଉନ୍ମୋଚିତ ତାହା ଦର୍ଶାଇ ଦିଆଗଲା ।

ଜଗନ୍ନାଥ ଚେତନାର ଏହି ସବୁ ବିଭିନ୍ନ ବିଭବ ଭିତରୁ ଆମେ କ'ଣ ଶିଖୁ ? ନୀଳଚକ୍ର ଆମକୁ ଚେତେଇ ଦିଏ, କେବଳ ସ୍ଥିର ସ୍ଥିତିରେ ଜୀବନର ଅସ୍ତିତ୍ୱ ପ୍ରମାଣିତ ହୁଏ ନା । ଜୀବନର ପ୍ରମାଣ ମିଳେ ଗତିରୁ । ତେଣୁ ଜୀବନରେ ସ୍ଥିରତା ଓ ସ୍ଥବିରତା ପରିବର୍ତ୍ତେ ସ୍ପନ୍ଦନ ଓ ଗତିକୁ ସ୍ୱାଗତ କରିବାକୁ ହେବ । ଯେଉଁଠି ଗତି, ସେଇଠି ଜୀବନ । ଏଇ ଗତି ଯେତେବେଳେ ଅସୀମମୁଖୀ ହୁଏ ସେତେବେଳେ ସେ ହୁଏ 'ପ୍ରଗତି' । ସମୀରଣ ଯେତେବେଳେ କ୍ରମଶଃ ଦୂରକୁ ଦୂରକୁ ଗତି କରିଯାଏ, ସେତେବେଳେ ତାର ପ୍ରଗତି ଲକ୍ଷ୍ୟ କରଯାଏ । ସେହିପରି ଜୀବନ ଯେତେବେଳେ କ୍ରମଶଃ ଏକ ଲକ୍ଷ୍ୟ ପଥରେ ଆଗକୁ ଆଗକୁ ବ୍ୟାପିଯାଏ, ସେତେବେଳେ ତାର ଦେଖା ଦିଏ ପ୍ରଗତି । ପ୍ରଗତି ହିଁ ଉନ୍ନତିର ଲକ୍ଷଣ । ପ୍ରବାହ ହେଉଛି ପ୍ରଗତିର ଏକ ଦୃଶ୍ୟମାନ ରୂପ । ଯେଉଁଠି ପ୍ରଗତି ସେଇଠି ପ୍ରବାହ । ଗତି କରିଯିବାରେ, ବହି ଯିବାରେ ହିଁ ଜୀବନର ସାର୍ଥକତା ଏଇ ପ୍ରଗତିରେ, ଏଇ ପ୍ରବାହରେ କ୍ରମେ ଗତିଶୀଳ 'ଅସୀମ'ରେ ଉପନୀତ ହୁଏ । ଯେଉଁଠି ପ୍ରବାହ ସେଇଠି ପବିତ୍ରତା । ଝରଣା ଝରିଯାଏ ବୋଲି ତହିଁରେ ପଙ୍କିଳତା ନାହିଁ । ସରୋବର ବୃହତ୍ ହେଲେ ହେଁ ସ୍ଥିର ବୋଲି ପଙ୍କିଳ । ଜଗନ୍ନାଥ-ଚେତନା ଆମକୁ ଚେତାଇ ଦିଏ ଯେ ଆମର ସନ୍ତୋଷ ସ୍ଥିତିରେ ନାହିଁ, ଆମର ସନ୍ତୋଷ ଗତିରେ, ପ୍ରଗତିରେ, ପ୍ରବାହରେ ଯାହାରି ମାଧ୍ୟମରେ ଆମେ ସସୀମରୁ ଅସୀମରେ, ରୂପରୁ ଅରୂପରେ, ଇନ୍ଦ୍ରିୟରୁ ଅତୀନ୍ଦ୍ରିୟରେ, ମନରୁ ମନୋନୀତ ଅବସ୍ଥାରେ ଉପନୀତ ହୋଇ ପାରିବା । ସେଇଠି ସଂକୀର୍ଣ୍ଣତା ନଥିବ । ଏକ ମହା ପ୍ରଶସ୍ତ ସର୍ବବ୍ୟାପୀ ସର୍ବଜନ-ସର୍ବମନ-ସ୍ପର୍ଶୀ ଏକକ ଓ ଅନନ୍ୟ ସତ୍ତାରେ ଏ ମଣିଷ ହେବ ମନ୍ମୟ, ହେବ ବି ତନ୍ମୟ ଓ ଚିନ୍ମୟ । ଜଗନ୍ନାଥ ଚେତନାରେ ଜଣେ ଉଦ୍‌ବୁଦ୍ଧ ହେଲେ ଏକ ସତ୍ତାରୁ ଅନେକ ସତ୍ତାରେ, ଏକ ହୃଦୟରୁ ଅନେକ ହୃଦୟରେ ବ୍ୟାପି ଯାଇ ଅତିମାନସ ଅତୀନ୍ଦ୍ରିୟ ପ୍ରଭସ୍ୱର ଅବସ୍ଥାରେ ଉପନୀତ ହୋଇ ଗାଇଯିବ । ଅମୃତ ସଙ୍ଗୀତ । (୨୮୮) ସେ ଅସତ୍‌ରୁ ସତ୍‌ରେ, ଅନ୍ଧକାରରୁ ଆଲୋକରେ, ମୃତ୍ୟୁରୁ ଅମୃତରେ ପହଞ୍ଚିବା ପାଇଁ ପାହାଚ ପାହାଚ ଉତ୍ତୀର୍ଣ୍ଣ ହୋଇଯିବ । ଜଗନ୍ନାଥଙ୍କ ପରି ଅନନ୍ତ ଆଡ଼କୁ ବାହୁ ପ୍ରସାରି ବଳୟରୁ ଦିଗ୍‌ବଳୟ ଆଡ଼କୁ ଅଭିମୁଖୀ ହେବ । ତା ଭିତରେ ଶିଖର ଆରୋହଣର ଅନୁଭୂତି ଜାଗି ଉଠିବ ।

ଶିଖର ଆରୋହୀ ଯେତିକି ଯେତିକି ଆରୋହଣ କରେ, ତାର ଚତୁର୍ଦ୍ଦିଗରେ ଦିଗ୍‌ବଳୟ ସେତିକି ସେତିକି ସଂପ୍ରସାରିତ ହୋଇଯାଏ । ଆଉ ପାହାଚେ ଗଲେ ଆଉ ଏକ ସୁଦୂର ପ୍ରସାରୀ ଦିଗ୍‌ବଳୟ । ଯେତିକି ଯେତିକି ଉତ୍ତରୋତ୍ତର ଉତ୍ତରଣ ସେତିକି ସେତିକି ବ୍ୟାପ୍ତି, ବିସ୍ତୃତି । ସେଇଠି ସେତିକି ସେତିକି ସଂକୀର୍ଣ୍ଣତା ଅପସରି ଯାଏ । ବିଶ୍ୱଭବ, ନିର୍ବେଦ ଭବ, ନିର୍ବିକଳ୍ପ ଭବରେ ଅଭ୍ୟୁଦୟ ହୁଏ । ଖଣ୍ଡତା ଭିତରେ ଅଖଣ୍ଡତା, ଅପୂର୍ଣ୍ଣତା ଭିତରେ ପୂର୍ଣ୍ଣତା, ଅରୂପତା ଭିତରେ ସ୍ୱରୂପତା, ନିରାନନ୍ଦତା ଭିତରେ ଆନନ୍ଦ ଉପଲବ୍‌ଧି କରିହୁଏ । ସେଠି ନଥାଏ 'ନାହିଁ' ନାହିଁର ଭବ । ନଥାଏ ସଂକୋଚ, ଦ୍ୱିଧା, ହିଂସା, ଦ୍ୱେଷ । ସେଇଠି ଖାଲି ବିଛାଡ଼ି ହୋଇ ପଡ଼ିଥାଏ ରାଶି ରାଶି ଶରଧା ବାଲି । ଅନିର୍ବାଣ ଜଳୁଥାଏ ମମତାର ମହାଦୀପ । (୨୮୯)

ଆଜିର ବିଶ୍ୱ, ଆଜିର ମାନବସମାଜ ଅଭିନ୍ନ ନ ହୋଇ ଭିନ୍ନ । ଜଗନ୍ନାଥ-ଚେତନାରେ ଉଦ୍‌ଭିନ୍ନ ନ ହେଲେ ମାନବ କ୍ରମେ ଦାନବରେ ପରିଣତ ହୋଇଯିବ । ଆଜି ପ୍ରେମ, ମୈତ୍ରୀ ଓ ବିଶ୍ୱପ୍ରାଣତାର ପ୍ରମାଣ ବିରଳ । ପ୍ରେମ-ମୈତ୍ରୀ-ବିଶ୍ୱପ୍ରାଣତାର ବିଶ୍ୱ ଦେବତା 'ଜଗନ୍ନାଥ' ଯୁଗ ଯୁଗ ଧରି ଭାରତର ନାନା ସାଂସ୍କୃତିକ ସଂକଟ କାଳରେ ସାର୍ବଜନୀନତାର ପ୍ରେରଣା ଦେଇ ଆସିଅଛନ୍ତି (୨୯୦) ବିଶ୍ୱ ମାନବ-ସମାଜକୁ ନିଜର କରି, ସମସ୍ତଙ୍କର ସୁଖ, ଶୁଭ, ସୌଭାଗ୍ୟ କାମନା କରି ଅର୍ଥାତ୍ ବିଶ୍ୱର ଚରମ ଅସ୍ତିତ୍ୱ ପ୍ରତି ସଚେତନ ରହି ପ୍ରତ୍ୟେକ 'ବିଶ୍ୱମାନବ' ହେବା ପାଇଁ 'ଜଗନ୍ନାଥ' ହେଉଛନ୍ତି ଏକ ମହାନ୍ ଆଦର୍ଶ । 'ଜଗନ୍ନାଥ' ଆଜି ମୂର୍ତ୍ତି ରୂପରେ ପୂଜିତ ହେଉଥିଲେ ହେଁ ସେ ଅମୂର୍ତ୍ତ ଓ ଅମୃତ ଚେତନାର ଏକ ଚିରନ୍ତନ ପ୍ରତୀକ ।

———

# BIBLIOGRAPHY


(୧) ଓଡ଼ିଆ ସାହିତ୍ୟର ଇତିହାସ (ପୃ. ୪୨)–ଡକ୍ଟର ମାୟାଧର ମାନସିଂହ

(୨) ନାଟ୍ୟଶୈଳ (ଭୂମିକା)–ସୁରେନ୍ଦ୍ର ମହାନ୍ତି

(୩) ଓଡ଼ିଶାର ଇତିହାସ, ୨ୟ ଖଣ୍ଡ, ଦ୍ୱିତୀୟ ସଂସ୍କରଣ, ପୃ ୫୫୪
–ଡକ୍ଟର ହରେକୃଷ୍ଣ ମହତାବ

(୪) ଦାରୁଦେବତା, ପୃ-୧–ଡକ୍ଟର ବେଣୀମାଧବ ପାଢ଼ୀ

(୫) ଓଡ଼ିଶା ଇତିହାସ (୨ୟ), ପୃ ୫୫୪–ଡକଟର ହରେକୃଷ୍ଣ ମହତାବ

(୬) ଚତ୍ରୈବ – ଏଙ୍କ

(୭) ଓଡ଼ିଆ ସାହିତ୍ୟର ଇତିହାସ, ପୃ ୪୨–ଡକ୍ଟର ମାୟାଧର ମାନସିଂହ

(୮) ଓଡ଼ିଶା ବୈଷ୍ଣବ ଧର୍ମ, ପୃ ୨୫–ଡକ୍ଟର କାହ୍ନୁଚରଣ ମିଶ୍ର

(୯) ଦାରୁଦେବତା, ପୃ ୪୨–ଡକଟର ବେଣୀମାଧବ ପାଢ଼ୀ

(୧୦) Saura English Dictionary—G. V. Rammurthy, (P. 118)

(୧୧) Castes and Tribes of Southern India, Vol IX, P. 335—E. Thurston

(୧୨) Ibid (P. 334-335)

(୧୩) ଦାରୁଦେବତା, ପୃ ୫୩–ଡକ୍ଟର ବେଣୀମାଧବ ପାଢ଼ୀ

(୧୪) Castes and Tribes of Southern India, Vol IV, P 333

(୧୫) ଦାରୁଦେବତା, ପୃ-୧୯୨—ଡକ୍ଟର ବେଣୀମାଧବ ପାଢ଼ୀ

(୧୬) The Cult of Jagannath, P. 18—Dr. K.C. Mishra

(୧୭) The New Universal Encyclopaedia—
(Australian Aborigins)

(୧୮) The History and Culture of the Indian People, Vol I, pp. 147-186 (Bhartiya Itihas Samity—
R. C. Majumdar

(୧୯) ଦାରୁଦେବତା, ପୃ. ୫୮—ଡକ୍ଟର ବେଣୀମାଧବ ପାଢ଼ୀ

(୨୦) ଋଗ୍‌ବେଦ ୧୦ମ ମଣ୍ଡଳ ୧୫୫ ସୂକ୍ତ, ୩ୟ ମନ୍ତ୍ର

(୨୧) Hints on the Significance and History of Jagannath—
(Nikhil Bharat Prabasi Utkal Sammelan Souvenir, Calcutta, January 1959)
—Pandit Nilakantha Das

(୨୨) ସାହିତ୍ୟର ମୂଲ୍ୟବୋଧ, ପୃ. ୫୨—ସଚ୍ଚିଦାନନ୍ଦ ରାଉତରାୟ

(୨୩) Hindu Mythology, p 208—W. J. Wilkins

(୨୪) ମନ୍ଦିରେର କଥା, ୧ମ ଖଣ୍ଡ (ଶବର ଜାତି ଓ ଜଗନ୍ନାଥ ଧର୍ମ)
ପୃ. ୧୯୧—ଶ୍ରୀ ଗୁରୁଦାସ ସରକାର

(୨୫) ଇନ୍ଦ୍ରଦ୍ୟୁମ୍ନ କିମ୍ବଦନ୍ତୀର ଐତିହାସିକତା
(ଭକ୍ତ ପ୍ରଦୀପ, ଆଶ୍ୱିନ ୧୩୪୨ ସାଲ)—କେଦାରନାଥ ମହାପାତ୍ର

(୨୬) ଓଡ଼ିଶାର ଆଦିବାସୀ ସଂସ୍କୃତି ('ଜଗନ୍ନାଥ ଓ ଆଦିବାସୀ ସଂସ୍କୃତି' ପରିଚ୍ଛେଦ
ପୃ. ୧୧୮ ରୁ —ବଂଶୀଧର ମହାନ୍ତି

(୨୭) History of Orissa, P. 8—
Dr. Nabin Kumar Sahoo

(୨୮) The History of Medieval Vaishnavism in Orissa,
P. 17—P. Mukherjee
(୨୯) ଓଡ଼ିଶା ଇତିହାସ (୨ଯ), ପୃ ୪୫୫—ଡକ୍ଟର ହରେକୃଷ୍ଣ ମହତାବ
(୩୦) Orissa and her Remains, p 399--
Manmohan Ganguli
(୩୧) ଦାରୁଦେବତା, ପୃ ୧୮୫—ଡକ୍ଟର ବେଣୀମାଧବ ପାଢ଼ୀ
(୩୨) ମନ୍ଦିରେର କଥା, ପୃ ୯୯-୧୦୦—ଗୁରୁଦାସ ସରକାର
(୩୩) ତତ୍ରୈବ ପୃ ୯୪
(୩୪) ସ୍କନ୍ଦପୁରାଣ ୩/୯-୧୦
(୩୫) ଦାରୁଦେବତା, ପୃ ୧୮୮—ଡକ୍ଟର ବେଣୀମାଧବ ପାଢ଼ୀ
(୩୬) ସ୍କନ୍ଦପୁରାଣ, ୨୬/୩୪
(୩୭) Hints on the Significance and History of
Jagannath, Part II—Nilakantha Das
(୩୮) ଏ ସମସ୍ତ ପାଠ ଡକ୍ଟର ବଂଶୀଧର ମହାନ୍ତିଙ୍କ ଦ୍ୱାରା ସଂଗୃହୀତ ଏକ ପୋଥିରୁ ଗୃହୀତ ।
(୩୯) ଓଡ଼ିଶାର ଆଦିବାସୀ ସଂସ୍କୃତି, ପୃ ୧୫୧—ଡକ୍ଟର ବଂଶୀଧର ମହାନ୍ତି
(୪୦) ଦାରୁଦେବତା, ପୃ ୧୯୩—ଡକ୍ଟର ବେଣୀମାଧବ ପାଢ଼ୀ
(୪୧) (କ) Hymns From Rigveda Peterson ଅନୁଯାୟୀ
ଋଗ୍‌ବେଦର ରଚନାକାଳ ଖ୍ରୀଷ୍ଟପୂର୍ବ ୧୫୦୦
(ଖ) Vedic Reader (Mecdonel)—ଅନୁଯାୟୀ ଖ୍ରୀ. ପୂ. ୧୩୦୦
(ଗ) History of Indian Literature (Weber)—
ଅନୁଯାୟୀ ଖ୍ରୀ: ପୂ: ୧୬୦୦
(ଘ) Rid-veda—(Kaig) ଅନୁଯାୟୀ ଖ୍ରୀ. ପୂ. ୧୩୦୦ ବର୍ଷ
(ଙ) ଭିଟନିଙ୍କ ମତରେ ଏହି କାଳ ଖ୍ରୀ. ପୂ. ୨୦୦୦ରୁ ୧୫୦୦
(୪୨) ଡକ୍ଟର ଲକ୍ଷ୍ମୀନାରାୟଣ ସାହୁଙ୍କର 'ଓଡ଼ିଶାରେ ଜୈନଧର୍ମ'ର
ଗ୍ରନ୍ଥ ପ୍ରବେଶ, ପୃ ୭

(୪୩) Hibbert Lectures (1878)—Prof Sayce
(୪୪) ଋଗ୍‌ବେଦ ୧/୧୧୪/୧
(୪୫) 'ଓଡ଼ିଶାରେ ଜୈନଧର୍ମ'—ଗ୍ରନ୍ଥ ପ୍ରବେଶ, ପୃ ୮—ନୀଳକଣ୍ଠ ଦାସ
(୪୬) (କ) ଭଗବତ ୧୧/୨/୧୬, ୨/୭/୧୦, ୧/୩/୧୩
(ଖ) ଓଡ଼ିଶାରେ ଜୈନଧର୍ମ—ଅଭିମତ-ପୃ ଖ ୮—
ଡକ୍‌ଟର ଆର୍ତ୍ତବଲ୍ଲଭ ମହାନ୍ତି
(୪୭) ଓଡ଼ିଶାରେ ଜୈନଧର୍ମ—ଅଭିମତ-ପୃ ଖ—ଡକ୍‌ଟର ଆର୍ତ୍ତବଲ୍ଲଭ ମହାନ୍ତି
(୪୮) ତତ୍ରୈବ —ପୃ ଢ, ୯ —ପଣ୍ଡିତ ବିନାୟକ ମିଶ୍ର
(୪୯) Abhidhan Rajendra, Vol IV, p 1385
(୫୦) ପୁରୀ ବଡ଼ ଦେଉଳ, ୨ୟ ସଂସ୍କରଣ, ପୃ ୫୫—
ପଣ୍ଡିତ ନରସିଂହ ମହାପାତ୍ର
(୫୧) ଓଡ଼ିଶାରେ ଜୈନଧର୍ମ, ପୃ ୧୨୬—ଡକ୍‌ଟର ଲକ୍ଷ୍ମୀନାରାୟଣ ସାହୁ
(୫୨) Abhidhan Rajendra ଗ୍ରନ୍ଥର 'ଅନୁଯାନ' ଶବ୍ଦ ବିବରଣରେ ଏହା ବିସ୍ତୃତ ବର୍ଣ୍ଣନା କରଯାଇଛି ।
(୫୩) ଓଡ଼ିଶାରେ ଜୈନଧର୍ମ, ପୃ ୧୨୭—ଡକଟର ଲକ୍ଷ୍ମୀନାରାୟଣ ସାହୁ
(୫୪) ତତ୍ରୈବ, ପୃ ୧୨୮ ଓ 'ନବଭାରତ', ମାର୍ଚ୍ଚ ୧୯୫୧
(୫୫) Tattwartha Sutra, Ch I.V.I.
(୫୬) ଇନ୍ଦ୍ରଦ୍ୟୁମ୍ନ କିମ୍ବଦନ୍ତୀର ଐତିହାସିକତା (ଭକ୍ତ ପ୍ରଦୀପ ଆଶ୍ୱିନ, ୧୩୪୨ ସାଲ)—କେଦାରନାଥ ମହାପାତ୍ର
(୫୭) ସଂସ୍କୃତ ଓ ସଂସ୍କୃତି, ପୃ ୩୨—ନୀଳକଣ୍ଠ ଦାସ
(୫୮) ତତ୍ରୈବ ପୃ ୩୨-୩୩
(୫୯) ଓଡ଼ିଆ ସାହିତ୍ୟର କ୍ରମ ପରିଣାମ ୨ୟ ଭାଗ—ପୃ ୪୩—ନୀଳକଣ୍ଠ ଦାସ
(୬୦) (କ) ତତ୍ରୈବ—ପୃ ୫୮
(ଖ) The Heart of Jainism, p 50 – Mrs Stevenson
(୬୧) The Story of the Nation, Assyria
(Subscription Edition)

(୬୨) ସାହିତ୍ୟରେ ମୂଲ୍ୟବୋଧ, ପୃ ୬୬–ସଚ୍ଚିଦାନନ୍ଦ ରାଉତରାୟ

(୬୩) (କ) I. A. I., Page 261, Vol IX, p 162

(ଖ) Sir Asutosh Mukharji Silver Jubilee, Vol III, Part III, P 74-82

(ଗ) O.H.R.J. Vol IV, P 79

(୬୪) ଓଡ଼ିଶାରେ ଜୈନଧର୍ମ, ପୃ ୬୬–ଡକ୍‌ଟର ଲକ୍ଷ୍ମୀନାରାୟଣ ସାହୁ

(୬୫) Bhavadeva Suriଙ୍କର Parswanath Charitaରେ ଥିବା ଗଳ୍ପ ଦ୍ରଷ୍ଟବ୍ୟ

(୬୬) Archaeological Survey of Mayurbhanj– N. N. Vasu

(୬୭) ତତ୍ରୈବ (Int, p. XII)

(୬୮) Neulpur Copper Plate

(୬୯) ଆବଶ୍ୟକ ସୂତ୍ର, p. 219-20

(୭୦) (କ) ହରିଭଦ୍ରୀୟା ବୃତ୍ତି (ଆଗମୋଦୟ ସମିତି), ପୃ ୬୧୮-୨୦

(ଖ) J. B. O. R. S VIII, p 246

(୭୧) ଉତ୍ତରାଧ୍ୟୟନ ସୂତ୍ର, ପୃ-୨୧

(୭୨) (କ) ଆବଶ୍ୟକ ସୂତ୍ର, p 219

(ଖ) O. H. R. J. Vol IV, No. 3-4, p-79

(୭୩) ହରିଭଦ୍ରୀୟା ବୃତ୍ତି, ପୃ ୨୧୮–୨୧୯

(୭୪) ଓଡ଼ିଆ ସାହିତ୍ୟର ଇତିହାସ, ୧ମ ଭାଗ, ପୃ ୧୩– ଡକ୍‌ଟର ବଂଶୀଧର ମହାନ୍ତି

(୭୫) ତତ୍ରୈବ ପୃ ୧୫

(୭୬) ସଂସ୍କୃତ ଓ ସଂସ୍କୃତି, ପୃ ୩୨–ନୀଳକଣ୍ଠ ଦାସ

(୭୭ ସାହିତ୍ୟରେ ମୂଲ୍ୟବୋଧ, ପୃ ୬୬–ସଚ୍ଚିଦାନନ୍ଦ ରାଉତରାୟ

(୭୮) ଓଡ଼ିଆ ସାହିତ୍ୟର କ୍ରମ ପରିଣାମ, ୨ୟ ଭାଗ, ପୃ ୮୬–ନୀଳକଣ୍ଠ ଦାସ

(୭୯) ତତ୍ରୈବ
(୮୦) ବ୍ରହ୍ମପୁରାଣ ୫୨,୧୬
(୮୧) ଦାରୁଦେବତା, ପୃ ୧୯୦-୧୯୨—ଡକ୍ଟର ବେଣୀମାଧବ ପାଢ଼ୀ
(୮୨) ତତ୍ରୈବ ପୃ ୧୯୧
(୮୩) ଚିତ୍ର ନଂ ୧,୨,୩,୪ ଓ ୫ ଦ୍ରଷ୍ଟବ୍ୟ—ପରିବର୍ଦ୍ଧିତ 'ବଦ୍ଧମଙ୍ଗଳ' (ଚିତ୍ର ନଂ-୨) ଉପରେ ପରିବର୍ଦ୍ଧିତ ଚକ୍ଷୁମୁଖ ବିଶିଷ୍ଟ ନନ୍ଦାପଦ (ଚିତ୍ର ନଂ ୪)କୁ ଥୋଇ-ଦେଲେ ଉଭୟର ମିଶ୍ରଣରେ ଜଗନ୍ନାଥ (ଦାରୁ ଦେବତା)ଙ୍କ ରୂପ ଆଭସିତ ହୋଇଯାଏ । ଚିତ୍ରଗୁଡ଼ିକ ଡକ୍ଟର ବେଣୀମାଧବ ପାଢ଼ୀଙ୍କ ଦାରୁଦେବତା ଗ୍ରନ୍ଥରେ ଦ୍ରଷ୍ଟବ୍ୟ ।
(୮୪) Shraman Bhagaban Mahabir—
Part I, Vol I, p 96
(୮୫) ଦାରୁଦେବତା, ପୃ ୧୯୨—ଡକ୍ଟର ବେଣୀମାଧବ ପାଢ଼ୀ
(୮୬) The Encyclopaedia Britanica—p. 446
(୮୭) ସାହିତ୍ୟରେ ମୂଲ୍ୟବୋଧ, ପୃ ୬୯—ସଚ୍ଚିଦାନନ୍ଦ ରାଉତରାୟ
(୮୮) ଜ୍ଞାନସିଦ୍ଧି, ୧ମ ସର୍ଗ, ୧ମ ଶ୍ଳୋକ
(୮୯) ସାହିତ୍ୟରେ ମୂଲ୍ୟବୋଧ, ପୃ ୬୯—ସଚ୍ଚିଦାନନ୍ଦ ରାଉତରାୟ
(୯୦) ତତ୍ରୈବ ପୃ ୭୦
(୯୧) Hints on the Significance and History of
Jagannath—Pandit Nilakantha Das
(୯୨) Ibid
(୯୩) Ibid
(୯୪) O.H.R.S. 1953, Vol II, p. 24—Dr. Amar Chand.
(୯୫) The Making of Indian Princes—
Edward Thompson.
(ଡକ୍ଟର ହରେକୃଷ୍ଣ ମହତାବଙ୍କ ଓଡ଼ିଶା ଇତିହାସ,
୧ମ ଖଣ୍ଡ ମୁଖବନ୍ଧରୁ ଉଦ୍ଧୃତ)

(୯୬) ଓଡ଼ିଶା ଇତିହାସ, ୧ମ ଖଣ୍ଡ, ମୁଖବନ୍ଧ–ଡକ୍ଟର ହରେକୃଷ୍ଣ ମହତାବ
(୯୭) ଓଡ଼ିଶାର ଆଦିବାସୀ ସଂସ୍କୃତି, ପୃ ୧୨୫–ବଂଶୀଧର ମହାନ୍ତି
(୯୮) ତତ୍ରୈବ
(୯୯) ଓଡ଼ିଆ ସାହିତ୍ୟର ଇତିହାସ, ୧ମ ଭଗ, ପୃ ୧୪–
ଡକ୍ଟର ବଂଶୀଧର ମହାନ୍ତି
(୧୦୦) ତତ୍ରୈବ ପୃ ୧୫
(୧୦୧) British Museum Hand book to the Ethnographical Collections, Ind. Edition, 1925,
p. p. 26, 37, 76, 127 and 135.
(୧୦୨) ଓଡିଶା ଇତିହାସ, ୨ୟ ଭଗ, ପୃ ୫୫୫–ଡକ୍ଟର ହରେକୃଷ୍ଣ ମହତାବ
(୧୦୩) Tribes and Casters in Central Provinces—
Russel.
(୧୦୪) Bilaspur Dist Gazetteer, p. 92
(୧୦୫) ଓଡ଼ିଶାର ଆଦିବାସୀ ସଂସ୍କୃତି, ପୃ ୧୬୨–ବଂଶୀଧର ମହାନ୍ତି
(୧୦୬) ଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ତତ୍ତ୍ୱ, ପୃ ୭୭–ସୂର୍ଯ୍ୟନାରାୟଣ ଦାଶ
(୧୦୭) ତତ୍ରୈବ ପୃ ୭୭
(୧୦୮) ତତ୍ରୈବ ପୃ ୭୭-୭୮
(୧୦୯) ଓଡ଼ିଶା ଇତିହାସ, ୨ୟ ଖଣ୍ଡ. ପୃ ୫୮୦-୫୮୧
(୧୧୦) ତତ୍ରୈବ ପୃ ୫୮୦, ପାଦଟୀକା
(୧୧୧) ତତ୍ରୈବ ପୃ ୫୮୧
(୧୧୨) •Dpag-bsam-jon-bzan, p.82—Sumpa Mkhan. po, Edited by Sarat Chandra Das (Calcutta, 1908)
(୧୧୩) ଡଃ ବଂଶୀଧର ମହାନ୍ତିଙ୍କ 'ଓଡ଼ିଶାରେ ବୌଦ୍ଧଧର୍ମ' ଗ୍ରନ୍ଥର ଭୂମିକା ପ୍ରଥମ ପୃଷ୍ଠା ଓ ଦ୍ୱିତୀୟ ପୃଷ୍ଠା, ଡଃ ନବୀନ କୁମାର ସାହୁ
(୧୧୪) ଓଡ଼ିଶାରେ ବୌଦ୍ଧଧର୍ମ, ପୃ ୨୦–ଡଃ ନବୀନ କୁମାର ସାହୁ ।

(୧୧୫) New Aspects History of Orissa, p. 65—Sambalpur University, (୧୧୬) Taranath's Account, Journal of the Department of Letters, Calcutta University, Vol I, p. 28, (୧୧୭) The Cult of Jagannath, p. 18—Dr. K. C. Mishra,

(୧୧୮) O. H. R. J. Vol V, p. 53, (୧୧୯) Buddhist Pilgrims from China to India—Reverend S. Beal.

(୧୨୦) ଓଡ଼ିଶାରେ ବୌଦ୍ଧଧର୍ମ, ପୃ. ୪୨—ଡଃ ବଂଶୀଧର ମହାନ୍ତି

(୧୨୧) Modern Buddhism in Orissa—N. N, Basu.

(୧୨୨) ଓଡ଼ିଆ ସାହିତ୍ୟର ଇତିହାସ, ପୃ. ୭୫-୭୬—ପଣ୍ଡିତ ବିନାୟକ ମିଶ୍ର

(୧୨୩) ଓଡ଼ିଶା ଇତିହାସ, ୨ୟ ଖଣ୍ଡ, ପୃ. ୫୮୭—ଡଃ ହରେକୃଷ୍ଣ ମହତାବ

(୧୨୪) The Antiquities of Orissa, Vol II, pp. 105-106

(୧୨୫) Hindostan—Hamilton, (୧୨୬) Turnour's Accounts of the Tooth—Relic of Ceylon in J. A. S. B., Calcutta, 1837, Vol VI p. 858 onwards,

(୧୨୭) ଶ୍ରୀ ଜଗନ୍ନାଥ, ପୃ. ୨୭—ଡଃ ବଂଶୀଧର ମହାନ୍ତି, (୧୨୮) ଓଡ଼ିଆ ସାହିତ୍ୟର ଇତିହାସ, ପ୍ରଥମ ଅଧ୍ୟାୟ—ପଣ୍ଡିତ ବିନାୟକ ମିଶ୍ର,

(୧୨୯) ଶ୍ରୀମଦ୍ ଭଗବଦ୍ ଗୀତା—ପ୍ରବେଶ, ପୃ. ୨୭୪—ପଣ୍ଡିତ ନୀଳକଣ୍ଠ ଦାସ,

(୧୩୦) Memoir on the History of the Tooth Relic of Ceylon, p. 30—J. Gerson Da Cunha,

(୧୩୧) Mysticism in the Temple of Jagannath at Puri, Orissa, p. 13—Servus Servorum, (୧୩୨) Things Indian—Crook, (୧୩୩) କ-Ancient Geography of India, ଖ—Bhils Topes and Stupa of Barhut,

(୧୩୪) The Antiquities of Orissa, Vol II. (୧୩୫) History

of Indian and Eastern Architecture, ୧୩୭ । India and its Princes.

୧୩୮ । ଓଡ଼ିଶା ଇତିହାସ, ୨ୟ ଖଣ୍ଡ; 'ଜଗନ୍ନାଥ ଧର୍ମ' ଅଧ୍ୟାୟ,

୧୩୯ । Modern Buddhism in Orissa—N. N. Basu, ୧୪୦ । Buddhism, ୧୪୧ । The Religions of the World, ୧୪୨ । The Indian Empire, Sir W. W. Hunte. ୧୪୩ । Orissa Vol I.

୧୪୪ । ଓଡ଼ିଶା ଇତିହାସ, ୨ୟ ଖଣ୍ଡ, ପୃ ୫୮୧, ୧୪୫ । ସାରଳା ମହାଭାରତ ବନପର୍ବ, ୧୪୬ । ଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ତତ୍ତ୍ୱ, ପୃ ୯୯—ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ, ୧୪୭ । 'ସନାତନ ଜଗନ୍ନାଥ ପାଠ' ପ୍ରବନ୍ଧ [ଆମ ଜଗନ୍ନାଥ ଆମ ସାହିତ୍ୟ], ପୃ ୧୦୩—ଡଃ ହରେକୃଷ୍ଣ ମହତାବ, ୧୪୮ । ଜଗନ୍ନାଥ ତତ୍ତ୍ୱ ଓ ରଥଯାତ୍ରା' ପ୍ରବନ୍ଧ [ଆମ ଜଗନ୍ନାଥ ଆମ ସାହିତ୍ୟ]—ଅଧ୍ୟାପକ ଚିତ୍ତରଞ୍ଜନ ଦାସ,

୧୪୯ । ଓଡ଼ିଶାର ମହିମା ଧର୍ମ, ପୃ ୭୮—ଚିତ୍ତରଞ୍ଜନ ଦାସ, ୧୫୦ । ସ୍ତୁତ ଓ ସ୍ତୁତି, ପୃ ୧୦୨—ପଣ୍ଡିତ ନୀଳକଣ୍ଠ ଦାସ

୧୫୧ । Bhagalpur Inscription of Narayan Pala,

୧୫୨ । Garuda Pilar Inscrirtion of Mangalbadi,

୧୫୩ । Dharma Puran—Mayurbhatta, ୧୫୪ । The History of Medieval Vaishnavism in Orissa, p. 19—P. Mukherjee, ୧୫୫ । Dharmapuja Bidhan ( Bengali Book ), p. 206—207—Ramai Das

୧୫୬ । ଶ୍ରୀ ଗୀତଗୋବିନ୍ଦ ଦଶାବତାର ସ୍ତୁତି )—ଜୟଦେବ,

୧୫୭ । Buddha Gaya

୧୫୮ । 'ଜ୍ଞାନ ସିଦ୍ଧି' ଗ୍ରନ୍ଥ ୧/୯, ୫/୮, ୨/୧୮ ଇତ୍ୟାଦି ପଦ—ଇନ୍ଦ୍ରଭୂତି

୧୫୯ । ପ୍ରଜ୍ଞୋପାୟ ବିନିଶ୍ଚୟ ସିଦ୍ଧି—ଅନଙ୍ଗବଜ୍ର, ୧୬୦ । ଶୂନ୍ୟ ପୁରାଣ, ପୃ ୨୬୧, ୧୬୧ । ଓଡ଼ିଶା ଇତିହାସ, ୨ୟ ଖଣ୍ଡ, ପୃ ୫୮୧,

୧୬୨ । Travels of Fahin—Lagge, ୧୬୩ । Antiquities of Orissa, Vol II, p. 136. ୧୬୪ । କ—The Indian Empire—Sir W. W. Hunte, ଖ—Indian Architecture— Fergusson. ୧୬୫ । Konark— Bishen Swarup.

୧୬୬ । ଦାରୁଦେବତା, ପୃ ୧୫୮—ଡଃ ବେଣୀମାଧବ ପାଢୀ, ୧୬୭ । କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, ପ୍ରଥମ ଛାନ୍ଦ—ଉପେନ୍ଦ୍ର ଭଞ୍ଜ, ୧୬୮ । ଗୋରକ୍ଷନାଥ ଓ ମଧ୍ୟଯୁଗର ରହସ୍ୟବାଦ, ପୃ ୧୯—ଡକ୍ଟର ସିଂହ,

୧୬୯ । ବାଙ୍ଗଲାୟ ବୌଦ୍ଧଧର୍ମ, ପୃ ୧୪୬—ଶଶୀଭୂଷଣ ଦାଶଗୁପ୍ତ ୧୭୦ । ବୌଦ୍ଧ-ଧର୍ମ, ପୃ ୧୦୬—ହରପ୍ରସାଦ ଶାସ୍ତ୍ରୀ ।

୧୭୧ । Introduction to Sadhanamala, Vol II, p XLii by Bhattacharya.

୧୭୨ । ଗୋରକ୍ଷ ନାଥ ଓ ମଧ୍ୟଯୁଗର ରହସ୍ୟବାଦ, ପୃ ୧୯—ଡକ୍ଟର ସିଂହ

୧୭୩ । ଲୋହିଗୀତା, ପାଣ୍ଡୁଲିପି ୨, ପୃ ୪—ଲୁଇପାଦ, ୧୭୪ । ତତ୍ରୈବ

୧୭୫ । ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତ ପଞ୍ଚମ ସ୍କନ୍ଧ, ୧୭୬ । ଦାରୁବ୍ରହ୍ମ ଗୀତା—ଜଗନ୍ନାଥ ଦାସ ୧୭୭ । ଶୂନ୍ୟ ସଂହିତା—ଅଚ୍ୟୁତାନନ୍ଦ ଦାସ,

୧୭୮ । ଗଣେଶ ବିଭୂତି, ୬ଷ୍ଠ ଅଧ୍ୟାୟ—ବଳରାମ ଦାସ, ୧୭୯ । ବୃହତ୍ ସ୍ୱୟମ୍ଭୁ ପୁରାଣ, ପୃ ୯, ୧୮୦ । ଶୂନ୍ୟ ସଂହିତା, ତ୍ରିଂଶ ଅଧ୍ୟାୟ—ଅଚ୍ୟୁତାନନ୍ଦ ଦାସ, ୧୮୧ । ଗୁରୁ ଭକ୍ତି ଗୀତା—ଅଚ୍ୟୁତାନନ୍ଦ ଦାସ

୧୮୨ । ବୈଚନ୍ଦ୍ର ଗୀତା, ଅଧ୍ୟାୟ ୬୧, ୬୬—ଦେବାନନ୍ଦ ଦାସ, ୧୮୩ । ଶଶୀ-ସେଣା, ଛାନ୍ଦ ୯, ପଦ ୫୪—ପ୍ରତାପ ରାୟ, ୧୮୪ । ନାମରତ୍ନ ଗୀତା, ଅଧ୍ୟାୟ ୨୮, ୩୦, ୩୮ ଓ ୩୯—ଦୀନକୃଷ୍ଣ ଦାସ, ୧୮୫ । ଶ୍ରୀ ଜଗନ୍ନାଥ ପୁରାଣ' ବା 'ବୌଦ୍ଧପୁରାଣ' (ଲେଖକ—ନକୁଳାନନ୍ଦ ନାୟକ)—ସମୀକ୍ଷକ—ଡଃ ବଂଶୀଧର ମହାନ୍ତି [ ଆମ ଜଗନ୍ନାଥ ଆମ ସାହିତ୍ୟ ], ପୃ ୭୫-୭୬

୧୮୬ । The History of Medieval Vaishnavism in Orissa—P. Mukherjee. ୧୮୭ । Jagannath Temple-

Maha Mohapadhyaya Pandit Sadasiva Mishra.

୧୮୮ । 'ଜଗନ୍ନାଥ ବୁଦ୍ଧ ନୁହନ୍ତି' ('ସହକାର', ୧୬ଶ ବର୍ଷ, ୭ମ ସଂଖ୍ୟା)– ମହାମହୋପାଧ୍ୟାୟ ପଣ୍ଡିତ ସଦାଶିବ ମିଶ୍ର ।

୧୮୯ । ଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ତତ୍ତ୍ୱ–ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ।

୧୯୦ । ମନ୍ଦିରେର କଥା–ଗୁରୁଦାସ ସରକାର ।

୧୯୧ । Orissa and Her Remains — Mana Mohan Gangooli

୧୯୨ । ଦାରୁ ଦେବତା– ଡଃ ବେଣୀମାଧବ ପାଢ଼ୀ ।

୧୯୩ । Mysticism in the Temple of Jagannath at Puri Orissa – Servus Servorum

୧୯୪ । ସାହିତ୍ୟରେ ମୂଲ୍ୟବୋଧ– ଡଃ ସଚ୍ଚିଦାନନ୍ଦ ରାଉତରାୟ

୧୯୫ । 'ରଥଯାତ୍ରା' ପ୍ରବନ୍ଧ ('ଆମ ଜଗନ୍ନାଥ ଆମ ସାହିତ୍ୟ' ଗ୍ରନ୍ଥରେ ସଂକଳିତ) ପଣ୍ଡିତ ନୀଳକଣ୍ଠ ଦାସ

୧୯୬ । The History of Medieval Vaisnavism in Orissa p. 19—P. Mukherjee.

୧୯୭ । ଋଗ୍‌ବେଦ, ପୁରୁଷ ସୂକ୍ତ ମନ୍ତ୍ର,

୧୯୮ । ଋଗ୍‌ବେଦ ୧୦/୧/୫୫/୩

୧୯୯ । ଉପନିଷଦ୍, ଶାନ୍ତି ମନ୍ତ୍ର

୨୦୦ । ଶ୍ୱେତାଶ୍ୱେତରୋପନିଷଦ୍ ୩/୧୯,

୨୦୧ । କୈବଲ୍ୟ ଉପନିଷଦ୍ ମନ୍ତ୍ର ୨୧

୨୦୨ । ଶ୍ରୀମଦ୍ ଭଗବଦ୍ ଗୀତା, ପୁରୁଷୋତ୍ତମ ଯୋଗ, ପଞ୍ଚଦଶ ଅଧ୍ୟାୟ, ଶ୍ଳୋକ ୧୮,

୨୦୩ । ଭାରତୀୟ ସଂସ୍କୃତିକୋ ଉତ୍କଲ କୀ ଦାନ୍ (ରଷ୍ଟ୍ରଭଷା ଜୟନ୍ତୀ ଗ୍ରନ୍ଥ ପୃ ୨୨୮– ପଣ୍ଡିତ ନୀଳକଣ୍ଠ ଦାଶ

୨୦୪ । ବାହସ୍ପତ୍ୟ ସୂତ୍ରମ ୩/୨୦/୧୧୯-୧୨୦

୨୦୫ । I. H. Q. Vol. XXIII, pp.

୨୦୬ । The Cult of Jagannath, p. 36 — Dr. K. C. Mishra

୨୦୭ । ଅନର୍ଘ ରଘବ (ହସ୍ତାବନ)–ମୁରରି ମିଶ୍ର ।

୨୦୮ । Epigraphia Indica, Vol. XXXV, pp. 171-175.

୨୦୯ । Palaeography of India, p. 88– G. S. H. Ojha.

୨୧୦ । The Cult of Jagannath pp. 37-38, ୨୧୧ । E. I. II p. 180, ୨୧୨ । Ibid, p. 330, ୨୧୩ । O. H. R. J. Vol XVII, pp. 211-212, ୨୧୪ । J. A. S. B., LXV, 1896 Part I, p. 229.

୨୧୫ । ମହାଭରତ, ଶାନ୍ତି ପର୍ବ, ନାରାୟଣୀୟ ଖଣ୍ଡ, ୨୧୬ । ଅଷ୍ଟାଧ୍ୟାୟୀ ସୂତ୍ର, ୪/୩/୯୫, ୨୧୭ । ତୈତ୍ତିରୀୟ ଆରଣ୍ୟକ, ଦଶମ ପ୍ରପାଠକ

୨୧୮ । The Jatakas, Vol.IV, p. 50—Edited by Cowell.

୨୧୯ । Materials for the Study of the Early History Vaishnava Sect, p. 19 — Hemachandra Ray Choudhury. ୨୨୦ । E. I. Vol X, Inscription 6,

୨୨୧ । Ibid, Insc. 659,

୨୨୨ । ଗୀତା ୪/୧/୧୧୪, ୨୨୩ । ତୈତ୍ତିରୀୟ ସଂହିତା, ୩/୧୧/୯/୩

୨୨୪ । ତୈତ୍ତିରୀୟ ବ୍ରାହ୍ମଣ, ୩/୧୦/୯/୧୫, ୨୨୫ । ଶତପଥ ବ୍ରାହ୍ମଣ, ୩/୧/୧/୪, ୨୨୬ । ଜୈମିନୀୟ ଉପନିଷଦ୍ ବ୍ରାହ୍ମଣ, ୧/୬/୧

୨୨୭ । J. R. A. S. 1935 p. 840—Keith,

୨୨୮ । ସଂସ୍କୃତ ମହାଭାରତ, ୧୨/୩୪୮/୬୮ ୨୨୯ । ତତ୍ରୈବ ୧୨/୩୪୧/୪୧, ୨୩୦ । ତତ୍ରୈବ, ୫/୭୦/୩

୨୩୧ । E. I. Vol. X, Ins. 669, ୨୩୨ । Vaishnavism, Saivism and Minor Religious Sects, p. 26—R. G. Bhandarkar ୨୩୩ । Ptolemy, p. 101—Mc Crindle. ୨୩୪ । Selected Inscriptions,

୨୩୫ । ସଂସ୍କୃତ ମହାଭାରତ ୧୪/୯୨୪, ୨୩୬ । ଜଗନ୍ନାଥ ପୂଜା (କୋଣାର୍କ) ୧ମ ବର୍ଷ, ଦ୍ୱିତୀୟ ସଂଖ୍ୟା, ପୃ ୩୫, ୨୩୭ । ଭାରତୀୟ ସଂସ୍କୃତିକୋ ଉତ୍କଳକୀ ଦାନ୍ (ରାଷ୍ଟ୍ରଭାଷା ଜୟନ୍ତୀ ଗ୍ରନ୍ଥ) ପୃ ୧୧୮—ପଣ୍ଡିତ ନୀଳକଣ୍ଠ ଦାଶ ।

୨୩୮ । Evolution of the Puri Triad (Utkal University Silver Jubilee Issue)—P. Mukherjee

୨୩୯ । ବୃହତ୍ ସଂହିତା, ୫୮/୩୬ ୩୭. ୨୪୦ । ସ୍କନ୍ଦପୁରାଣ, ଉତ୍କଳ ଖଣ୍ଡ, ୧୯ଶ ଅଧ୍ୟାୟ, ୧୭ଶ ଶ୍ଳୋକ ।

୨୪୧ । History Orissa. Vol. II pp. 203-206,

୨୪୨ । Carpus Inscriptions Indicarum, Vol III, pp. 205-206 ୨୪୩ । Prachi Valley (Orissa State Archaeology). pp 64-65 ୨୪୪ । Ibid ୨୪୫ । Inscriptions of Orissa, Vol I Part II, p. 71 ୨୪୬ । The Nirgondi Plates, E. I. Vol. XXX pp. 117-118 ୨୪୭ । A. S. I. A. R., 1923-24 pp. 29-30 ୨୪୮ । M. A. S. I. No. 70, p. 2, ୨୪୯ । I. H. S. Vol. XXI

୨୫୦ । ଗଙ୍ଗବଂଶାନୁଚରିତ । ୨୫୧ । ଓଡ଼ିଶାରେ ନୃସିଂହ ପୂଜା ସୃଷ୍ଟି ଓ ସମୀକ୍ଷା, ଖ୍ରୀଷ୍ଟ କଲେଜ, ୧୯୭୬-୭୭) ଡଃ ବିଚିତ୍ରାନନ୍ଦ ମହାନ୍ତି,

୨୫୨ । ବଟ ଅବକାଶ,

୨୫୩ କ- The Saga of the Land of Jagannath p. 156— Dr. Mayadhar Manasingh, ଖ- The Illustrated Weekly of India, October 14, 1962.

୨୫୪ । ରୁଦ୍ର ଯାମଳ, ୪୪ଶ ଅଧ୍ୟାୟ ୧୧ଶ ଶ୍ଲୋକ, ୨୫୫ । ବିଷ୍ଣୁ ପୁରାଣ ୪/୧୬/୧୮-୧୯, ୧/୨୨/୬୩-୬୪

୨୫୬ । Evolution of the Puri Triad. (Utkal University Silver Jubilee Issue) – P. Mukherjee, ୨୫୭ । Ibid

୨୫୮ । ଓଡ଼ିଶା ଇତିହାସ, ଦ୍ୱିତୀୟ ଖଣ୍ଡ, ପୃ ୫୮୦—ଡକ୍ଟର ହରେକୃଷ୍ଣ ମହତାବ ୨୫୯ । ଇନ୍ଦ୍ରଦ୍ୟୁମ୍ନ କିମ୍ବଦନ୍ତୀର ଐତିହାସିକତା (ଭକ୍ତ ପ୍ରଦୀପ ୧୩୪୨ ସାଲ ବା ୧୯୩୬ ଖ୍ରୀ) କେଦାର ନାଥ ମହାପାତ୍ର

୨୬୦ । The Jagannath Cult and its History

Shri Jagannath Smaranika, Vol. II, Delhi) —
Dr. Kunja Behari Tripathy,

୨୨୧ । ଋଗ୍‌ବେଦ, ୧୦/୮୫/୪, ବ୍ୟାଖ୍ୟା–'ଦାରୁବ୍ରହ୍ମଙ୍କ ନବକଳେବର' ପ୍ରବନ୍ଧ–('ଧର୍ମ, ସମାଜ ଓ ସାହିତ୍ୟ' ଗ୍ରନ୍ଥ ପୃ ୧୩୯) ଡଃ କାହ୍ନୁଚରଣ ମିଶ୍ର ।

୨୨୨ । ଭାରତୀୟ ସଂସ୍କୃତିର ପ୍ରତୀକ ଜଗନ୍ନାଥ (ଧୀ ଓ ଧୀଷଣା, ପୃ ୧୦୩-୧୦୪)–ଡକ୍‌ଟର ବେଣୀ ମାଧବ ପାଢ଼ୀ । ୨୨୩ । କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ପ୍ରଥମ ଛାନ୍ଦ । ୨୨୪ । ଜଗନ୍ନାଥ ସଂସ୍କୃତି ('ପତିତପାବନ' ପତ୍ରିକା, ପୃ ୧୩–'ନୀଳ ଶୈଳ' ମୁଖପତ୍ର, ୧ମ ବାର୍ଷିକ ଗଜ୍ୟନ୍ତରୀୟ ସମାବେଶ ଉପଲକ୍ଷେ ପ୍ରକାଶିତ)–ନୀଳମାଧବ ପତି ।

୨୨୫ । ପୁରୁଷୋତ୍ତମ ଜଗନ୍ନାଥ (ଆମ ଜଗନ୍ନାଥ : ଆମ ସାହିତ୍ୟ, ପୃ ୧୯୨)–ଅଧ୍ୟାପକ ରାମଚନ୍ଦ୍ର ତ୍ରିପାଠୀ ।

୨୨୬ । ଋଗ୍ ବେଦ, ପୁରୁଷ ସୂକ୍ତ । ୨୨୭ । ଉପନିଷଦ୍‌ର ଶାନ୍ତି ମନ୍ତ୍ର ।

୨୨୮ । ଶ୍ରୀମଦ୍ ଭଗବଦ୍ ଗୀତା, ୧୫/୧୮ ।

୨୨୯ । କ- O. H. R. J., Vol. XVII, pp 211-212,

ଖ- J. A. S. B., LXV, 1896, part I, p. 229,

ଗ- ଜ୍ଞାନକୋଷ, ଦ୍ୱିତୀୟ ଖଣ୍ଡ, ପୃ ୪୨୩–ସମ୍ପାଦନା–ଉତ୍କଳ ବିଶ୍ୱବିଦ୍ୟାଳୟ । ୨୩୦ । ଶ୍ୱେତାଶ୍ୱତର, ୩/୧୯ ।

୨୩୧ । କୈବଲ୍ୟୋପନିଷଦ୍, ମନ୍ତ୍ର ୨୧ । ୨୩୨ । ଓଡ଼ିଆ ସାହିତ୍ୟର କ୍ରମ ପରିଣାମ, ୨ୟ ଭାଗ, ପୃ ୮୨–ପଣ୍ଡିତ ନୀଳକଣ୍ଠ ଦାସ ।

୧୭୩ । ନୀଳଚକ୍ର (ନନ୍ଦିଘୋଷ, ପ୍ରଥମ ବର୍ଷ, ପ୍ରଥମ ସଂଖ୍ୟା, ପୃ ୮)–ଅଧ୍ୟାପକ ଗୌରୀ କୁମାର ବ୍ରହ୍ମା । ୧୭୪ । 'ନୀଳଚକ୍ର'–ଉତ୍କଳୀୟ ସଂସ୍କୃତିର ପ୍ରତୀକ (ନନ୍ଦିଘୋଷ, ପ୍ରଥମ ବର୍ଷ, ପ୍ରଥମ ସଂଖ୍ୟା, ପୃ ୫)–ପଣ୍ଡିତ ସଦାଶିବ ରଥ ଶର୍ମା । ୧୭୫ । 'ବିଜେ ସିନ୍ଧି' (ପୋଥି) ।

୧୭୬ । 'ନୀଳଚକ୍ର'–ଉତ୍କଳୀୟ ସଂସ୍କୃତିର ପ୍ରତୀକ (ନନ୍ଦିଘୋଷ, ପ୍ରଥମ ବର୍ଷ, ପ୍ରଥମ ସଂଖ୍ୟା, ପୃ ୫)–ପଣ୍ଡିତ ସଦାଶିବ ରଥ ଶର୍ମା ।

୧୭୭ । ରସକଲ୍ଲୋଳ ୧/୧୩-୨, ୧/୧୪-୧–ଦୀନକୃଷ୍ଣ ଦାସ ।

୧୭୮ । ନୀଳଚକ୍ର (ନନ୍ଦିଘୋଷ, ୧/୧, ପୃ ୮, ୧୭୯ । କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ପ୍ରଥମ ଛାନ୍ଦ । ୧୮୦ । ସଂସ୍କୃତ ଓ ସଂସ୍କୃତି, ପୃ ୩୧–ପଣ୍ଡିତ ନୀଳକଣ୍ଠ ଦାଶ । ୧୮୧ । ମହାନିର୍ବାଣ ତନ୍ତ୍ର ୩/୯୨ ।

୧୮୨ । ତତ୍ରୈବ, ୩/୮୭, ୮୯ । ୧୮୩ । ସ୍କନ୍ଦ ପୁରାଣ, ଉତ୍କଳ ଖଣ୍ଡ ।

୧୮୪ । ଏହି ଅଛି ଶ୍ରୀଛାମୁରେ (କବିତା)–ବନମାଳୀ ଦାସ ।

୧୮୫ । ଜଗନ୍ନାଥ ଧର୍ମ ଓ ଓଡ଼ିଆ ସାହିତ୍ୟ (ସମାଜ, ଶ୍ରାଦ୍ଧ ସଂଖ୍ୟା, ୧୯୭୫)–ଖଗେନ୍ଦ୍ର ନାଥ ମଲ୍ଲିକ । ୧୮୬ । କପିଳ ସଂହିତା, ୧୯୨୮ ସଂସ୍କରଣ ପୃ ୨୧ । ୧୮୭ । ସଂସ୍କୃତ ଓ ସଂସ୍କୃତି, ପୃ ୧୦୨-୧୦୩–ପଣ୍ଡିତ ନୀଳକଣ୍ଠ ଦାଶ । ୧୮୮ । ପ୍ରବାହ (ପ୍ରଗତି ସାହିତ୍ୟ ସଂସଦ, ବାଣୀବିହାରର ମୁଖପତ୍ର, ପୃ ୨-୩ –ଡଃ ବାସୁଦେବ ସାହୁ ।

୧୮୯ । ତତ୍ରୈବ, ପୃ ୪-୫ । ୧୯୦ । ଜଗନ୍ନାଥ ବିଶ୍ୱମୈତ୍ରୀର ପ୍ରତୀକ (ସାହିତ୍ୟ ସଂହତି ସଂସ୍କୃତି, ପୃ ୧୫୧)–ପଠାଣି ପଟ୍ଟନାୟକ ।

## ଜଗନ୍ନାଥଙ୍କ ଇତିହାସ

ଜଗନ୍ନାଥ ଉପାସନାର ପ୍ରାଚୀନତା ପ୍ରତିପାଦନ ପାଇଁ ଭାରତୀୟ ପୁରାଣ, ଉତ୍କଳୀୟ ପ୍ରାଚୀନ ସାହିତ୍ୟ ଓ କିମ୍ବଦନ୍ତୀରେ ଅଜସ୍ର ଉପାଦାନ ଭରି ରହିଛି । ଐତିହାସିକ ସତ୍ୟତା ପାଇଁ ଏଗୁଡ଼ିକ ଉପରେ ସମ୍ପୂର୍ଣ୍ଣ ନିର୍ଭର କରଯାଇ ନ ପାରିଲେ ମଧ୍ୟ ଜଗନ୍ନାଥଙ୍କ ପ୍ରାଚୀନତା ସମ୍ପର୍କରେ ଏଗୁଡ଼ିକ ଯଥେଷ୍ଟ ସୂଚନା ଦେଇଥାନ୍ତି । ପୌରାଣିକ ଓ କିମ୍ବଦନ୍ତୀମୂଳକ ଉପାଦାନଗୁଡ଼ିକୁ ଛାଡ଼ିଦେଲେ ମଧ୍ୟ ଜଗନ୍ନାଥଙ୍କର ଓ ଜଗନ୍ନାଥ ଧାମର ପ୍ରାଚୀନତା ପ୍ରମାଣ ପାଇଁ ଆମ ଆଗରେ ବିପୁଳ ପରିମାଣରେ ପ୍ରାତ୍ନତତ୍ତ୍ୱିକ, ଐତିହାସିକ, ଅଭିଲେଖିକ ଓ ସାହିତ୍ୟିକ ଉପାଦାନମାନ ରହିଛି । ସପ୍ତମ ଶତାବ୍ଦୀ ପୂର୍ବର କୌଣସି ଅଭିଲେଖରେ ନୀଳାଚଳ ବା ନୀଳଗିରିର ନାମୋଲେଖ ସୁଦ୍ଧା ଦେଖିବାକୁ ମିଳେ ନାହିଁ । କିନ୍ତୁ ସପ୍ତମ ଶତାବ୍ଦୀଠାରୁ ବିଭିନ୍ନ ଅଭିଲେଖରେ ନୀଳାଚଳ, ନୀଳଗିରି, ନୀଳ ମାଧବ, ପୁରୁଷୋତ୍ତମ, ଜଗନ୍ନାଥ, ପୁରୁଷୋତ୍ତମ କ୍ଷେତ୍ର ଓ ମହୋଦଧି ସମ୍ପର୍କୀୟ ବହୁ ତଥ୍ୟ ଉତ୍କୀର୍ଣ୍ଣ ହୋଇ ରହିଛି । ସପ୍ତମ ଶତାବ୍ଦୀର ପୂର୍ବବର୍ତ୍ତୀ ବହୁ ପୁରାଣ ଓ ସାହିତ୍ୟରେ ପୁରୁଷୋତ୍ତମ ଦେବତା ଓ ପୁରୁଷୋତ୍ତମ କ୍ଷେତ୍ରର ପ୍ରତ୍ୟକ୍ଷ ଅଥବା ପରୋକ୍ଷ ଉଲ୍ଲେଖ ଦେଖିବାକୁ ମିଳିଥାଏ ।

### ପୁରାଣରେ ଶ୍ରୀ ଜଗନ୍ନାଥ :–

ଏକ ତୀର୍ଥ କ୍ଷେତ୍ର ଭାବରେ ଜଗନ୍ନାଥ ଧାମର ଉଲ୍ଲେଖ ଆମେ ମହାଭାରତର ବନ ପର୍ବରେ ପାଇଥାଉ । ଏଥିରେ ଯୁଧିଷ୍ଠିରଙ୍କ ତୀର୍ଥାଟନ ପ୍ରସଙ୍ଗରେ କୁହାଯାଇଛି ଯେ ଯୁଧିଷ୍ଠିର ପତ୍ନୀ ଦ୍ରୌପଦୀ ଓ ଭାଇମାନଙ୍କ ସହିତ ସମୁଦ୍ର କୂଳେ କୂଳେ କଳିଙ୍ଗ

ଆଡ଼କୁ ଅଗ୍ରସର ହେଲେ । ସମସ୍ତେ ବୈତରଣୀ ନଦୀରେ ସ୍ନାନ ସାରି ପିତୃପୁରୁଷ ମାନଙ୍କ ଉଦ୍ଦେଶ୍ୟରେ ତର୍ପଣ କଲେ । ସେହିଠାରେ ଲୋମଶ ଋଷି ଯୁଧିଷ୍ଠିରଙ୍କୁ ସମୁଦ୍ର ତଟସ୍ଥ 'ମାହାବେଦୀର'ର ମହାତ୍ମ୍ୟ ବୁଝାଇଥିଲେ । (୨) ଏହି ମହାବେଦୀ ବୈତରଣୀ କୂଳସ୍ଥ ବିରଜା କ୍ଷେତ୍ର ଯାଜପୁର କି ମହୋଦଧି କୂଳସ୍ଥ ଶ୍ରୀକ୍ଷେତ୍ର ପୁରୀ ସଠିକ ଭାବରେ କହି ହେବ ନାହିଁ । ତେବେ ଏହି ବନପର୍ବର ୧୧୪ଓ୧୧୮ ଅଧ୍ୟାୟରେ ଇନ୍ଦ୍ରଦ୍ୟୁମ୍ନଙ୍କ ଯଜ୍ଞ ପ୍ରସଙ୍ଗରେ ଶ୍ରୀକ୍ଷେତ୍ର ପୁରୀର ଚିତ୍ର ସ୍ପଷ୍ଟ ସୂଚିତ ହୋଇଅଛି ।

ମହାଭାରତର ପରବର୍ତ୍ତୀ ଅଷ୍ଟାଦଶ ପୁରାଣମାନଙ୍କ ମଧ୍ୟରେ ମତ୍ସ୍ୟ ପୁରାଣ ଅପେକ୍ଷାକୃତ ଅଧିକ ପ୍ରାଚୀନ । (୩) ଏଥିରେ 'ବିମଳା ପୁରୁଷୋତ୍ତମ' 'ଗୋକର୍ଣ୍ଣଂ ଗଜକର୍ଣ୍ଣଂ ଚ ତଥା ଚ ପୁରୁଷୋତ୍ତମ' ଆଦି ଉକ୍ତିର ଉଲ୍ଲେଖ ରହିଛି (୪) । ଯାହା ପୁରୁଷୋତ୍ତମ ଠାକୁର ଓ ପୁରୁଷୋତ୍ତମ କ୍ଷେତ୍ରର ପ୍ରାଚୀନତା ସୂଚାଇଥାଏ । ବିଷ୍ଣୁ ପୁରାଣ (୪ର୍ଥ ଶତାବ୍ଦୀ)ରେ ଜଗନ୍ନାଥ - ଭକ୍ତ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ସ୍ୱୟମ୍ଭୁବ ମନୁଙ୍କ ଦଶମ ବଂଶଧର ବୋଲି ବର୍ଣ୍ଣନା କରାଯାଇଛି । (୫) ପଦ୍ମ ପୁରାଣରେ ପୁରୁଷୋତ୍ତମ ଓ ରାମଚନ୍ଦ୍ରଙ୍କ ମଧ୍ୟରେ ତଥା ମହାଲକ୍ଷ୍ମୀ ଓ ସୀତାଙ୍କ ମଧ୍ୟରେ ଅଭିନ୍ନତା ବର୍ଣ୍ଣନା କରାଯାଇଛି ଯଥା:—

"ଯୋ ସୌ ନୀଳାଦ୍ରି ବାସୀ ତ
ସଃ ରାମଃ ପୁରୁଷୋତ୍ତମଃ
ସୀତା ସାକ୍ଷାତ୍ ମହାଲକ୍ଷ୍ମୀ
ସର୍ବ କାରଣ କାରଣମ୍ ।"

ଏଥିରୁ ପ୍ରମାଣିତ ହେଉଛି ପଦ୍ମ ପୁରାଣ ରଚନା ବେଳକୁ ନୀଳାଦ୍ରି ଧାମ ଭାବରେ ପୁରୀ ଓ ପୁରୁଷୋତ୍ତମ ଭାବରେ ଜଗନ୍ନାଥ ପ୍ରସିଦ୍ଧି ଲାଭ କରି ସାରିଲେଣି । ଗରୁଡ଼ ପୁରାଣ ରଚନା ବେଳକୁ ପୁରୁଷୋତ୍ତମଙ୍କର ଖ୍ୟାତି ଆହୁରି ଅଧିକ ବ୍ୟାପକ ହୋଇଗଲାଣି ଓ ସେ ଗୋବିନ୍ଦ, କେଶବ, ଦାମୋଦର, ବିଷ୍ଣୁ, ତ୍ରିବିକ୍ରମ,

ନାରାୟଣ, ହରି, ବାସୁଦେବ ପ୍ରଭୃତି ନାମରେ ଅଭିହିତ ହେଉଛନ୍ତି । (୭) ଅଗ୍ନି ପୁରାଣରେ ପୁରୁଷୋତ୍ତମଙ୍କୁ ଶାଳଗ୍ରାମ, ବାସୁଦେବ, ସଂକର୍ଷଣ, ପ୍ରଦ୍ୟୁମ୍ନ, ଅନିରୁଦ୍ଧ, କୃଷ୍ଣ, ବିଷ୍ଣୁ, ନୃସିଂହ, ବାମନ, ତ୍ରିବିକ୍ରମ, ଅନନ୍ତ, ଦାମୋଦର ଓ ସୁଦର୍ଶନ ଭାବରେ ଅଭିହିତ କରାଯାଇଛି । (୮) ବ୍ରହ୍ମ ପୁରାଣରେ ଅଛି– ପୁରୁଷୋତ୍ତମ କ୍ଷେତ୍ରରେ 'ଇନ୍ଦ୍ରନୀଳାଖ୍ୟ ବିଗ୍ରହ' ପୂଜା ପାଉଥିଲେ । ଏହି ବିଗ୍ରହ ଦର୍ଶନ କଲେ ପ୍ରାଣୀ ଚତୁର୍ଭୁଜ ହୋଇ ଶ୍ୱେତ ଲୋକକୁ ଗମନ କରୁଥିଲେ । ତେଣୁ ଯମ ଭଗବାନଙ୍କ ପାଖରେ ଅଭିଯୋଗ କଲେ । ଭଗବାନ ଏହି ବିଗ୍ରହକୁ ବାଲୁକାରାଶି ମଧ୍ୟରେ ଲୁକ୍କାୟିତ କରିଦେଲେ । ଇନ୍ଦ୍ରଦ୍ୟୁମ୍ନ ଏହି ପୁରୁଷୋତ୍ତମ କ୍ଷେତ୍ରକୁ ଯାଇ ଅଶ୍ୱମେଧ ଯଜ୍ଞ ଅନୁଷ୍ଠାନ କରିଥିଲେ । ସେ ସ୍ୱପ୍ନରେ ଦେଖିଲେ ଯେ ସମୁଦ୍ର ବକ୍ଷରେ ଏକ ମହାଦ୍ରୁମ ଭାସି ଆସୁଛି । ସତକୁ ସତ ସକାଳେ ସେ ଏହି ଦୃଶ୍ୟ ଦେଖିବାକୁ ପାଇଲେ । ବଢ଼େଇ ଛଦ୍ମବେଶରେ ଆସିଥିବା ବିଶ୍ୱକର୍ମାଙ୍କଦ୍ୱାରା ଏହି ଦାରୁରୁ ତ୍ରିମୂର୍ତ୍ତି ଗଠିତ ହୋଇଥିଲେ । (୯) ଏହି ପୁରାଣରେ କଳ୍ପବଟକୁ ପୁରୁଷେଶ ଓ ପୁରୁଷୋତ୍ତମ ବୋଲି କୁହାଯାଇଛି । (୧୦)

ନାରଦ ପୁରାଣରେ ମଧ୍ୟ ଇନ୍ଦ୍ରଦ୍ୟୁମ୍ନ ଉପାଖ୍ୟାନ ରହିଛି । ବ୍ରହ୍ମ ପୁରାଣରେ ବର୍ଣ୍ଣିତ ଉପାଖ୍ୟାନ ସହିତ ଏହି ଉପାଖ୍ୟାନର ବହୁ ସାମଞ୍ଜସ୍ୟ ରହିଛି ।

ସ୍କନ୍ଦ ପୁରାଣର ପୁରୁଷୋତ୍ତମ ମାହାତ୍ମ୍ୟରେ ନୃସିଂହ ଓ ଜଗନ୍ନାଥଙ୍କୁ ଅଭିନ୍ନ ବୋଲି କଳ୍ପନା କରାଯାଇଛି । ରତ୍ନ ବେଦୀ ଉପରେ ଏ ଦୁହିଁଙ୍କର ଶକ୍ତି ରୂପେ ଧରା ଓ ରମାଙ୍କୁ ସ୍ଥାପିତ କରାଯାଇଥିଲା । ନୃସିଂହ ପୁରୁଷୋତ୍ତମ ବା ବ୍ରହ୍ମଙ୍କର ସ୍ୱରୂପ ଭାବରେ ବର୍ଣ୍ଣିତ ହୋଇଛନ୍ତି । ସେ ବେଦର ଯଜ୍ଞ ପୁରୁଷ ବା ବେଦାନ୍ତର ବ୍ରହ୍ମଙ୍କ ପରି ସର୍ବବ୍ୟାପୀ, ଅନନ୍ତପାଦ, ସହସ୍ରାକ୍ଷ, ସହସ୍ରକର୍ଣ୍ଣ, ଅଦୂରତମ ଓ ସୁଦୂରତମ । ଅନନ୍ତ ଅନ୍ତରୀକ୍ଷର ଅସଂଖ୍ୟ ନକ୍ଷତ୍ରମାଳା ତାଙ୍କ ବକ୍ଷର ହାର ସଦୃଶ । (୧୧) ବିଭିନ୍ନ କିମ୍ବଦନ୍ତୀ ଓ ପୌରାଣିକ ଉପାଖ୍ୟାନରୁ ଜଣାଯାଏ ଯେ ନୃସିଂହ ହେଉଛନ୍ତି ପୁରୁଷୋତ୍ତମ କ୍ଷେତ୍ରର ପ୍ରାଚୀନତମ ଦେବତା । ଇନ୍ଦ୍ରଦ୍ୟୁମ୍ନଙ୍କ ଦ୍ୱାରା ପୂଜିତ ତ୍ରିମୂର୍ତ୍ତି ହେଉଛନ୍ତି ନୃସିଂହଙ୍କର ପରବର୍ତ୍ତୀ ।

ସ୍କନ୍ଦ ପୁରାଣରେ ବ୍ରହ୍ମ ପୁରାଣ ପରି କଳ୍ପବୃକ୍ଷକୁ ନାରାୟଣ ସ୍ୱରୂପ ବୋଲି ବର୍ଣ୍ଣନା କରାଯାଇଛି :—

"ନ୍ୟଗ୍ରୋଧ ରୂପଂ ଦୃଷ୍ଟ୍ୱାପି
ନାରାୟଣମକଳ୍ମଷମ୍
ନିଷ୍ପାପୋ ଜାୟତେ ମର୍ତ୍ତ୍ୟଃ
କିମୂତଂ ପୂଜୟନ୍ ସ୍ତୁବନ୍ ।" (୧୨)

ବ୍ରହ୍ମାଙ୍କ ପ୍ରଶ୍ନ ଓ ବିଷ୍ଣୁଙ୍କ ଉତ୍ତର ଛଳରେ ପୁରୁଷୋତ୍ତମ କ୍ଷେତ୍ରର ନୀଳଗିରିଠାରେ ସ୍ୱୟଂ 'ନୀଳମାଧବ' ପୂଜା ପାଉଥିବା କଥା ଓ ତାହାଙ୍କୁ ଦର୍ଶନ କରିବା ମାତ୍ରେ ସାଯୁଜ୍ୟ ମୁକ୍ତି ବା ଚତୁର୍ଭୁଜତ୍ୱ ପ୍ରାପ୍ତ ହେବା କଥା ସ୍କନ୍ଦ ପୁରାଣରେ ବର୍ଣ୍ଣିତ ଅଛି । (୧୩) ବ୍ରହ୍ମ ପୁରାଣ ପରି ଏଥିରେ ମଧ୍ୟ ଉଲ୍ଲେଖ ଅଛି ଯେ ଯମ ଭଗବାନଙ୍କ ପାଖରେ ଅଭିଯୋଗ ଉପସ୍ଥାପିତ କଲେ । ଫଳରେ ନୀଳମାଧବ କିଛି ଦିନ ଅନ୍ତର୍ହିତ ହୋଇଗଲେ । (୧୪) ଏହି ନୀଳମାଧବ କଳ୍ପବୃକ୍ଷର ପଶ୍ଚିମରେ ଥିବା ରୋହିଣୀ କୁଣ୍ଡର ଉତ୍ତର ଦିଗରେ ଶବରମାନଙ୍କ ଦ୍ୱାରା ପୂଜା ପାଉଥିଲେ । ପୃଥିବୀର ଅନ୍ୟ କେହି ନୀଳମାଧବଙ୍କୁ ଦେଖିପାରି ନ ଥିଲେ । କେବଳ ଦେବତାମାନେ ପ୍ରତ୍ୟହ ଆସି ଏହାଙ୍କୁ ପୂଜା କରି ଫେରି ଯାଉଥିଲେ । (୧୫) ଏହି ପୁରାଣରେ ବିଶ୍ୱାବସୁ ଶବର, ଇନ୍ଦ୍ରଦ୍ୟୁମ୍ନ ଓ ବିଦ୍ୟାପତି ପ୍ରଭୃତିଙ୍କ ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି । ଏଥିରେ 'ମହାବେଦୀ'ର ବର୍ଣ୍ଣନା ମଧ୍ୟ ଅଛି । (୧୬)

ବିଶ୍ୱାବସୁ ଶବର ଉପାଖ୍ୟାନରୁ ସ୍ପଷ୍ଟ ଅନୁମିତ ହେଉଛି ଯେ ପୁରୁଷୋତ୍ତମ କ୍ଷେତ୍ରରେ ତ୍ରିମୂର୍ତ୍ତି ଉପାସନା ପୂର୍ବରୁ ମାଧବ ପୂଜା ପ୍ରସାର ଲାଭ କରିଥିଲା । ଏହି ମାଧବଙ୍କୁ 'ନୀଳମାଧବ' କହିବାର କାରଣ ବୋଧହୁଏ ବିଷ୍ଣୁଙ୍କ ନୀଳ ମୂର୍ତ୍ତି ପଥରର ମୂର୍ତ୍ତି—ପୂଜାର ପ୍ରାଧାନ୍ୟ । ଶବରମାନେ ଏହି ମୂର୍ତ୍ତି ପୂଜା କରୁଥିଲେ । (୧୭)

ନୀଳମାଧବ ପ୍ରଥମେ ଶବରମାନଙ୍କ ଦ୍ୱାରା ପୂଜା ପାଉଥିଲେ ହେଁ ମାଧବ, ଜଗନ୍ନାଥ, ଚକ୍ରୀ, ମଧୁସୂଦନ, ବିଷ୍ଣୁ, ହରି, ମୁକୁନ୍ଦ, ଅଚ୍ୟୁତ, କୃଷ୍ଣ ନୃସିଂହ; ନାରାୟଣ ପ୍ରଭୃତି ସମପର୍ଯ୍ୟାୟବାଚୀ ହୋଇଯାଇଥିବାରୁ ମାଧବ ବୈଷ୍ଣବ ଦେବତା ପରି ମନେ ହୋଇଥାନ୍ତି । (୧୮) ଏହି ପୁରାଣରେ ଜଗନ୍ନାଥ ବୈଦିକ ଦେବତା ରୂପରେ ବର୍ଣ୍ଣିତ ହୋଇଛନ୍ତି । ଜଗନ୍ନାଥ (ପୁରୁଷୋତ୍ତମ)ଙ୍କ ମହାତ୍ମ୍ୟ ବର୍ଣ୍ଣନରେ ଏକପାଦ, ତ୍ରିପାଦ, ତୀର୍ଥପାଦ, ଅନ୍ତରୀକ୍ଷପାଦ ପ୍ରଭୃତି ଶବ୍ଦର ପ୍ରୟୋଗ ଏହାର ପ୍ରମାଣ । ଏଥିରେ ଅଧିକନ୍ତୁ ଉଲ୍ଲେଖ ଅଛି ଯେ ପୁରୁଷୋତ୍ତମଙ୍କ ପାଦରୁ ଗଙ୍ଗା ପ୍ରବାହିତ ହୋଇ ସମଗ୍ର ବିଶ୍ୱକୁ ପବିତ୍ର କରୁଅଛନ୍ତି । (୧୯)

ସ୍କନ୍ଦ ପୁରାଣରେ ଜଗନ୍ନାଥ ଦାରୁବ୍ରହ୍ମ ରୂପେ ମଧ୍ୟ କଥିତ ହୋଇଛନ୍ତି ।(୨୦) ସେ ବେଦାନ୍ତର ବ୍ରହ୍ମ ଓ ନୀଳାଚଳରେ ତାହାଙ୍କୁ ବିଦ୍ୟାପତି ଏହି ରୂପରେ ହିଁ ଦର୍ଶନ କରିବାକୁ ପାଇଥିଲେ । (୨୧) ସେ ପୃଥିବୀର ଆଦିମୂଳ ଓ ଆତ୍ମା ସ୍ୱରୂପ, ସେ ପୁଣି ଶବ୍ଦ ବ୍ରହ୍ମ, ସଦାଚିତ୍ ଓ ଆନନ୍ଦ ସ୍ୱରୂପ । ଶ୍ୱେତ ଦ୍ୱୀପର ବିଷ୍ଣୁ ଓ ଜଗନ୍ନାଥଙ୍କ ମଧ୍ୟରେ କୌଣସି ଭେଦ ନାହିଁ । ସେ ରମାନାଥ (ଲକ୍ଷ୍ମୀପତି) ଭାବରେ ମଧ୍ୟ ଅଭିହିତ । (୨୨)

ରୁଦ୍ର ଯାମଳ ଗ୍ରନ୍ଥରେ ବିଭିନ୍ନ ଛନ୍ଦରେ ଜଗନ୍ନାଥଙ୍କ ନାମୋଲ୍ଲେଖ ଦେଖିବାକୁ ମିଳେ । ଯଥା :—

ମହାକନ୍ଦବାସୀ ମହାନନ୍ଦବାସୀ
ପୂରଗ୍ରାମବାସୀ ମହାପୀଠଦେଶା ।
ଜଗନ୍ନାଥ ବକ୍ଷଃସ୍ଥଳସ୍ଥୋ ବରେଣ୍ୟୋ
ଚିତ୍ରାନନ୍ଦ କର୍ତ୍ତା ଶିବାନନ୍ଦ କର୍ତ୍ତ୍ରୁଃ ।”(୨୩)
ବ୍ରହ୍ମା ବିଷ୍ଣୁଶ୍ଚ ରୁଦ୍ରଶ୍ଚ ଈଶ୍ୱରଶ୍ଚ ସଦାଶିବଃ
ତତଃ ପର ଶିବଃଶମ୍ଭୋଃ ଷଟ୍‌ଶିବାଃ ଷଟ୍ ପ୍ରକାଶକାଃ ।
କ୍ରିୟା ନିବିଷ୍ଟଃ ସର୍ବତ୍ର ଭବନାଗ୍ରହ ରୂପଧୃକ୍
ସ ପଶ୍ୟତି ଜଗନ୍ନାଥଂ କମଳୋଦ୍ଭବଚଂ ହରି ।” (୨୪)

କାଳିକା ପୁରାଣରେ ଓଡ଼ିଶାକୁ ଭାରତର ପ୍ରଥମ ତାନ୍ତ୍ରିକ ପୀଠ ରୂପେ ଓ ଜଗନ୍ନାଥଙ୍କୁ ଏହାର ଅଧିଷ୍ଠାତା ଦେବତା ଭାବରେ ବର୍ଣ୍ଣନା କରଯାଇଛି–

"ଓଡ୍ରାଖ୍ୟଂ ପ୍ରଥମଂ ପୀଠଂ ଦ୍ୱିତୀୟଂ ଜାଳଶୈଳକମ୍
ତୃତୀୟ ପୂର୍ଣ୍ଣ ପୀଠନ୍ତୁ କାମରୂପଂ ଚତୁର୍ଥକମ୍
ଓଡ୍ରପୀଠଂ ପଶ୍ଚିମେତୁ ତଥୈବୋଡ୍ରେଶ୍ୱରୀ ଶିବାମ୍
କାତ୍ୟାୟିନୀଂ ଜଗନ୍ନାଥମୋଡ୍ରେଶଂ ଚ ପ୍ରପୂଜୟେତ୍ ।"(୧୫)

ତନ୍ତ୍ରଯାମାଳରେ ଲେଖା ଅଛି–

"ଭାରତେ ଶ୍ରେଷ୍ଠଙ୍କେ ଦେଶେ
ଭୂସ୍ୱର୍ଗେ ପୁରୁଷୋତ୍ତମେ
ଦାରୁରୂପୀ ଜଗନ୍ନାଥୋ
ଭକ୍ତା ନାମ ଭୟପ୍ରଦଃ ।" (୧୬)

ବେଦ, ଉପନିଷଦ୍ ଆଦିରେ ଶ୍ରୀଜଗନ୍ନାଥଙ୍କ ସୂଚନା :–

ଋଗ୍‌ବେଦ ଓ ଅଥର୍ବ ବେଦରେ ଦାରୁ ସମ୍ପର୍କୀୟ ଯେଉଁ ଉଲ୍ଲେଖ ରହିଛି, ତାହା ଶ୍ରୀଜଗନ୍ନାଥଙ୍କ ପୂର୍ବ ରୂପ ଦାରୁବ୍ରହ୍ମ ବୋଲି ଅନେକେ ମନେ କରିଥାନ୍ତି । ଏହି ଉଲ୍ଲେଖଟି ହେଉଛି :–

"ଅଦୋ ଯଦ୍ଦାରୁଃପ୍ଲବତେ
ସିନ୍ଧୋଃ ପାରେ ଅପୌରୁଷମ୍
ତଦା ରଭସ୍ୱ ଦୁର୍ହଣୋ ତେନ ଗଚ୍ଛ ପରସ୍ତରମ୍ ।" (୧୭)

ବେଦଭାଷ୍ୟକାର ସାୟଣାଚାର୍ଯ୍ୟ (୧୩୦୦ ଖ୍ରୀ:–୧୩୮୦ ଖ୍ରୀ :) ଏଥିରୁ ଦାରୁବ୍ରହ୍ମ ପୁରୁଷୋତ୍ତମଙ୍କର ସୂଚନା ମିଳୁଛି ବୋଲି ବ୍ୟାଖ୍ୟା କରିଛନ୍ତି :–

"ଅଦୌ ବିପ୍ରକୃଷ୍ଟ-ଦେଶେ ବର୍ତ୍ତମାନଂ ଯଦ୍ଦାରୁ ପୁରୁଷୋତ୍ତମାଖ୍ୟଂ ଦେବତା ଶରୀରଂ ପ୍ଲବତେ ଜଳସ୍ୟୋ ପରିବର୍ତ୍ତତେ ଅପୁରୁଷଂ ନିର୍ମାତୃରହିତତ୍ୱେନ ଅପୁରୁଷଂ ତତ୍ ଆଲଭସ୍ୱ ଦୁର୍ହାନୋ ହେ ହୋତଃ । ତେନ ଦାରୁମୟେନ ଦେବେନ ଉପାସ୍ୟମାନେନ ପରଂସ୍ଥଳଂ ବୈଷ୍ଣବ-ଲୋକଂ ଗଚ୍ଛବତ୍ୟର୍ଥଃ ।"(୧୮)

ସାୟଣାଚାର୍ଯ୍ୟଙ୍କର ଏହି ବ୍ୟାଖ୍ୟା ଆଧୁନିକ ଐତିହାସିକମାନଙ୍କ ଦ୍ୱାରା ସମର୍ଥିତ ହୁଏ ନାହିଁ । ତେବେ ଉପର୍ଯ୍ୟୁକ୍ତ ଶ୍ଲୋକର ଅନୁରୂପ ଏକ ଶ୍ଲୋକ ସ୍କନ୍ଦ ପୁରାଣର ଉତ୍କଳ ଖଣ୍ଡରେ ଦେଖିବାକୁ ମିଳେ । ଯଥା :—

"ଅହୋ ତବାୟଂ ଖଳୁ ଭାଗ୍ୟ ରାଶି
ଯେନାବିରାସୀଦ୍ଭୁବି ଦାରୁମୂର୍ତ୍ତିଃ ।
ଯସ୍ୟାଧ୍ୟୁପାସ୍ତିଂ ଶ୍ରୁତିରାହ ମୁକ୍ତି
ପ୍ରଦାନମାତ୍ମଜ୍ଞ ବିମୋହିତନାମ୍ ।
ସ ଏଷ ପ୍ଲବତେ ଦାରୁଃ
ସିନ୍ଧୁପାରେ ହ୍ୟପୌରୁଷଃ
ତମୁପାସ୍ୟ ଦୁରାରାଧ୍ୟଂ
ମୁକ୍ତିଂ ଯାତି ସୁଦୁର୍ଲଭମ୍ ।(୨୯)

ଏହାର ଅର୍ଥ ହେଉଛି, "ରାଜନ୍ । ତୁମର ଭାଗ୍ୟ ଅତି ଉତ୍ତମ । ମର୍ତ୍ତ୍ୟରେ ଯେଉଁ ଭଗବାନ ଦାରୁମୂର୍ତ୍ତି ରୂପେ ବିରାଜିତ ହୋଇଥିଲେ, ଯାହାଙ୍କୁ ଉପାସନା କଲେ ଆତ୍ମଜ୍ଞାନ ବିମୋହିତ ବ୍ୟକ୍ତିମାନଙ୍କର ମୋକ୍ଷଲାଭ ହୋଇଥାଏ, ସେହି ଅପୌରୁଷେୟ ଦୁରାରାଧ୍ୟ ଦାରୁ ସମୁଦ୍ର କୂଳରେ ଭାସମାନ ହେଉଅଛନ୍ତି । ତାହାଙ୍କୁ ଉପାସନା କଲେ ଅତ୍ୟନ୍ତ ଦୁର୍ଲଭ ମୁକ୍ତି ଲାଭ ହୁଏ ।"

ଏହି ଶ୍ଲୋକଗୁଡ଼ିକୁ ଭିତ୍ତି କରି ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ମତ ଦେଇଛନ୍ତି ଯେ ବେଦର ଏହି ବାକ୍ୟର ଅସ୍ତିତ୍ୱ ଉପରେ ସନ୍ଦେହ ପ୍ରକାଶ କରିବାର କୌଣସି କାରଣ ନାହିଁ ।(୩୦)

ଯଦି ବୈଦିକ କାଳର ଏହି ଦାରୁ ଜଗନ୍ନାଥଙ୍କ ପୂର୍ବ ରୂପ ଦାରୁ ରୂପେ ପ୍ରମାଣିତ ହୁଏ, ତେବେ ଜଣାଯିବ ଦାରୁରୂପୀ ଜଗନ୍ନାଥଙ୍କ ଅସ୍ତିତ୍ୱ ବୈଦିକ ଯୁଗରେ ଅର୍ଥାତ୍ ଖ୍ରୀଷ୍ଟପୂର୍ବ ଅନ୍ୟୁନ ଦେଢ଼ହଜାର ବର୍ଷ ତଳେ ଥିଲା ।

ଭଗବତ ସମ୍ପ୍ରଦାୟର ଇତିହାସ ଜଗନ୍ନାଥଙ୍କ ଉପାସନାର ଇତିହାସ ସନ୍ଧାନରେ କେତେକ ପରିମାଣରେ ସାହାଯ୍ୟ କରିଥାଏ । (୩୩) ଛାନ୍ଦୋଗ୍ୟ ଉପନିଷଦ୍‌ରେ ଦେବକୀ ପୁତ୍ର ଓ ଘୋର ଅଙ୍ଗୀରସଙ୍କ ଶିଷ୍ୟ ଭଗବତ ବାସୁଦେବ-କୃଷ୍ଣଙ୍କ ସମ୍ପର୍କରେ ବର୍ଣ୍ଣନା ରହିଛି । ଛାନ୍ଦୋଗ୍ୟ ଉପନିଷଦର ରଚନା ସମୟ ଖ୍ରୀ:ପୂ: ୬ଷ୍ଠ ଶତାବ୍ଦୀ । (୩୪) ପାଣିନିଙ୍କ ଅଷ୍ଟାଧ୍ୟାୟୀରେ 'ବାସୁଦେବ' ଭକ୍ତ 'ବାସୁଦେବଙ୍କ' ସମ୍ପର୍କରେ ଉଲ୍ଲେଖ ରହିଛି । ଅଷ୍ଟାଧ୍ୟାୟୀର ସମୟ ଖ୍ରୀ:ପୂ: ୫ମ ଶତାବ୍ଦୀ । (୩୫) ମେଗାସ୍ଥିନିସ୍‌ଙ୍କ ଇଣ୍ଡିକା ବିବରଣ ଅନୁଯାୟୀ ଖ୍ରୀ:ପୂ: ୪ର୍ଥ ଶତାବ୍ଦୀରେ କୃଷ୍ଣ (Heracles) କୃଷ୍ଣପୁର (Kleisobora) ଓ ମଥୁରା (Methora)ରେ ଦେବତା ରୂପେ ପୂଜା ପାଉଥିଲେ । (୩୬) ତୈତ୍ତିରୀୟ ଆରଣ୍ୟକରେ ବାସୁଦେବ ଓ ବିଷ୍ଣୁ ଅଭିନ୍ନ କଳ୍ପିତ ହୋଇଛନ୍ତି । (୩୭) ଏଇଠି ଆମେ ପ୍ରଥମଥର ପାଇଁ ଭଗବତ ସମ୍ପ୍ରଦାୟ ଓ ବୈଷ୍ଣବ ସମ୍ପ୍ରଦାୟ ମଧ୍ୟରେ ଅଭେଦ୍ୟ ଲକ୍ଷ୍ୟ କରୁ । ଏହି ଉପନିଷଦ୍‌ର ସମୟ ଖ୍ରୀ:ପୂ: ୩ୟ ଶତାବ୍ଦୀ । (୩୮) ଖ୍ରୀ:ପୂ: ଦ୍ୱିତୀୟ ଶତାବ୍ଦୀରେ ପତଞ୍ଜଳି ତାଙ୍କର ମହାଭାଷ୍ୟରେ ଅଷ୍ଟାଧ୍ୟାୟୀ (୪/୩/୯୮)ର ଭାଷ୍ୟ ଲେଖିଲାବେଳେ 'ବାସୁଦେବ'ଙ୍କୁ ଜଣେ ଦେବତା ଭାବରେ ବର୍ଣ୍ଣନା କରି ତାଙ୍କର ଉପାସନା ମଗଧ ପର୍ଯ୍ୟନ୍ତ ପରିବ୍ୟାପ୍ତ ହୋଇଥିଲା ବୋଲି ସୂଚନା ଦେଇଛନ୍ତି ।

ଖ୍ରୀ:ପୂ: ୬ଷ୍ଠ ଶତାବ୍ଦୀରୁ ବିଭିନ୍ନ ଗ୍ରନ୍ଥରେ ବର୍ଣ୍ଣିତ ଏହି ଭଗବତ, ବାସୁଦେବ ଓ ବିଷ୍ଣୁ କେବଳ ଉତ୍ତର ଭାରତରେ ନୁହେଁ, ଦକ୍ଷିଣ ଭାରତରେ ମଧ୍ୟ ଖ୍ରୀ:ପୂ: ୨ୟ ଶତାବ୍ଦୀ ବେଳକୁ ପୂଜିତ ହେଉଥିଲେ, ଅର୍ଥାତ୍ ଖ୍ରୀ:ପୂ: ୨ୟ ଶତାବ୍ଦୀ ବେଳକୁ ଦକ୍ଷିଣ ଭାରତରେ ଏକ ପ୍ରସିଦ୍ଧ ଧାର୍ମିକ କେନ୍ଦ୍ର ଓଡ଼ିଶାରେ ବୈଷ୍ଣବ ଧର୍ମର ପ୍ରସାର ଘଟି ସାରିଥିଲା । ଏହି ବୈଷ୍ଣବ ଧର୍ମର ପରମ ଉପାସ୍ୟ ଦେବତା ଭାବରେ ଜଗନ୍ନାଥଙ୍କର ଉଦ୍ଭବ ଘଟିଥିଲା । (୩୯)

## ଐତିହାସିକ ଭିତ୍ତିରେ ଜଗନ୍ନାଥଙ୍କ ଇତିହାସ :–

ମେଗାସ୍ଥିନିସ୍‌ଙ୍କ ବିବରଣ ଅନୁଯାୟୀ ଖ୍ରୀଷ୍ଟୀୟ ୪ର୍ଥ ଶତାବ୍ଦୀରେ କୃଷ୍ଣ (Heracles) କୃଷ୍ଣପୁର (Kleisobora)ଠାରେ ପୂଜା ଯାଉଥିବା କଥା

ଅବ୍ୟବହିତ ପୂର୍ବରୁ ଆଲୋଚିତ ହୋଇଅଛି । ଆର୍.ଜି. ଭଣ୍ଡାରକରଙ୍କ ମତରେ ଏହି କୃଷ୍ଣମୂର୍ତ୍ତି ସେତେବେଳେ ବାସୁଦେବ-କୃଷ୍ଣ ନାମରେ ହିଁ ପୂଜା ପାଉଥିଲେ । (୪୦) ବସୁଦେବଙ୍କର ପୁତ୍ର ହୋଇଥିବାରୁ କୃଷ୍ଣଙ୍କର ଅନ୍ୟ ନାମ ବାସୁଦେବ । ଭାରତର ଉତ୍ତର ପଶ୍ଚିମ ଦିଗରେ ବିତସ୍ତା ନଦୀର କୂଳେକୂଳେ ବାସୁଦେବ ଉପାସନାର ବହୁଳ ପ୍ରଚଳନ ଥିଲା । ତେଣୁ ପାଣିନି ଅଷ୍ଟାଧ୍ୟାୟୀରେ 'ବାସୁଦେବକ' ସମ୍ପ୍ରଦାୟର ଉଲ୍ଲେଖ କରିଛନ୍ତି । ଭାରତର ଦକ୍ଷିଣ ପୂର୍ବ ଦିଗରେ ପ୍ରାଚୀ ନଦୀର କୂଳେ କୂଳେ ମଧ୍ୟ ବାସୁଦେବ ପୂଜାର ବହୁଳ ପ୍ରଚଳନ ଥିଲା । (୪୧) ପରବର୍ତ୍ତୀ କାଳରେ ଏହି ବାସୁଦେବ 'ମାଧବ' ଭାବରେ ଅଭିହିତ ହୋଇ ଆଜି ପର୍ଯ୍ୟନ୍ତ ପ୍ରାଚୀ ଉପତ୍ୟକାର ବିଭିନ୍ନ ସ୍ଥାନରେ ପୂଜା ପାଉଛନ୍ତି ।(୪୨)

ମୂର୍ତ୍ତିତତ୍ତ୍ୱ ଦୃଷ୍ଟିରୁ ଏହି ଠାକୁରମାନଙ୍କୁ 'ମାଧବ' ଶ୍ରେଣୀରେ ନିଆଯାଇ ପାରିବ ନାହିଁ, 'ବାସୁଦେବ' ଶ୍ରେଣୀରେ ହିଁ ନିଆଯାଇ ପାରିବ । ୪୩) ପ୍ରାଚୀ ଉପତ୍ୟକାରେ ଉପାସିତ ମାଧବ ଠାକୁରମାନଙ୍କ ମଧ୍ୟରେ ନିଆଳି ଶୋଭନେଶ୍ୱର ମନ୍ଦିର ବେଢ଼ାରେ ସ୍ଥାପିତ ଦଶଟି ମାଧବ ମୂର୍ତ୍ତି (ସମ୍ପ୍ରତି ଓଡ଼ିଶା ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗଦ୍ୱାରା ସଂରକ୍ଷିତ), ନିଆଳି ବ୍ରହ୍ମା ମନ୍ଦିର ଜଗମୋହନ ମଧ୍ୟରେ ଖଚିତ ଦୁଇ ବିଷ୍ଣୁମୂର୍ତ୍ତି, କୋରକରଠାରେ ବୃକ୍ଷମୂଳରେ ସ୍ଥାପିତ ବିଷ୍ଣୁମୂର୍ତ୍ତି, ଚହଟାଠାରେ ପୂଜିତ ଲଳିତ ମାଧବ,ଅମରେଶ୍ୱରସ୍ଥ ଅମରେଶ୍ୱର ମନ୍ଦିରର ଜଗମୋହନ ମଧ୍ୟରେ ସ୍ଥାପିତ ଦୁଇ ବିଷ୍ଣୁମୂର୍ତ୍ତି, ପିତାପଡ଼ାର ଏକ ବୃକ୍ଷ ଉପର କୁଡ଼ିଆ ମଧ୍ୟରେ ପୂଜିତ ଦୁଇ ବିଷ୍ଣୁ ମୂର୍ତ୍ତି, ସୁହାଗପୁର ରାମେଶ୍ୱର ମନ୍ଦିରର ନାଟ ମନ୍ଦିର ମଧ୍ୟରେ ଥିବା ବିଷ୍ଣୁ ମୂର୍ତ୍ତି (୪ ଫୁଟ ୬ ଇଞ୍ଚ ଉଚ୍ଚ), ନିବାରଣସ୍ଥ ଗ୍ରାମେଶ୍ୱର ମନ୍ଦିର ବେଢ଼ାରେ ଏକ କ୍ଷୁଦ୍ର ମନ୍ଦିର ମଧ୍ୟରେ ପୂଜିତ ବିଷ୍ଣୁ, ନୀଳକଣ୍ଠପୁରର ନୀଳମାଧବ, କାକଟପୁର ମଙ୍ଗଳାଙ୍କ ମନ୍ଦିର ବେଢ଼ା ଭିତରେ ପୂଜିତ ବିଷ୍ଣୁ, ଲତାହରଣ ଗ୍ରାମେଶ୍ୱର ମନ୍ଦିରର ଜଗମୋହନ ମଧ୍ୟସ୍ଥ ବିଷ୍ଣୁ ମୂର୍ତ୍ତି ସମୂହ, ମୁଦ୍‌ଗଲ ମାଧବ ଗ୍ରାମର ରମଣୀୟ ମୁଦ୍‌ଗଲ ମାଧବ ମୂର୍ତ୍ତି, ସୋମେଶ୍ୱର ଗ୍ରାମର ସୋମେଶ୍ୱର ମନ୍ଦିରର ଜଗମୋହନ ମଧ୍ୟରେ ଥିବା ବିଷ୍ଣୁ ମୂର୍ତ୍ତି, କୃଷ୍ଣପ୍ରସାଦ ଗଡ଼ସ୍ଥ ବିଶ୍ୱନାଥ ମନ୍ଦିରର ଜଗମୋହନ ମଧ୍ୟରେ ଥିବା

ବିଷ୍ଣୁମୂର୍ତ୍ତି, କେନ୍ଦ୍ରାଇସ୍ଥ ବିଷ୍ଣୁମୂର୍ତ୍ତି ସମୂହ, ଅଡ଼ଶପୁରର ମାଧବ, କଣ୍ଟାପଡ଼ା ଗୋକର୍ଣ୍ଣେଶ୍ୱର ମନ୍ଦିରରେ ଥିବା ବିଷ୍ଣୁ ମୂର୍ତ୍ତି, କାକଟପୁର ଥାନା ଅନ୍ତର୍ଗତ ରଘୁନାଥ ପୁରରେ ମାଧବ ରୂପରେ ପୂଜିତ ବିଷ୍ଣୁ ମୂର୍ତ୍ତି, କାକଟପୁର ଥାନାନ୍ତର୍ଗତ ଗମ୍ଭାରିପଡ଼ାରେ ଭଗ୍ନ ଶିବମନ୍ଦିର ମଧ୍ୟରେ ମାଧବ ରୂପରେ ପୂଜିତ ବିଷ୍ଣୁ ମୂର୍ତ୍ତି, ନାସିକେଶ୍ୱର ଗ୍ରାମର ଶିବ ମନ୍ଦିର ମଧ୍ୟରେ ଥିବା ବିଷ୍ଣୁ ମୂର୍ତ୍ତି ଇତ୍ୟାଦି । ଏହି ସମସ୍ତ ମୂର୍ତ୍ତି ପ୍ରାଚୀ ଉପତ୍ୟକାରେ ମାଧବ ଉପାସନାର ସାକ୍ଷୀ ସ୍ୱରୂପ ବିଦ୍ୟମାନ ।(୪୪) ନିଆଳି ଓ ମାଧବ ଗ୍ରାମର ମଧ୍ୟବର୍ତ୍ତୀ ଅଞ୍ଚଳ ମାଧବ ଉପାସନାର କେନ୍ଦ୍ରସ୍ଥଳୀ ଥିଲା । କେବଳ ପ୍ରାଚୀ ଉପତ୍ୟକାରେ ନୁହେଁ ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳରେ ମଧ୍ୟ ମାଧବ ଉପାସନାର ପ୍ରଚଳନ ଥିଲା । ଗଙ୍ଗବଂଶର ନରପତିମାନେ ଅନେକ ସ୍ଥାନରେ ରମଣୀୟ ମାଧବ ମୂର୍ତ୍ତିମାନ ନିର୍ମାଣ କରାଇଥିଲେ । (୪୬)

ପ୍ରାଚୀ ଉପତ୍ୟକା ବ୍ୟତୀତ ଓଡ଼ିଶାର ଅନ୍ୟାନ୍ୟ ସ୍ଥାନରେ ପୂଜିତ ମାଧବ ମୂର୍ତ୍ତି ମଧ୍ୟରେ ବୌଦ୍ଧ ନିକଟସ୍ଥ ଗନ୍ଧରାଡ଼ିର ନୀଳମାଧବ, ପୁରୀଜିଲ୍ଲା ନୟାଗଡ଼ ସବ୍‌ଡିଭିଜନସ୍ଥ କଣ୍ଟିଲୋର ନୀଳମାଧବ ଅତି ପ୍ରାଚୀନ । ଗନ୍ଧରାଡ଼ିର ନୀଳମାଧବ ମନ୍ଦିର ପୁରୀ ମନ୍ଦିର ଠାରୁ ମଧ୍ୟ ଅଧିକ ପ୍ରାଚୀନ । (୪୭) ପୁରୀଜିଲ୍ଲାର ବିଭିନ୍ନ ସ୍ଥାନରେ ମାଧବ ଠାକୁର ନୀଳମାଧବ, ଲଳିତମାଧବ, ନିଆଳି ମାଧବ, ନିପାଣିଆ ମାଧବ ପ୍ରଭୃତି ନାମରେ ପୂଜା ପାଇ ଆସୁଅଛନ୍ତି । ସପ୍ତମ ଶତାବ୍ଦୀ ପୂର୍ବରୁ କଙ୍ଗୋଦରେ 'ଚକ୍ରଧର ମାଧବ' ପୂଜା ପାଉଥିବାର ଐତିହାସିକ ପ୍ରମାଣ ମିଳୁଅଛି । (୪୮) ଶୈଳୋଦ୍ଭବ ବଂଶୀୟ ରାଜାମାନେ 'ଚକ୍ରଧର ମାଧବ' ବା 'ଭଗବାନ୍ ମାଧବ'ଙ୍କର ପୂଜା କରୁଥିଲେ । ସେମାନେ ମୁଖ୍ୟତଃ ଶୈବ ଥିଲେ ମଧ୍ୟ ନିଜକୁ 'ଚକ୍ରଧର ମାଧବ'ଙ୍କ ସଙ୍ଗରେ ତୁଳନା କରିଛନ୍ତି । ଐତିହାସିକ ଉପାଦାନରୁ ଜଣାଯାଏ, 'ପୁରୁଷୋତ୍ତମ କ୍ଷେତ୍ର' କଙ୍ଗୋଦ ରାଜ୍ୟ ମଧ୍ୟରେ ଅବସ୍ଥିତ ଥିଲା । ସମ୍ଭବତଃ ଶୈଳୋଦ୍ଭବ ବଂଶୀୟ ରାଜାମାନଙ୍କ ଦ୍ୱାରା ଚକ୍ରଧର ମାଧବ (ନାରାୟଣ ମାଧବ) ପ୍ରଥମେ କୃଷ୍ଣଗିରିକୁ ଓ ଶେଷରେ ନୀଳଗିରିକୁ ସ୍ଥାନାନ୍ତରିତ ହେବାଫଳରେ ସେ ନୀଳପର୍ବତନାଥ ନୀଳମାଧବ ରୂପରେ ପରିଚିତ ହେଲେ । (୪୯)

ତେବେ ଏଇଠି ଗୋଟିଏ କଥା ଭୁଲିଗଲେ ଭୁଲ ହେବ । 'ଜଗନ୍ନାଥ' ନାମ ସୃଷ୍ଟି ପୂର୍ବରୁ ଯେଉଁ 'ନୀଳମାଧବ' ନୀଳଗିରିରେ ପୂଜା ପାଉଥିଲେ, ସେ ହେଉଛନ୍ତି ଶବର ଦ୍ୱାରା ଉପାସିତ ଦେବତା । ପ୍ରାଚୀ ଉପତ୍ୟକାରେ ଅନ୍ୟାନ୍ୟ ସ୍ଥାନରେ ଯେତେ ମାଧବ ପୂଜା ପାଉଥିଲେ ଓ ପାଇ ଆସୁଥିଛନ୍ତି, ସେମାନଙ୍କର ମୂର୍ତ୍ତି ପାଷାଣ ମୂର୍ତ୍ତି, କିନ୍ତୁ ଶବରମାନଙ୍କ ଦ୍ୱାରା ପୂଜିତ ନୀଳମାଧବ ହେଉଛନ୍ତି କାଷ୍ଠମୂର୍ତ୍ତି । ବା ଦାରୁମୂର୍ତ୍ତି । ଜଗନ୍ନାଥ ଦାରୁବ୍ରହ୍ମ । ତେଣୁ ଶବର-ପୂଜିତ ନୀଳମାଧବଙ୍କର ପରିଣତି ହିଁ ହେଉଛନ୍ତି ପ୍ରଭୁ ଶ୍ରୀଜଗନ୍ନାଥ ।

ଏଇଠି ନୀଳମାଧବଙ୍କର ଅନ୍ୟ ନାମ 'ଶବରୀ ନାରାୟଣ' ସମ୍ପର୍କରେ ବିଚାର କରଯାଉ । ଶବରମାନେ ଯେଉଁ ଦାରୁ ଦେବତାଙ୍କୁ ପୂଜା କରୁଥିଲେ, ପରବର୍ତ୍ତୀ କାଳରେ ନାରାୟଣ ଉପାସକ (ବିଷ୍ଣୁ-ଉପାସକ)ମାନେ ତାହାଙ୍କୁ ଶବରୀ ନାରାୟଣ ନାମରେ ଅଭିହିତ କରିଛନ୍ତି । ଶବରମାନଙ୍କର ଦାରୁଦେବତାଙ୍କୁ ଆର୍ଯ୍ୟମାନେ ନାରାୟଣ କହିଲେ ମଧ୍ୟ ତାଙ୍କର ପୂଜାରେ ଶବରମାନଙ୍କର ଅଧିକ ଅଧିକାର ଥିବାରୁ ତାଙ୍କର ବିଶେଷଣ ଥିଲା ଶବରୀ । ତେବେ କୌତୁହଳର ବିଷୟ, ବୌଦ୍ଧମାନେ ମଧ୍ୟ ଶବରୀନାରାୟଣଙ୍କୁ ନିଜର କରି ନେଇଛନ୍ତି ।

ବୌଦ୍ଧଧର୍ମର ବିଖ୍ୟାତ ଦାର୍ଶନିକ ନାଗାର୍ଜ୍ଜୁନ ଓଡ଼ିଶାରେ ବୌଦ୍ଧଧର୍ମର ପ୍ରଚାର କରୁଥିବାବେଳେ ଶବରମାନଙ୍କୁ ମଧ୍ୟ ଶିଷ୍ୟ ରୂପେ ଗ୍ରହଣ କରୁଥିଲେ । ଅଶୋକଙ୍କ ସମୟରୁ ବହୁ ଆଦିବାସୀ ବୌଦ୍ଧ ଧର୍ମରେ ଦୀକ୍ଷିତ ହୋଇ ଆସିଥିଲେ । ନାଗାର୍ଜ୍ଜୁନଙ୍କ ସମୟରେ ଅଧିକ ସଂଖ୍ୟାରେ ଆଦିବାସୀମାନେ ବୌଦ୍ଧଧର୍ମରେ ଦୀକ୍ଷିତ ହୋଇଥିଲେ ବୋଲି ଅନୁମାନ କରଯାଇ ପାରେ । ୫୦। ହସ୍ତୀବର୍ମନ୍‌ଙ୍କ ଏକ ଅଭିଲେଖରୁ ଜଣାଯାଏ ଷଷ୍ଠ ଶତାବ୍ଦୀରେ ଓଡ଼ିଶାରେ ବିଷ୍ଣୁ 'ନାରାୟଣ' ନାମରେ ପୂଜା ପାଉଥିଲେ । (୫୧) ମାଠର ବଂଶୀୟ ରାଜାମାନଙ୍କ ଦ୍ୱାରା ମହେନ୍ଦ୍ର ପର୍ବତରେ 'ନାରାୟଣ' ପୂଜା ପାଉଥିବାର ଐତିହାସିକ ପ୍ରମାଣ ରହିଛି । ମହେନ୍ଦ୍ର ପର୍ବତରେ ଶବରମାନଙ୍କ ଦ୍ୱାରା ପୂଜିତ ଦାରୁଦେବତା ଶବରୀ ନାରାୟଣ ହିଁ ମାଠରମାନଙ୍କ ଦ୍ୱାରା ନାରାୟଣ ଭାବରେ ପୂଜିତ ହେଉଥିଲେ । ଦାରୁଦେବତା ଶବରୀ ନାରାୟଣ' ଭାବରେ କେବଳ ମହେନ୍ଦ୍ର ପର୍ବତରେ

ନ୍ତହନ୍ତି, ଓଡ଼ିଶାର ବହୁ ସ୍ଥାନରେ ପୂଜା ପାଉଥିଲେ । ପୁରୁଷୋତ୍ତମ କ୍ଷେତ୍ରର ରୋହିଣୀ କୁଣ୍ଡ ନିକଟରେ 'ଶବରୀ ନାରାୟଣ' ପୂଜା ପାଉଥିବାର ପୌରାଣିକ ଉପାଖ୍ୟାନ ଓ କିମ୍ବଦନ୍ତୀର ସତ୍ୟତାକୁ ଏକାବେଳକେ ଏଡ଼ାଇ ହେବ ନାହିଁ । ସାରଳା ମହାଭାରତରୁ ମଧ୍ୟ ଜଣାଯାଏ, ଶବରୀ ନାରାୟଣ ଭୁବନେଶ୍ୱର ନିକଟସ୍ଥ ଧଉଳି ପାହାଡ଼ ନିକଟରେ ପୂଜା ପାଉଥିଲେ ।

ଶବରମାନଙ୍କର ଦାରୁଦେବତା ବୌଦ୍ଧ ଓ ବୈଷ୍ଣବ ଧର୍ମ ଦ୍ୱାରା ପ୍ରଭାବିତ ହୋଇ କ୍ରମଶଃ ପୁରୁଷୋତ୍ତମ ଓ ଜଗନ୍ନାଥରେ ପରିଣତ ହୋଇଛନ୍ତି ।

ହଣ୍ଟର ମାଦଳା ପାଞ୍ଜିର ବିବରଣ ଉପରେ ବିଶ୍ୱାସ କରି ଓ ରକ୍ତବାହୁର ପୁରୀ ମନ୍ଦିର ଆକ୍ରମଣକୁ ଭିତ୍ତି କରି ଜଗନ୍ନାଥଙ୍କୁ ଓ ଜଗନ୍ନାଥ ମନ୍ଦିରକୁ ୩୧୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଟାଣି ନେଇଛନ୍ତି । (୫୨) କିନ୍ତୁ ରକ୍ତବାହୁ ଐତିହାସିକ ବ୍ୟକ୍ତି ଭାବରେ ପ୍ରମାଣିତ ହୋଇ ପାରିନାହିଁ । ଜଗନ୍ନାଥ ମନ୍ଦିର ମଧ୍ୟ ଏତେ ପ୍ରାଚୀନ ନୁହେଁ ।

ଡକ୍ଟର କାହ୍ନୁଚରଣ ମିଶ୍ରଙ୍କ ମତରେ ଶୈଳୋଦଭବ ବଂଶୀୟ ରାଜାମାନଙ୍କର ପତନ ପରେ ଯେତେବେଳେ ଭୌମକର ବଂଶୀୟ ରାଜାମାନଙ୍କର ଅଭ୍ୟୁଦୟ ଘଟିଲା, ସେତେବେଳେ ପୁରୁଷୋତ୍ତମ, ବଳଭଦ୍ର ଓ ସ୍ତମ୍ଭେଶ୍ୱରୀ ଯଥାକ୍ରମେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଭାବରେ ଅଭିହିତ ହେଲେ ଓ ଓଡ଼ିଶା (କଙ୍ଗୋଦ ଏବଂ ତୋଷାଳୀ)ର ଇଷ୍ଟଦେବତା ଭାବରେ ପୂଜିତ ହେଲେ । (୫୩) ସ୍ତମ୍ଭେଶ୍ୱରୀ ମଧ୍ୟ ଦାରୁ ଦେବତା ଭାବରେ ପ୍ରଥମେ ଶବରମାନଙ୍କ ଦ୍ୱାରା ପୂଜା ପାଉଥିଲେ ଓ ୪ର୍ଥ-୫ମ ଶତାବ୍ଦୀ ବେଳକୁ ଦକ୍ଷିଣ କୋଶଳ, କଳିଙ୍ଗ, ମହାକାନ୍ତାର, କଙ୍ଗୋର୍ଦ, ଉତ୍ତରକୋଶଳ ପ୍ରଭୃତି ଅଞ୍ଚଳରେ ଆର୍ଯ୍ୟମାନଙ୍କର ଦେବତା ଭାବରେ ସ୍ୱୀକୃତି ଲାଭ କରିଥିଲେ । କଳାହାଣ୍ଡି ଜିଲ୍ଲାର ତେରସିଙ୍ଗା ଗ୍ରାମରୁ ପ୍ରାପ୍ତ ଏକ ତାମ୍ରଲେଖରୁ ପ୍ରମାଣ ମିଳେ ଯେ ରାଜା ତୁଷ୍ଟିକର ସ୍ତମ୍ଭେଶ୍ୱରୀଙ୍କର ଉପାସକ ଥିଲେ । (୫୪) ସ୍ତମ୍ଭେଶ୍ୱରୀ ଶୁଲ୍‌କୀମାନଙ୍କର ମଧ୍ୟ କୁଳଦେବତା ଥିଲେ । (୫୫)

୬ଷ୍ଠ ୭ମ ଶତାବ୍ଦୀର ଲୋକବିଗ୍ରହଙ୍କ କଣାସ ତାମ୍ରଲେଖ ଓ ଭାନୁବର୍ଦ୍ଧନଙ୍କର ଓଙ୍ଗଚିଂ ତାମ୍ରଲେଖରୁ ପ୍ରମାଣ ମିଳେ ଯେ ଏହି ସମୟରେ ମଧ୍ୟ-ଓଡ଼ିଶା ଓ ପୂର୍ବ-ଓଡ଼ିଶାରେ ମଣିନାଗେଶ୍ୱର ନାମରେ ଜଣେ ଦେବତା ପୂଜା ପାଉଥିଲେ । (୫୬) ନାଗପୂଜା ମଧ୍ୟ ଶବରମାନଙ୍କ ମଧ୍ୟରେ ପ୍ରଥମେ ପ୍ରଚଳିତ ଥିଲା । ଏହି ନାଗ ଦେବତା ହିନ୍ଦୁମାନଙ୍କର ବଳଦେବ ବା ବଳଭଦ୍ରରେ ପରିଣତ ହୋଇଅଛନ୍ତି ।

ଆଗରୁ ଶବରୀ ନାରାୟଣ ଭାବରେ ପୂଜିତ ଦେବତା ପୁରୁଷୋତ୍ତମ ବା ଜଗନ୍ନାଥରେ ପରିଣତ ହେବା ପରେ ସ୍ତମ୍ଭେଶ୍ୱରୀ 'ସୁଭଦ୍ରା'ରେ ଓ ମଣିନାଗେଶ୍ୱର 'ବଳଭଦ୍ର'ରେ ପରିଣତ ହେଲେ ।

ସପ୍ତମ ଶତାବ୍ଦୀ ବେଳକୁ ଜଗନ୍ନାଥଙ୍କର ନାମ 'ଶବରୀ ନାରାୟଣ' ବା 'ନୀଳମାଧବ' ପରିବର୍ତ୍ତେ 'ପୁରୁଷୋତ୍ତମ' ଓ 'ଜଗନ୍ନାଥ' ହୋଇଥିବାର ବହୁ ଐତିହାସିକ ପ୍ରମାଣ ରହିଛି ।

ଦକ୍ଷିଣ ପୂର୍ବ ବଙ୍ଗଳାର ସମତଟର ଶାସକ ଶ୍ରୀଧାରଣ ରାତଙ୍କ ଦ୍ୱାରା ପ୍ରଦତ୍ତ ତାମ୍ରଶାସନରେ ପୁରୁଷୋତ୍ତମ (ଜଗନ୍ନାଥ)ଙ୍କ ସମ୍ପର୍କରେ ଉଲ୍ଲେଖ ରହିଛି । ଏହି ଶାସକ ହେଉଛନ୍ତି ଜଣେ ପରମ ବୈଷ୍ଣବ ଓ ସେ ଭଗବାନ୍ ପୁରୁଷୋତ୍ତମଙ୍କୁ ସୃଷ୍ଟି, ସ୍ଥିତି, ପ୍ରଳୟର କର୍ତ୍ତା ଭାବରେ ବର୍ଣ୍ଣନା କରିଛନ୍ତି । ଦୀନେଶ ଚନ୍ଦ୍ର ସରକାର ଏହି ତାମ୍ର ଶାସନର ସମୟ ସପ୍ତମ ଶତାବ୍ଦୀ ବୋଲି ନିର୍ଣ୍ଣୟ କରିଛନ୍ତି । ଯେହେତୁ ଓଡ଼ିଶା ବ୍ୟତୀତ ଭାରତର ଅନ୍ୟ କୌଣସି ସ୍ଥାନରେ ବିଷ୍ଣୁ ପୁରୁଷୋତ୍ତମ ରୂପରେ ପୂଜିତ ହେବାର ଦୃଷ୍ଟାନ୍ତ ସେ ସମୟରେ ମିଳେ ନାହିଁ, ସେଇହେତୁ ଏହି ପୁରୁଷୋତ୍ତମ ହେଉଛନ୍ତି ପୁରୀର ଶ୍ରୀଜଗନ୍ନାଥ । (୫୭)

ସପ୍ତମ ଶତାବ୍ଦୀ ପୂର୍ବରୁ ଉତ୍ତର ଭାରତରେ ବାସ କରୁଥିବା ଶବରମାନେ ପୁରଦେବ ଓ ମୂରୁଗାନ୍ ନାମକ ଦୁଇଟି ଦେବତାଙ୍କର ପୂଜା କରୁଥିଲେ । ଏହି ପୁରଦେବ 'ପୁରୁଷଦେବ'ର ରୂପାନ୍ତର ମାତ୍ର ଏବଂ

'ପୁରୁଷଦେବ' ପୁରୁଷୋତ୍ତମ'ଙ୍କ ସହିତ ସମୀକୃତ ବୋଲି ଅନୁମାନ କରାଯାଇ ପାରେ । ମୂର୍ତ୍ତିଗାନ୍ 'ନାଗଦେବତା' ଭାବରେ ଅଭିହିତ ହୋଇ ଶେଷନାଗଙ୍କ ଅବତାର ଭାବରେ ବିବେଚିତ ବଳଭଦ୍ରଙ୍କ ସହିତ ସମୀକୃତ ହୋଇଥାଇ ପାରନ୍ତି । (୫୮) ସପ୍ତମ ଶତାବ୍ଦୀରେ ପଶ୍ଚିମ ଓଡ଼ିଶାର ନନ୍ଦ ରାଜାମାନେ ବିଷ୍ଣୁଙ୍କୁ 'ପୁରୁଷ' ଭାବରେ ଅଭିହିତ କରିଛନ୍ତି । (୫୯) ହୁଏନସାଂ ଓଡ଼ିଶାକୁ ଆସିଥିବା ସମୟରେ (୬୩୯ ଖ୍ରୀ:) କଳିଙ୍ଗ ଓ କଙ୍ଗୋଦରେ ବୌଦ୍ଧଧର୍ମ ଅପେକ୍ଷା ଜୈନଧର୍ମ ପ୍ରାଧାନ୍ୟ ଲଭ କରିଥିଲା । ଜୈନମାନେ ଜଗନ୍ନାଥଙ୍କୁ ପୁରିସତ୍ତ (ପୁରୁଷୋତ୍ତମ) ଭାବରେ ଉପାସନା କରୁଥିଲେ । ସପ୍ତମ ଶତାବ୍ଦୀରେ କର ବଂଶର ରାଜତ୍ୱ କାଳରେ ବୌଦ୍ଧଧର୍ମ ଓଡ଼ିଶାର ରାଜଧର୍ମ ଥିଲେ ମଧ୍ୟ ଜଗନ୍ନାଥ ପୁରୁଷୋତ୍ତମ ଓ ନୀଳମାଧବ ଭାବରେ ପୂଜା ପାଉଥିଲେ । ଅଷ୍ଟମ ଶତାବ୍ଦୀରେ ଗଙ୍ଗବଂଶୀୟ ଦେବେନ୍ଦ୍ର ବର୍ମା । ପୁରୁଷବନରେ ବ୍ରାହ୍ମଣମାନଙ୍କୁ ଏକ ଗ୍ରାମ ଦାନ କରିଥିଲେ । ଏହି ପୁରୁଷବନ ବୋଧହୁଏ ପୁରୁଷୋତ୍ତମ କ୍ଷେତ୍ର ଓ ତାହାର ଚତୁଃପାର୍ଶ୍ୱର ଅଞ୍ଚଳ । (୬୦) ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରେ ଶୈଳୋଦ୍ଭବଂଶ ଦ୍ୱାରା ଶାସିତ କଙ୍ଗୋଦରେ ଚକ୍ରଧର ମାଧବ ଓ ସୋମବଂଶ ଦ୍ୱାରା ଶାସିତ ଦକ୍ଷିଣ କୋଶଳରେ ଶବରୀ ନାରାୟଣ ପୂଜା ପାଉଥିଲେ । (୬୧) ଶୁଭକର ଦେବ (୧ମ)ଙ୍କ ନେଉଳପୁର ଅଭିଲେଖରୁ ଜଣାଯାଏ ଯେ ସପ୍ତମ ଶତାବ୍ଦୀର ଶେଷ ଭାଗରେ ଓଡ଼ିଶାରେ ପୁରୁଷୋତ୍ତମ ଓ ବଳଦେବଙ୍କ ପୂଜା ପ୍ରଚଳିତ ଥିଲା । (୬୨)

ସପ୍ତମ ଶତାବ୍ଦୀରେ ହୁଏନସାଂ ଓଡ଼ିଶାର ସମୁଦ୍ରକୂଳସ୍ଥ ଯେଉଁ ଚେଲିତାଲ ସହରର ଉଲ୍ଲେଖ କରିଛନ୍ତି ତାହା 'ଶ୍ରୀକ୍ଷେତ୍ର' (ପୁରୀ) ହୋଇପାରେ । (୬୩)

ଅଷ୍ଟମ ଶତାବ୍ଦୀ ବେଳକୁ ଶବରୀ ନାରାୟଣ, ନୀଳମାଧବ ଓ ପୁରୁଷୋତ୍ତମଙ୍କ ପାଇଁ 'ଜଗନ୍ନାଥ' ନାମ ପ୍ରଚଳିତ ହୋଇ ସାରିଲାଣି ଏବଂ ଏହି ଜଗନ୍ନାଥ ବୁଦ୍ଧ ତଥା ଜିନଙ୍କ ସହିତ ସମୀକୃତ ହୋଇ ସାରିଲେଣି । ତେଣୁ

ଓଡ଼ିଶାର ବଜ୍ରଯାନୀ ବୌଦ୍ଧରାଜା ଇନ୍ଦ୍ରଭୂତି (୭୧୭ ଖ୍ରୀ:) ତାଙ୍କର 'ଜ୍ଞାନସିଦ୍ଧି' ଗ୍ରନ୍ଥରେ 'ଜଗନ୍ନାଥ'ଙ୍କୁ ବନ୍ଦନା କରିଛନ୍ତି ଓ ତାହାଙ୍କୁ ବୁଦ୍ଧ ତଥା ଜିନ ଭାବରେ ଦେଖିଛନ୍ତି । ଯଥା :-

"ପ୍ରଣିପାତ୍ୟ ଜଗନ୍ନାଥଂ ସର୍ବଜିନ ବରାର୍ଚ୍ଚିତମ୍
ସର୍ବ ବୁଦ୍ଧମୟଂ ସିଦ୍ଧିବ୍ୟାପିନଂ ଗଗନୋପମମ୍ ।" । (୬୪)

ଏହାଛଡ଼ା 'ଜ୍ଞାନସିଦ୍ଧି' ଗ୍ରନ୍ଥର ଆଉ ଗ୍ରେଟି ସ୍ଥଳରେ ଜଗନ୍ନାଥଙ୍କ ଉଲ୍ଲେଖ ରହିଛି । ତାଙ୍କର ଶ୍ଳୋକଗୁଡ଼ିକରୁ ପ୍ରମାଣିତ ହେଉଛି ଅଷ୍ଟମ ଶତାବ୍ଦୀ ବେଳକୁ 'ଜଗନ୍ନାଥ' ଯେ ବୌଦ୍ଧଧର୍ମ ଦ୍ୱାରା ପ୍ରଭାବିତ ଠାକୁର ଏ ଧାରଣା ଓଡ଼ିଶାର ଦୃଢ଼ୀଭୂତ ହୋଇସାରି ଥିଲା ।

ଅଷ୍ଟମ ଶତାବ୍ଦୀର ଶେଷଭାଗ ଓ ନବମ ଶତାବ୍ଦୀର ପ୍ରଥମ ଭାଗ (ଖ୍ରୀ : ୭୮୮-୮୨୦) ମଧ୍ୟରେ ଶଙ୍କରାଚାର୍ଯ୍ୟ ପୁରୀଧାମକୁ ଆସି ଭୋଗବର୍ଦ୍ଧନ ପୀଠ ସ୍ଥାପନ କରିଥିଲେ । ତାଙ୍କର ଆଗମନ କାଳ ପର୍ଯ୍ୟନ୍ତ ଜଗନ୍ନାଥ ପୀଠରେ ବୌଦ୍ଧଧର୍ମର ପ୍ରାଧାନ୍ୟ ଅବ୍ୟାହତ ରହିଥିଲା । ସେ ନିଜର ଗଭୀର ପାଣ୍ଡିତ୍ୟ ଓ ତର୍କ ବଳରେ ବୌଦ୍ଧ ପଣ୍ଡିତମାନଙ୍କୁ ପରାଜିତ କରି ନିଜର ଧର୍ମମତ ପ୍ରତିଷ୍ଠା କରିଥିଲେ । ଜଗନ୍ନାଥ ଗୀତା ବର୍ଣ୍ଣିତ ପୁରୁଷୋତ୍ତମ ବୋଲି ସେ ପ୍ରତିପାଦନ କରିଥିଲେ । (୬୫)

ଏହାପରେ ଓଡ଼ିଶାର ସଂସ୍କୃତ ନାଟ୍ୟକାର ପଣ୍ଡିତ ମୁରାରି ମିଶ୍ର (୮୫୦ ଖ୍ରୀ :) ଶ୍ରୀପୁରୁଷୋତ୍ତମ (ଜଗନ୍ନାଥ)ଙ୍କ ରଥଯାତ୍ରାରେ ତାଙ୍କ ନାଟକ 'ଅନର୍ଘ ରାଘବ' ଅଭିନୀତ ହୋଇଥିବା ଉଲ୍ଲେଖ କରିଛନ୍ତି । ସୂତ୍ରଧର ମୁଖରେ ସେ କୁହାଇଛନ୍ତି—'ଭୋ ଭୋ ଲବଣୋଦବେଲା ବନାଳୀ ତମାଳତରୁ କନ୍ଦଳସ୍ୟ ତ୍ରିଭୁବନ ମୌଳିମଣ୍ଡନସ୍ୟ ମହାନୀଳମଣେଃ କମଳାକୁଚ କଳସକେଳି ପତ୍ରାଙ୍କୁରସ୍ୟ ଭଗବତଃ ଶ୍ରୀପୁରୁଷୋତ୍ତମସ୍ୟ ଯାତ୍ରାୟାମୁପସ୍ଥାପନୀୟା ସଭାସଦଃ ।" (୬୬)

ମଧ୍ୟପ୍ରଦେଶର ସାତ୍ନା ଜିଲ୍ଲାର ମୌହାର ଗ୍ରାମରୁ ଆବିଷ୍କୃତ ଦଶମ ଶତାବ୍ଦୀର ଏକ ତାମ୍ରଲେଖରେ ଓଡ୍ରଦେଶ (ଓଡ଼ିଶା)ର ପୁରୁଷୋତ୍ତମ (ଜଗନ୍ନାଥ)ଙ୍କ ମାହାତ୍ମ୍ୟ ବର୍ଣ୍ଣିତ ହୋଇଅଛି । ଏହି ତାମ୍ରଲେଖର ପଞ୍ଚତ୍ରିଂଶତମ ଶ୍ଲୋକଟି ହେଉଛି–

"ସମୁଦ୍ର ମଜ୍ଜନାନ୍ନନମୋଡ୍ରେଷୁ ପୁରୁଷୋତ୍ତମମ୍
ଦୃଷ୍ଟ୍ୱା ତବାରିକେ ଭୂୟଃ ପ୍ରଗଗଛତ୍ୟାଂ ଶିଶୂଃ ।" (୬୭)

ଏହି ଶତାବ୍ଦୀରେ ଦଣ୍ଡୀ ମହାଦେବୀଙ୍କ ଦ୍ୱାରା ପ୍ରଦତ୍ତ ଏକ ଦାନ ପଟାରେ ଗୃହୀତା ଭଟ୍ଟପୁତ୍ର ପୁରୁଷୋତ୍ତମଙ୍କ ନାମୋଲ୍ଲେଖ ରହିଛି । (୬୮) ଏଥିରୁ ଅନୁମିତ ହେଉଛି ଦଶମ ଶତାବ୍ଦୀ ବେଳକୁ ଓଡ଼ିଶାର ଇଷ୍ଟଦେବତାଙ୍କ ନାମ ଅନୁସାରେ ଲୋକମାନେ ପୁଅମାନଙ୍କର ନାମକରଣ ଆରମ୍ଭ କଲେଣି । ସଂସ୍କୃତ ନାଟ୍ୟକାର କୃଷ୍ଣ ମିଶ୍ରଙ୍କର ପ୍ରବୋଧ ଚନ୍ଦ୍ରୋଦୟ' ନାଟକରେ ପୁରୁଷୋତ୍ତମ ଦେବାୟତନ (ଜଗନ୍ନାଥ ମନ୍ଦିର) ବିଷୟରେ ଉଲ୍ଲେଖ ରହିଛି–

"ଅହମ୍ଭଙ୍କ ଦେଶାଦାଗତୋଽସ୍ମି । ଅସ୍ତି ତତ୍ର
ସାଗରତୀରେ ପୁରୁଷୋତ୍ତମ ଶବ୍ଦିତଂ ଦେବାୟତନମ୍ ।"

ନାଟ୍ୟକାର କୃଷ୍ଣ ମିଶ୍ରଙ୍କ ସମୟ ଏକାଦଶ ଶତାବ୍ଦୀର ମଧ୍ୟଭାଗ ୧୦୫୦ ଖ୍ରୀ :–୧୦୭୦ ଖ୍ରୀ :) ବୋଲି ନିର୍ଣ୍ଣିତ ହୋଇଅଛି ।

ତେବେ ଇତିହାସରୁ ଜଣାଯାଏ, ଚୋଡ଼ଗଙ୍ଗ ଦେବ ଜଗନ୍ନାଥ ମନ୍ଦିର ନିର୍ମାଣ କରିଥିଲେ । ତାଙ୍କର ସମୟ ଏକାଦଶ ଶତାବ୍ଦୀର ଶେଷଭାଗ ଓ ଦ୍ୱାଦଶ ଶତାବ୍ଦୀର ପ୍ରଥମ ଭାଗ । (୧୦୭୭ ଖ୍ରୀ:–୧୧୪୭ ଖ୍ରୀ :) । କୃଷ୍ଣ ମିଶ୍ରଙ୍କ ବର୍ଣ୍ଣିତ ମନ୍ଦିର ଚୋଡ଼ଗଙ୍ଗଙ୍କ ଦ୍ୱାରା ନିର୍ମିତ ମନ୍ଦିରର ପୂର୍ବବର୍ତ୍ତୀ ଏକ ଅପୂର୍ଣ୍ଣ ମନ୍ଦିର । ଯଯାତିକେଶରୀ (୨ୟ) ୧୦ମ ଶତାବ୍ଦୀରେ ଏହି ମନ୍ଦିର ନିର୍ମାଣ କାର୍ଯ୍ୟ ଆରମ୍ଭ କରିଥିଲେ ମଧ୍ୟ ସଂପୂର୍ଣ୍ଣ କରିପାରି ନ ଥିଲେ ।

ସେ ତାଙ୍କର ଉତ୍ତରାଧିକାରୀମାନେ ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିର ନିର୍ମାଣ କାର୍ଯ୍ୟରେ ପୂର୍ଣ୍ଣ ଧ୍ୟାନ ଦେବା ଫଳରେ ଏହି ମନ୍ଦିର ଅପୂର୍ଣ୍ଣ ରହିଥିଲା । ଅନନ୍ତବର୍ମନ୍ ଚୋଡ଼ଗଙ୍ଗଦେବ ଏହି ଅପୂର୍ଣ୍ଣ ମନ୍ଦିରକୁ ସଂପୂର୍ଣ୍ଣ କରିଥିଲେ । (୭୦)

ଚୋଡ଼ଗଙ୍ଗଦେବଙ୍କ ପୌତ୍ର ଦ୍ୱିତୀୟ ରାଜରାଜ ଦେବ (୧୧୭୦ ଖ୍ରୀ :– ୧୧୯୩ ଖ୍ରୀ :)ଙ୍କର 'ଦାସଗୋବା' ଅଭିଲେଖରୁ ଜଣାଯାଏ ଯେ ଚୋଡ଼ଗଙ୍ଗ ଦେବ ହେଉଛନ୍ତି ଶ୍ରୀଜଗନ୍ନାଥ ମନ୍ଦିରର ନିର୍ମାତା । (୭୧) ଚୋଡ଼ଗଙ୍ଗ ଦେବ ମନ୍ଦିର କାର୍ଯ୍ୟ ସଂପୂର୍ଣ୍ଣ କରିଥିବାରୁ ହିଁ ତାଙ୍କୁ ନିର୍ମାତାର ଗୌରବ ଦିଆଯାଇଅଛି । ଚୋଡ଼ଗଙ୍ଗ ଦେବ ପ୍ରଥମେ ଶୈବ ଉପାସକ ଥିଲେ ହେଁ ବୈଷ୍ଣବ ଧର୍ମ ପ୍ରତି ଏ ଗଭୀର ଅନୁରକ୍ତିର କେତୋଟି କାରଣ ଥାଇପାରେ । ପ୍ରଥମତଃ ଚାଳୁକ୍ୟ ବଂଶୀୟ ରାଜା ପ୍ରଥମେ ରାଜରାଜ (୧୦୭୨ ଖ୍ରୀ:) ଜଗନ୍ନାଥଙ୍କର ପରମ ଭକ୍ତ ଥିଲେ । ଏ କଥା କାଳଦିଣ୍ଡି ଅଭିଲେଖ ଦ୍ୱାରା ସମର୍ଥିତ ହେଉଅଛି । (୭୨) ଏହି ପ୍ରଥମ ରାଜରାଜ ଥିଲେ ଚୋଡ଼ଗଙ୍ଗ ଦେବଙ୍କର ସମ୍ପର୍କୀୟ । ଦ୍ୱିତୀୟତଃ ଚୋଡ଼ଗଙ୍ଗ ଦେବ ଯେଉଁ ଓଡ଼ିଶାର ଶାସକ ହେଲେ, ତାହାର ଇଷ୍ଟଦେବତା ଜଗନ୍ନାଥଙ୍କ ପାଇଁ କିଛି ଦୃଷ୍ଟି ଆକର୍ଷଣକାରୀ କାର୍ଯ୍ୟ ନ କଲେ ସେ ଅପ୍ରିୟ ହୋଇପାରନ୍ତି ବୋଲି ମନେ କଲେ । ତୃତୀୟତଃ ପରମ ବୈଷ୍ଣବ ରାମାନୁଜ ଚୋଳଗଙ୍ଗ ଦେବଙ୍କୁ ଜଗନ୍ନାଥ ମନ୍ଦିର ନିର୍ମାଣ କାର୍ଯ୍ୟ ସଂପୂର୍ଣ୍ଣ କରି ଜଗନ୍ନାଥଙ୍କୁ ସ୍ଥାପନ କରିବା ପାଇଁ ଉପଦେଶ ଦେଇଥିଲେ । ଚୋଳଗଙ୍ଗ ଦେବଙ୍କ ରାଜତ୍ୱକାଳରେ ଶ୍ରୀରାମାନୁଜ ମେଲୁକୋଟରୁ ଦିଲ୍ଲୀ ପର୍ଯ୍ୟନ୍ତ ଯାତ୍ରା କରୁଥିଲାବେଳେ (୧୧୧୩ ଖ୍ରୀ:–୧୧୧୭ ଖ୍ରୀ :) ବାଟରେ ପୁରୀ ଠାରେ କିଛିକାଳ ଅବସ୍ଥାନ କରିଥିଲେ । ରାମାନୁଜଙ୍କ ପ୍ରଭାବରେ ଶୈବ-ଉପାସକ ଓ 'ପରମ ମାହେଶ୍ୱର' ଭାବରେ ନିଜକୁ ପରିଚିତ କରାଉଥିବା ଚୋଳଗଙ୍ଗ ଦେବ 'ପରମ ବୈଷ୍ଣବ'ରେ ପରିଚିତ ହୋଇଥିଲେ । (୭୩) ଧର୍ମ ଗ୍ରହଣ କରିବା ପରେ ଚୋଳଗଙ୍ଗ ଦେବ ପୁରୀ ମନ୍ଦିର ନିର୍ମାଣ କାର୍ଯ୍ୟ ସଂପୂର୍ଣ୍ଣ କରିଥିବା ସମ୍ଭବ ଓ ତେଣୁ ଜଗନ୍ନାଥ-ମନ୍ଦିର ନିର୍ମାଣର ସମୟ ୧୧୧୪ ଖ୍ରୀ:ରୁ ୧୧୧୭ ଖ୍ରୀ:

ମଧ୍ୟରେ ବୋଲି ଗ୍ରହଣ କରଯାଇ ପାରେ । ଚତୁର୍ଥତଃ ଚୋଳଗଙ୍ଗ ଦେବଙ୍କ ସମୟକୁ ଜଗନ୍ନାଥ ଧାମ ଓ ଜଗନ୍ନାଥଙ୍କ ଖ୍ୟାତି ଓଡ଼ିଶା ଓ ଓଡ଼ିଶା ବାହାରେ ପ୍ରସାରିତ ହୋଇ ସାରିଥିଲା । ଆଗରୁ ଉଲ୍ଲିଖିତ ବଙ୍ଗଳା ସମତଟର ଶ୍ରୀଧାରଣ ରଟଙ୍କ ତାମ୍ରଶାସନ, ମଧ୍ୟପ୍ରଦେଶର ସାତ୍‌ନା ଜିଲ୍ଲାର ମୈହାର ତାମ୍ରଲେଖ ବ୍ୟତୀତ ଗୋପାଳ ଦେବଙ୍କ ପୂଜାରୀ ପଲ୍ଲୀ ଅଭିଲେଖ (୭୪), ମାଳବ ରାଜାଙ୍କ ନାଗପୁର ଶିଳାଲେଖ (୭୫), ଶଙ୍କରାନନ୍ଦ ଆଗ୍ରହିଙ୍କ ରଚନା (୭୬) ପ୍ରଭୃତିରେ ଏହାର ପ୍ରମାଣ ମିଳେ ।

ଭାରତୀୟ ଓ ଇଣ୍ଡୋନେସୀୟ କଳା-ସ୍ଥାପତ୍ୟ ସମ୍ପର୍କରେ ଆଲୋଚନା ପ୍ରସଙ୍ଗରେ ଡକ୍‌ଟର ଏ,କେ. କୁମାର ସ୍ୱାମୀ ମତ ଦେଇଛନ୍ତି ଯେ ଜଗନ୍ନାଥ ମନ୍ଦିର ନିର୍ମାଣ କାର୍ଯ୍ୟ ୧୧୫୦ଖ୍ରୀ :ରେ ସଂପୂର୍ଣ୍ଣ ହୋଇଥିଲା । (୭୭) ପର୍ସିବ୍ରାଉନ୍‌ଙ୍କ ମତରେ ଏହି ସମୟ ୧୧୦୦ ଖ୍ରୀଷ୍ଟାବ୍ଦ । (୭୮) ମନମୋହନ ଚକ୍ରବର୍ତ୍ତୀଙ୍କ ମତରେ ଚୋଡ଼ଗଙ୍ଗ ଦେବଙ୍କ ଆଦେଶରେ ଏହି ମନ୍ଦିରର ନିର୍ମାଣ କାର୍ଯ୍ୟ ୧୦୮୫ ଖ୍ରୀ:ରୁ ୧୦୯୦ ଖ୍ରୀ : ମଧ୍ୟରେ ସମ୍ପୂର୍ଣ୍ଣ ହୋଇଥିବା ସମ୍ଭବ । ଅପୂର୍ଣ୍ଣ ପ୍ରାଚୀନ ମନ୍ଦିରଟି ୧୦୭୦ ଖ୍ରୀ ; ପର୍ଯ୍ୟନ୍ତ ତିଷ୍ଠି ରହିଥିବାର ଐତିହାସିକ ପ୍ରମାଣ ରହିଛି । (୭୯) ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ ମତ ଦିଅନ୍ତି ୧୧୧୮ ଖ୍ରୀ : ପର୍ଯ୍ୟନ୍ତ ଓଡ଼ିଶା ଉପରେ ଚୋଡ଼ଗଙ୍ଗ ଦେବଙ୍କର ଉଲ୍ଲେଖଯୋଗ୍ୟ ପ୍ରାଧାନ୍ୟ ବିସ୍ତାରିତ ହୋଇପାରି ନ ଥିଲା । ୧୧୩୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ତାଙ୍କର ରାଜଧାନୀ ପୁରୀରେ ପ୍ରତିଷ୍ଠିତ ହୋଇଥିବାର କୌଣସି ଐତିହାସିକ ପ୍ରମାଣ ମିଳୁ ନାହିଁ । ତେଣୁ ୧୧୩୫ ଖ୍ରୀଷ୍ଟାବ୍ଦ ପରେ ହିଁ ଚୋଡ଼ଗଙ୍ଗ ଦେବ ପୁରୀ ମନ୍ଦିର ନିର୍ମାଣ କାର୍ଯ୍ୟ ହାତକୁ ନେଇଥିବେ ଓ ଏହି କାର୍ଯ୍ୟ ୧୧୪୫ ଖ୍ରୀ : ମଧ୍ୟରେ ସଂପୂର୍ଣ୍ଣ ହୋଇଥିବା ସମ୍ଭବ । (୮୦)

କିନ୍ତୁ ଇତିହାସରୁ ଜଣାଯାଏ, ଚୋଡ଼ଗଙ୍ଗ ଦେବ ୧୦୭୭ ଖ୍ରୀ:ରେ (ଆର୍. ସୁବାରାଓଙ୍କ ମତରେ, ୧୦୭୬ ଖ୍ରୀ:, ଦ୍ରଷ୍ଟବ୍ୟ J.A.H.R.S. Vol VII. p. 182) ଓଡ଼ିଶାର ରାଜଗାଦୀରେ ଅଧିରୂଢ଼ ହୋଇଥିଲେ । ତାଙ୍କ ପରି ଶକ୍ତିଶାଳୀ

ଗଙ୍ଗା ୧୧୧୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଓଡ଼ିଶାରେ ପ୍ରାଧାନ୍ୟ ବିସ୍ତାର କରି ପାରିନଥିବା ସତ୍ୟ ନୁହେଁ । ତା ଛଡ଼ା ପୁରୀରେ ଗଙ୍ଗଧାନୀ ସ୍ଥାପିତ ହେଲେ ଯାଇ ଯେ ପୁରୀରେ ଜଗନ୍ନାଥ ମନ୍ଦିର ନିର୍ମାଣ ପାଇଁ ସେ ଆଗ୍ରହୀ ହେବେ, ଏପରି ଭାବିବା ମଧ୍ୟ ସଙ୍ଗତ ହେବ ନାହିଁ । ଚୋଡ଼ ଗଙ୍ଗ ଦେବଙ୍କର ଧର୍ମଗୁରୁ ଶ୍ରୀରାମାନୁଜ ପୁରୀରେ ଅବସ୍ଥାନ କରୁଥିବା କାଳରେ ୧୧୧୩-୧୪ଖ୍ରୀ : ମଧ୍ୟରେ ଜଗନ୍ନାଥଙ୍କ ଅପୂର୍ଣ୍ଣ ମନ୍ଦିର ସଂପୂର୍ଣ୍ଣ କରିବାର ପ୍ରଚେଷ୍ଟା ଆରମ୍ଭ ହୋଇଥିବ ଓ ୧୧୧୭ ଖ୍ରୀ : ମଧ୍ୟରେ ସଂପୂର୍ଣ୍ଣ ହୋଇଥିବ ।

ଦ୍ୱାଦଶ ଶତାବ୍ଦୀର ଶେଷ ଭାଗରେ ରାମାନୁଜଙ୍କ ବ୍ୟତୀତ ଦକ୍ଷିଣ ଭାରତର ଆଉ ତିନିଜଣ ବୈଷ୍ଣବାଚାର୍ଯ୍ୟ ବିଷ୍ଣୁସ୍ୱାମୀ, ନିମ୍ବାର୍କ ଓ ମାଧବାଚାର୍ଯ୍ୟ ପୁରୁଷୋତ୍ତମ କ୍ଷେତ୍ରକୁ ଆସିଥିଲେ । ତେଣୁ ଜଗନ୍ନାଥ ବୈଷ୍ଣବ ଧର୍ମର ଅନ୍ୟତମ ପରମ ଉପାସ୍ୟ ଦେବତା ଭାବରେ ଦକ୍ଷିଣ ଭାରତରେ ମଧ୍ୟ ସମ୍ମାନ ଲାଭ କରିଥିଲେ । (୮୧)

ଦ୍ୱାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ପରମ ବୈଷ୍ଣବ ପଣ୍ଡିତ କବି ଜୟଦେବ ଜଗନ୍ନାଥ ଧାମରେ 'ଗୀତଗୋବିନ୍ଦ' ରଚନା କରିଥିଲେ ଓ ତାହା ପ୍ରତ୍ୟହ ଜଗନ୍ନାଥଂକ ନିକଟରେ ସେବାନିୟୋଗ ଭାବରେ ପଠିତ ହେଉଥିଲା । ତାଂକର ସମକାଳୀନ 'ଆର୍ଯ୍ୟ ସପ୍ତଶତୀ'ର ଲେଖକ ଗୋବର୍ଦ୍ଧନ ଆଚାର୍ଯ୍ୟ ଓ ଭୁବନେଶ୍ୱର ମେଘେଶ୍ୱର ମନ୍ଦିରର ଦୁଇଟି ଶିଳାଲେଖର ଲେଖନକାର ଉଦୟନ ଆଚାର୍ଯ୍ୟ (ଗୋବର୍ଦ୍ଧନ ଆଚାର୍ଯ୍ୟଂକ ସାନଭାଇ) ଜଗନ୍ନାଥଂକର ପରମ ଭକ୍ତ ଥିଲେ । (୮୨)

ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀରେ ରଚିତ ଚାନ୍ଦବରଦାୟୀଂକ ପୃଥ୍ୱୀରାଜ ରାସୋ'ରେ ଶ୍ରୀଜଗନ୍ନାଥ ଓ ଜଗନ୍ନାଥ ଧାମର ଉଲ୍ଲେଖ ରହିଛି ।

ଅନଙ୍ଗଭୀମଦେବ ୩ୟ (୧୨୦୧ ଖ୍ରୀ :–୧୨୩୮ ଖ୍ରୀ :) ବାରଣସୀ କଟକ (ଆଧୁନିକ କଟକ)ରେ ଶ୍ରୀଜଗନ୍ନାଥ ମନ୍ଦିର ନିର୍ମାଣ ପୂର୍ବକ ସର୍ବପ୍ରଥମେ

ଓଡ଼ିଶାର ଇଷ୍ଟଦେବତା (ପୁରୁଷୋତ୍ତମ କ୍ଷେତ୍ରର ଦେବତା) ଜଗନ୍ନାଥଙ୍କୁ ଓଡ଼ିଶାର ପ୍ରକୃତ ରାଜା ଓ ନିଜକୁ ତାଙ୍କର ଜଣେ ସେବକ ଭାବରେ ଘୋଷଣା କରିଥିଲେ । (୮୩) ତାଙ୍କ ସମୟରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ତିନିଠାକୁରଙ୍କ ପୂଜା ଓଡ଼ିଶାର ବିଭିନ୍ନ ସ୍ଥାନରେ ଆଦର ଲାଭ କରିଥିଲା । ସେ ଜଗନ୍ନାଥଙ୍କ ସେବାକାର୍ଯ୍ୟ ନିର୍ବିଘ୍ନରେ ହେବାପାଇଁ ଛତିଶିନିଯୋଗର ବ୍ୟବସ୍ଥା କରିଥିଲେ । (୮୪) ଅନଙ୍ଗଭୀମଦେବ ୩ୟଙ୍କ ପୁତ୍ର ଲାଙ୍ଗୁଳା ନରସିଂହ ଦେବ (୧୨୩୮ ଖ୍ରୀ–୧୨୬୪ ଖ୍ରୀ) କୋଣାର୍କ ମନ୍ଦିରରେ ଶ୍ରୀଜଗନ୍ନାଥ, ଶିବ ବଳଭଦ୍ରଙ୍କ ପ୍ରତିରୂପ) ଓ ଦୁର୍ଗା (ସୁଭଦ୍ରାଙ୍କ ପ୍ରତିରୂପ)ଙ୍କ ମୂର୍ତ୍ତି ଖୋଦନ କରାଇଥିଲେ ଓ କର୍ପାଜାସ ଶିବମନ୍ଦିର–ଶିଳାଲେଖରେ ନିଜକୁ 'ଶ୍ରୀପୁରୁଷୋତ୍ତମ ପୁତ୍ର' ତଥା ' ଶ୍ରୀ ଦୁର୍ଗା ପୁତ୍ର' ଭାବରେ ଅଭିହିତ କରାଇଥିଲେ । (୮୫) ଅନଙ୍ଗଭୀମ ଦେବ ୩ୟଙ୍କ କନ୍ୟା ଚନ୍ଦ୍ରିକାଦେବୀ (୧୨୭୮ ଖ୍ରୀ:) ନିଜ ସ୍ୱାମୀ (କଳିଂଗ ସେନାପତିଙ୍କ)ଙ୍କ ମୃତ୍ୟୁର ସ୍ମାରକୀ ସ୍ୱରୂପ ଭୁବନେଶ୍ୱର ବିନ୍ଦୁସାଗର କୂଳରେ ଅନନ୍ତ ବାସୁଦେବ ମନ୍ଦିର ନିର୍ମାଣ କରାଇଥିଲେ । ତନ୍ମଧ୍ୟରେ ପୂଜିତ ଅନନ୍ତ, ବାସୁଦେବ ଓ ସୁଭଦ୍ରା ଶ୍ରୀଜଗନ୍ନାଥ-ତ୍ରିମୂର୍ତ୍ତି (ବଳଭଦ୍ର, ଜଗନ୍ନାଥ ଓ ସୁଭଦ୍ରା)ଙ୍କର ନିଦର୍ଶନ । (୮୬)

ଗଂଗବଂଶୀୟ ଭାନୁଦେବ ତୃତୀୟ (ଖ୍ରୀ : ୧୩୦୮–୧୩୨୮) ଅନଂଗଭୀମ ଦେବ ୩ୟଙ୍କ ପରି ଜଗନ୍ନାଥଙ୍କୁ ଓଡ଼ିଶାର ପ୍ରକୃତ ରାଜା ଭାବରେ ଘୋଷଣା କରିଥିଲେ ଓ ଜଗନ୍ନାଥଙ୍କ ନାମରେ ଅଙ୍କ ଗଣନା ଆରମ୍ଭ କରିଥିଲେ । (୮୭) ତାଙ୍କ ସମୟରେ ଓଡ଼ିଶା ଉପରେ ମୁସଲମାନ ଆକ୍ରମଣ ଦେଖା ଦେଇଥିଲା । ସେ ଏହି ଆକ୍ରମଣକୁ ପ୍ରତିହତ କରି ଦେଇଥିଲେ । ଭାନୁଦେବ ୩ୟଙ୍କ ସମୟରେ ଓଡ଼ିଶାରେ ବାରମ୍ବାର ମୁସଲମାନ ଆକ୍ରମଣ ଦେଖା ଦେଇଥିଲା । ହିନ୍ଦୁଧର୍ମ ବିଦ୍ୱେଷୀ ମୁସଲମାନ ଆକ୍ରମଣକାରୀମାନେ ଜଗନ୍ନାଥ ମନ୍ଦିର ଓ ଜଗନ୍ନାଥଙ୍କୁ ଧ୍ୱଂସ କରିବାପାଇଁ ଚେଷ୍ଟା କରିଥିଲେ । ତେଣୁ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କୁ ବିଭିନ୍ନ ସମୟରେ ବିଭିନ୍ନ ସ୍ଥାନରେ ଲୁଚ୍ଚ ଯାଇଥିଲା । (୮୮)

ଗଂଗବଂଶର ଶେଷ ନରପତି ଭାନୁଦେବ ୪ର୍ଥ (୧୪୨୦ଖ୍ରୀ–୧୪୩୫ ଖ୍ରୀ:) ମୁସଲମାନ ଆକ୍ରମଣକୁ ପ୍ରତିହତ କରିଥିଲେ । (୮୯)

ସୂର୍ଯ୍ୟବଂଶର ଗଜପତି କାଳରେ ପୁରୀ ସମଗ୍ର ଭାରତବର୍ଷର ଏକ ପ୍ରଧାନ ସାଂସ୍କୃତିକ କେନ୍ଦ୍ର ହୋଇ ଉଠିଥିଲା (୯୦) କପିଳେନ୍ଦ୍ର ଦେବ (ଖ୍ରୀ ୧୪୩୫–୧୪୬୭) ଶ୍ରୀଜଗନ୍ନାଥଙ୍କୁ ଓଡ଼ିଶାର ଜାତୀୟ ଦେବତା ରୂପେ ଘୋଷଣା କରି ନିଜକୁ ତାଙ୍କର ସେବକ ଭାବରେ ଅଭିହିତ କରିଥିଲେ । (୯୧) ତାଙ୍କର 'ପରଶୁରାମ ବିଜୟ ବ୍ୟାୟୋଗ' ଜଗନ୍ନାଥଙ୍କର ଏକ ଉତ୍ସବ ସମୟରେ ଅଭିନୀତ ହୋଇଥିଲା । (୯୨) କପିଳେନ୍ଦ୍ର ଦେବଙ୍କ ଗୋପୀନାଥ ପୁର ଅଭିଲେଖରୁ ଜଣାଯାଏ ଯେ ସେ ସୁଭଦ୍ରାଙ୍କୁ ଭଗବତୀ ଓ ଦୁର୍ଗା ଭାବରେ ଦେଖିଛନ୍ତି । (୯୩) ତାଙ୍କ ସମୟର କବି ସାରଳା ଦାସ ନିଜର ଓଡ଼ିଆ ମହାଭାରତ ଓ ଚଣ୍ଡୀପୁରାଣର ବହୁ ସ୍ଥାନରେ ଜଗନ୍ନାଥଙ୍କର ବନ୍ଦନା କରିଛନ୍ତି ଓ ଜଗନ୍ନାଥଙ୍କର ବିଭିନ୍ନ ରୂପର ବିଶ୍ଳେଷଣ କରିଛନ୍ତି । କପିଳେନ୍ଦ୍ର ଦେବଂକ ପୁତ୍ର ପୁରୁଷୋତ୍ତମ ଦେବ (ଖ୍ରୀ ୧୪୬୭–୧୪୯୭) ମଧ୍ୟ ଜଗନ୍ନାଥଂକର ପରମ ଭକ୍ତ ଥିଲେ । ଯୁଦ୍ଧଯାତ୍ରାବେଳେ ସେ ଶ୍ରୀଜଗନ୍ନାଥଂକର ଆଶୀର୍ବାଦ ଭିକ୍ଷା କରୁଥିଲେ ଓ ରଥଯାତ୍ରା ସମୟରେ ଛେରାପହଁରା କରୁଥିଲେ । ସେ ନିଜକୁ ଜଗନ୍ନାଥଂକର ଜଣେ ସେବକ ଭାବରେ ଅଭିହିତ କରୁଥିଲେ । ପୁରୁଷୋତ୍ତମ ଦେବଂକର ଜଗନ୍ନାଥ-ଅନୁରକ୍ତି ସମ୍ପର୍କରେ କଳ୍ପିତ କାଞ୍ଚୀକାବେରୀ ଉପାଖ୍ୟାନ ଓଡ଼ିଶା ଓ ଓଡ଼ିଶା ବାହାରେ ଅତି ଲୋକପ୍ରିୟ ହୋଇପାରିଛି । ପୁରୁଷୋତ୍ତମ ଦେବଂକ ପୁତ୍ର ପ୍ରତାପରୁଦ୍ର ଦେବ (ଖ୍ରୀ ୧୪୯୭-୧୫୩୩)ଙ୍କ ସମୟରେ ଶ୍ରୀଚୈତନ୍ୟ ଓଡ଼ିଶା ଆଗମନ କରିବା ପୂର୍ବରୁ ଶ୍ରୀଜଗନ୍ନାଥ ସମଗ୍ର ଭାରତବର୍ଷରେ ବୈଷ୍ଣବ ଦେବତା ଭାବରେ ବିପୁଳ ପ୍ରତିଷ୍ଠା ଲାଭ କରି ସାରିଥିଲେ । ଶ୍ରୀଜଗନ୍ନାଥ ହିଁ ଥିଲେ ଶ୍ରୀଚୈତନ୍ୟଂକର ଓଡ଼ିଶା ଭୂମିକୁ ଆଗମନର ପ୍ରଧାନ ଆକର୍ଷଣ-କେନ୍ଦ୍ର । ଶ୍ରୀଚୈତନ୍ୟ ଶ୍ରୀଜଗନ୍ନାଥଂକ ଭିତରେ ଦେଖିଥିଲେ ଶ୍ରୀକୃଷ୍ଣଙ୍କୁ । ପଞ୍ଚସଖା (ଜଗନ୍ନାଥ ଦାସ, ବଳରାମ ଦାସ,

ଅଚ୍ୟୁତାନନ୍ଦ ଦାସ, ଅନନ୍ତ ଦାସ, ଯଶୋବନ୍ତ ଦାସ) ଶ୍ରୀଚୈତନ୍ୟଙ୍କ ପ୍ରଚାରିତ କୃଷ୍ଣଭକ୍ତି ଧର୍ମରେ ଦୀକ୍ଷିତ ହୋଇଥିଲେ ହେଁ ଜଗନ୍ନାଥଙ୍କ ପ୍ରତି ସେମାନଙ୍କର ଭକ୍ତି ଥିଲା ଅତୁଟ ।

ଏହାପରେ ଓଡ଼ିଶା ମୁସଲମାନ ଶକ୍ତି ନିକଟରେ ନିଜର ସ୍ୱାଧୀନତା ହରାଇବା ପର୍ଯ୍ୟନ୍ତ ସମସ୍ତ ରାଜା ଶ୍ରୀଜଗନ୍ନାଥଙ୍କୁ ଓଡ଼ିଶାର ଜାତୀୟ ଦେବତା ଭାବରେ ସମ୍ମାନ ଦେଇ ଆସିଅଛନ୍ତି ଓ ସମଗ୍ର ଓଡ଼ିଶାବାସୀ ମଧ୍ୟ ଶ୍ରୀଜଗନ୍ନାଥଙ୍କୁ ଇଷ୍ଟଦେବତା ଭାବରେ ଗ୍ରହଣ କରି ଆସିଅଛନ୍ତି ।

ବାରମ୍ବାର ମୁସଲମାନ ଆକ୍ରମଣରୁ ନିଜ ରାଷ୍ଟ୍ରଦେବତା ଓ ଇଷ୍ଟଦେବତା ଶ୍ରୀଜଗନ୍ନାଥଙ୍କୁ ରକ୍ଷା କରିବା ପାଇଁ କି ରାଜା କି ପ୍ରଜା ସମସ୍ତଙ୍କର ପ୍ରାଣମୂର୍ଚ୍ଛା ପ୍ରଚେଷ୍ଟାର ଅନ୍ତ ନାହିଁ । ଭୋଇ ବଂଶୀୟ ରାଜା ରାମଚନ୍ଦ୍ର ଦେବ ସ୍ଥାନାନ୍ତରିତ ଜଗନ୍ନାଥଙ୍କର ନାଭିବ୍ରହ୍ମ ଆଣି ନୂତନ କଳେବର ଗଠନ କରାଇ ମନ୍ଦିରରେ ପୁନଃପ୍ରତିଷ୍ଠିତ କରାଇଥିବାରୁ ଓ ଶ୍ରୀମନ୍ଦିରରେ ଶୃଙ୍ଖଳିତ ଭୋଗର ପ୍ରବର୍ତ୍ତନ କରାଇଥିବାରୁ ତାହାଙ୍କୁ ଅଭିନବ ଇନ୍ଦ୍ରଦ୍ୟୁମ୍ନ ବା ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ବୋଲି କୁହାଯାଇ ଥାଏ । (୯୪) ନିଜର ଇଷ୍ଟଦେବତା ଓ ନିଜ ରାଜ୍ୟର ରାଷ୍ଟ୍ରଦେବତା ଶ୍ରୀଜଗନ୍ନାଥଙ୍କୁ ମୁସଲମାନ କବଳରୁ ଉଦ୍ଧାର କରିବା ପାଇଁ ହିଁ ଗଜପତି ରାମଚନ୍ଦ୍ର ଦେବ ୨ୟ (ଖ୍ରୀ ୧୭୩୧–୧୭୩୬) ଇସ୍‌ଲାମ ଧର୍ମ ଗ୍ରହଣ କରି ଇସ୍‌ଲାମ ରାଜକନ୍ୟାଙ୍କୁ ବିବାହ କରିବାପାଇଁ ଉଚିତ ମନେ କରିଥିଲେ । ଏହା ଫଳରେ ସେ ଜଗନ୍ନାଥ ପୂଜକ ବର୍ଗ ମୁକ୍ତିମଣ୍ଡପର ପଣ୍ଡିତବର୍ଗ ଓ ଓଡ଼ିଶାବାସୀଙ୍କ ଦ୍ୱାରା ନିନ୍ଦିତ ହୋଇଥିଲେ ମଧ୍ୟ ଠାକୁରମାନଙ୍କୁ ଗୁପ୍ତରେ ସ୍ଥାନାନ୍ତରିତ କରିବା ବ୍ୟବସ୍ଥା ଦ୍ୱାରା ସେମାନଙ୍କୁ ରକ୍ଷା କରିପାରିଛନ୍ତି ବୋଲି ଆତ୍ମସନ୍ତୋଷ ଲାଭ କରିଥିଲେ । ପରେ ଏହି ରହସ୍ୟ ଆବିଷ୍କୃତ ହେବାରୁ ତାହାଙ୍କର ଜଗନ୍ନାଥ-ଦର୍ଶନ ସୁବିଧା କରାଇବା ଲାଗି ମୁକ୍ତିମଣ୍ଡପ ପଣ୍ଡିତମାନଂକ ପରାମର୍ଶ କ୍ରମେ ଜଗନ୍ନାଥ ମନ୍ଦିରର ସିଂହଦ୍ୱାର ପାଖ ଭିତର ମଣ୍ଡପ କାନ୍ଥରେ 'ପତିତପାବନ'

ମୂର୍ତ୍ତି ସ୍ଥାପନ କରାଯାଇ ଥିଲା । ରାମଚନ୍ଦ୍ର ଦେବଙ୍କ ପୁତ୍ର ବୀରକେଶରୀ ଦେବ ୧ମ ଶ୍ରୀମନ୍ଦିରର ଭୋଗମଣ୍ଡପ ଓ ସ୍ନାନମଣ୍ଡପ ପ୍ରଭୃତି ନିର୍ମାଣ କରାଇଥିଲେ । ଜୀର୍ଣ୍ଣ ରତ୍ନବେଦୀର ସଂସ୍କାର କରାଇ ସମଗ୍ର ମନ୍ଦିରଟିରେ ଚୂର୍ଣ୍ଣଲେପନର ବ୍ୟବସ୍ଥା କରାଇଥିଲେ । (୯୫)

ମରହଟ୍ଟା ଶାସନକାଳରେ ଶ୍ରୀଜଗନ୍ନାଥ ମନ୍ଦିରର ବହୁବିଧ ଉନ୍ନତି ସାଧିତ ହୋଇଥିଲା । ମରହଟ୍ଟା ବର୍ଗୀମାନେ ଅତ୍ୟାଚାରୀ ଥିଲେ ହେଁ ମରହଟ୍ଟା ଶାସକ ହିନ୍ଦୁ ଥିବାରୁ ସମଗ୍ର ଭାରତର ହିନ୍ଦୁମାନଙ୍କର ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥଙ୍କର ମନ୍ଦିର ଉନ୍ନତି ସାଧନ ପାଇଁ ମନ ବଳାଇ ଥିଲେ ।

ଇଂରେଜ ରାଜତ୍ୱକାଳରେ ଜଗନ୍ନାଥଙ୍କ ଉପରକୁ ପୁଣି ବିପଦ ମାଡ଼ି ଆସିଲା । ଓଡ଼ିଶାରେ ଖ୍ରୀଷ୍ଟଧର୍ମର ପ୍ରଚାର ପାଇଁ ବହୁ ସଂଖ୍ୟାରେ ମିଶନାରୀମାନେ ନିଯୁକ୍ତ ହେଲେ । ସେମାନେ ହିନ୍ଦୁଧର୍ମର ପ୍ରାଣକେନ୍ଦ୍ର ଜଗନ୍ନାଥଙ୍କୁ ଭୟଙ୍କର ଭାବରେ ଆକ୍ରମଣ କଲେ । ଜଗନ୍ନାଥଙ୍କୁ କୁତ୍ସିତ, କଦାକାର, ଭୟଙ୍କର ଆଦି ବିଶେଷଣ ଦେଇ ତାଙ୍କର ଅସାରତ୍ୱ ପ୍ରତିପାଦନ କରିବାପାଇଁ ପ୍ରଚେଷ୍ଟା ଚଳାଇଲେ । ଏମାନେ ଓଡ଼ିଆ ଭାଷା ଜାଣି ନ ଥିବାରୁ ବିକୃତ ଓଡ଼ିଆରେ ଭାଷଣ ଦେଉଥିଲେ । ଯଥା :—"ଏ ବାଇମନ ! ତୁମ୍ଭମାନଙ୍କ ଜଗନ୍ନାଥ କାଷ୍ଠ ଅଛି, ପାଷାଣ ଅଛି, ସେ କିଛି ନୁହେଁ । ତାକୁ ବନ୍ଦିଲେ ଅନନ୍ତ ନରକରେ ପଡ଼ିବ । ପ୍ରଭୁ ଯୀଶୁଖ୍ରୀଷ୍ଟ ତ୍ରାଣକର୍ତ୍ତା ଅଟନ୍ତି । ତାଙ୍କୁ ବନ୍ଦିଲେ ଆଲୁଅ ପାଇବ । ସ୍ୱର୍ଗରାଜ୍ୟରେ ଅଧିକାରୀ ହେବ ।" (୯୬) ଯେଉଁମାନେ ମିଶନାରୀମାନଙ୍କର ଏଭଳି ମନ୍ତବ୍ୟର ପ୍ରତିବାଦ ଜଣାଉ ଥିଲେ । ସେମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର ଚାଲୁଥିଲା । ଜଗନ୍ନାଥ-ଭକ୍ତ ଗଜପତି ଦିବ୍ୟସିଂହଙ୍କୁ ମିଥ୍ୟାପରାଧରେ କାରାଦଣ୍ଡ (କଳାପାଣି ଦ୍ୱୀପାନ୍ତର ଦଣ୍ଡ) ଦିଆ ଯାଇଥିଲା ।

ଏହିପରି ଭାବରେ କେତେ କେତେ ଧର୍ମର ଝଡ଼ ଜଗନ୍ନାଥଙ୍କ ଉପରେ ବହି ଯାଇଛି, ହେଲେ କୌଣସିଟି ତାଙ୍କୁ ଟଳେଇ ପାରିନାହିଁ । (୯୭) ସେ ପାହାଡ଼ ପରି ଅଟଳ ରହିଛନ୍ତି ।

କ୍ରମଶଃ ଜଗନ୍ନାଥ ବିଶ୍ୱବିଖ୍ୟାତ ହୋଇ ଉଠିଛନ୍ତି । ଜଗନ୍ନାଥ ଧର୍ମ ବିଶ୍ୱଧର୍ମରେ ପରିଣତ ହେବାକୁ ଯାଉଛି । ଆମେରିକା, ଇଂଲଣ୍ଡ ପ୍ରଭୃତି ବିଦେଶମାନଙ୍କରେ ଜଗନ୍ନାଥ ଉପାସନା; ଜଗନ୍ନାଥ ଧର୍ମଚର୍ଚ୍ଚା, 'ଜଗନ୍ନାଥ-ସାହିତ୍ୟ-ଚର୍ଚ୍ଚା, ଜଗନ୍ନାଥ ମନ୍ଦିର ନିର୍ମାଣ, ରଥଯାତ୍ରା ପାଳନ ପ୍ରତି ପ୍ରବଳ ଆଗ୍ରହ ଲକ୍ଷ୍ୟ କରଯାଉ ଅଛି । ବିଦେଶରୁ ବହୁ ଭକ୍ତ ଆସି ଓଡ଼ିଶାର ବିଭିନ୍ନ ସ୍ଥାନରେ ଜଗନ୍ନାଥ ମନ୍ଦିର ନିର୍ମାଣ କରି ଜଗନ୍ନାଥ-ଉପାସନାର ପ୍ରସାର ଘଟାଉଅଛନ୍ତି । ଜଗନ୍ନାଥ ଆଜି ବାସ୍ତବତଃ ଜଗତର ନାଥ ବା ଜଗତର ଦେବତା ଭାବରେ ବିପୁଳ ସମ୍ମାନ ଓ ପ୍ରତିଷ୍ଠା ମଧ୍ୟରେ ପୂଜିତ ହେଉଛନ୍ତି । ଜଗନ୍ନାଥ ଚେତନାର ବିଶ୍ୱବ୍ୟାପୀ ପରିପ୍ରକାଶ ଘଟିଛି । ବିପୁଳା ପୃଥ୍ୱୀ ଆଜି ଜଗନ୍ନାଥ ଚେତନାର ଆଲୋକରେ ସମୁଦ୍ଭାସିତ ।

–o–

# BIBLIOGRAPHY

(୧) The Cult of Jagannath. p. 21—Dr. K.C. Mishra (୨) ସଂସ୍କୃତ ମହାଭାରତ, ବନପର୍ବ, ୧୧୪ ଅଧ୍ୟାୟ (ଶ୍ଳୋକ ୩,୪,୫,୧୨, ୧୭-୨୪ । (୩) ଦାରୁଦେବତା, ପୃ ୩ ଡଃ ବେଣୀମାଧବ ପାଢ଼ୀ । (୪) ମତ୍ସ୍ୟପୁରାଣ, ଅଧ୍ୟାୟ ୧୩, ଶ୍ଳୋକ ୩୫ (ବଙ୍ଗବାସୀ ସଂସ୍କରଣ) (୫) ବିଷ୍ଣୁପୁରାଣ, ୧ମ ଖଣ୍ଡ, (୬) ପଦ୍ମପୁରାଣ, ପାତାଳଖଣ୍ଡ, ଗୁରୁମଣ୍ଡଳ, ପୃ ୮୩. ଛାନ୍ଦ ୨୨, ଶ୍ଳୋକ ୫୬, (୭) ଗରୁଡ଼ପୁରାଣ ୧/୧୩୧/୧୦-୧୬, (୮) ଅଗ୍ନିପୁରାଣ, ପୃ ୩୩୫ ।

(୯) ବ୍ରହ୍ମପୁରାଣ, ଅଧ୍ୟାୟ ୪୨ରୁ ୫୨।

(୧୦) ତତ୍ରୈବ, ଅଧ୍ୟାୟ ୧୫ରୁ ୧୭ ।
(୧୧) ସ୍କନ୍ଦପୁରାଣ, ପୁରୁଷୋତ୍ତମ ମହାତ୍ମ୍ୟ ୧୬/୪୨-୪୩
(୧୨) ତତ୍ରୈବ, ଅଧ୍ୟାୟ ୧୫/ଶ୍ଳୋକ ୨୩
(୧୩) ତତ୍ରୈବ, ଅ୯/ଶ୍ଳୋ। ୫୫,(୧୪) ତତ୍ରୈବ ଅ. ୧୫/ଶ୍ଳୋକ.୩୮, (୧୫) ତତ୍ରୈବ, ଅ୭ଶ୍ଳୋ. ୨୩–୨୯., (୧୬ ତତ୍ରୈବ, ଅ୧୮/ ଶ୍ଳୋ. ୩୬-୩୮
(୧୭) The Land of Visnu, pp 2-3 Dr. Gopinath Mohapatra.
(୧୮) Ibid, p 3. (୧୯) ସ୍କନ୍ଦପୁରାଣ, ପୁରୁଷୋତ୍ତମ ମହାତ୍ମ୍ୟ, ଅଧ୍ୟାୟ ୨., (୨୦) ତତ୍ରୈବ ୫/୬୮ (୨୧)ତତ୍ରୈବ, ୮/୧୯ (୨୨)ତତ୍ରୈବ ୧୭/୧୨୮
(୨୩) ରୁଦ୍ରଯାମଳ, ଉତ୍ତର ତନ୍ତ୍ର, ୪୪ଶ ଅଧ୍ୟାୟ/ଶ୍ଳୋ ୧୧
(୨୪) ତତ୍ରୈବ, ଅ.୪୫/ଶ୍ଳୋ. ୧୧-୧୨
(୨୫) କାଳିକା ପୁରାଣ, ଅ.୬୪
(୨୬ ତନ୍ତ୍ରଯାମଳ, (୨୭) ଋଗ୍‌ବେଦ, ୧୦/୧୫୫-୩ ଓ ଅଥର୍ବବେଦ ୬/୮/୭, (୨୮) ଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ତତ୍ତ୍ୱ (ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ) ଗ୍ରନ୍ଥର ପୃ ୫-୬ରେ ଉଦ୍ଧୃତ । (୨୯) ସ୍କନ୍ଦପୁରାଣ, ଉତ୍କଳଖଣ୍ଡ ଅ୨୧/ଶ୍ଳୋ। ୧-୩, (୩୦ ଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ତତ୍ତ୍ୱ, ୬–ପଣ୍ଡିତ ସୂର୍ଯ୍ୟନାରାୟଣଦାଶ (୩୧)ଶ୍ୱେତାଶ୍ୱେତର ଉପନିଷଦ୍, ୩/୧୯ କୈବଲ୍ୟୋପନିଷଦ୍ ମନ୍ତ୍ର ୨୧, ପୃ ୩/୧୯,(୩୨) ଶ୍ରୀମଦ୍‌ଭଗବଦ୍ ଗୀତା, ୧୫/୧୮ (୩୩) The History of Medieval Vaishnavism in Orissa, p3– Prabhat Mukherjee. (୩୪) History of Sanskrit literature, p 226 – Macdonell, and Cambridge History of India, Vol I, p. 147
(୩୫) Early History of the Vaishnava Scct, p.30— Dr. H.C. Raychaudhury

(୩୬) The History of Medieval Vaishnavism in Orissa, p3—Prabhat Mukherjee.

(୩୭) ତୈତ୍ତିରୀୟ ଆରଣ୍ୟକ ଉପନିଷଦ୍, ୧୦/୧/୬

(୩୮) Early History of the Vaishnava Sect, p. 87—Dr. H.C. Raychoudhury.

(୩୯) The History of Medieval Vasthnavism in Orissa pp 5-7—Prabhat Mukherjee.

(୪୦) Mc. Crindle. Ptolemy, p. 121.

(୪୧) Prachi Valley ) Archaelogical Survey Report). pp.65-66—Orissa State Archaeology, Bhubaneswar 1975—Edited by Sri P. K. Ray.

(୪୨) Ibid, p66, (୪୩) Ibid, p. 65

(୪୪) Ibid, pp 64-65, (୪୫) Ibid, p. 65 (୪୬) Ibid.

(୪୭) The cult of Jagannath, p. 23—Dr K.C. Mishra, (୪୮) Ibid, p. 25, (୪୯) Ibid, p 25.

(୫୦) Ibid, p 10, (୫୧) Ibid, p 8.

(୫୨) Orissa, Vol I, p 85—Hunter.

(୫୩) The cult of Jagannath, p. 15—Dr. K.C. Mishra., (୫୪) J.A.S.B., Vol VII, New Series pp. 43-47., (୫୫) E.I. Vol XXVIII pp. 107-112,(୫୬) J.K.H.R.S., Vol III pp. 261-266, E.I. Vol. XXVIII, p 331, and O.H.R.J., Vol II, pp. 31-46

(୫୭) I.H.Q, Vol XXIII, pp. 221-241

(୫୮) The Indian Culture, VolXV. No 1-4 p. 97.

(୫୯) The Cult of Jagannath, p. 8—Dr K.C. Mishra.
(୬୦) Ibid, p. 22

(୬୧) ଓଡ଼ିଶାର ଧର୍ମ, ପୃ ୧୧୦—ଭଗବାନ ପଣ୍ଡା ।

(୬୨) The Cult of Jagannath, p. 36.

(୬୩) ଓଡ଼ିଶାର ଧର୍ମ, ପୃ ୧୧୧—ଭଗବାନ ପଣ୍ଡା,

(୬୪) 'ଜ୍ଞାନସିଦ୍ଧି' ଗ୍ରନ୍ଥ ମଙ୍ଗଳାଚରଣ—ଇନ୍ଦ୍ରଭୂତି ।

(୬୫) "ଯୁଗେ ଯୁଗେ ଜଗନ୍ନାଥ ଧାମର ସଂସ୍କୃତି" ('ଶ୍ରୀ ଜଗନ୍ନାଥ' ପତ୍ରିକା, ପ୍ରଥମବର୍ଷ, ତୃତୀୟ ସଂଖ୍ୟା' ଜୁନ୍ ୧୯୮୧—ସଂପାଦନା ଡକ୍ଟର ବଂଶୀଧର ମହାନ୍ତି)—କେଦାର ନାଥ ମହାପାତ୍ର । (୬୬) ଅନର୍ଘରାଘବଃ ପୃ ୧

(୬୭) E.I. Vol XXXV. pp 171-175. (୬୮). I.H.Q. Vol VI, pp. 141-142.

(୬୯) ପ୍ରବୋଧ ଚନ୍ଦ୍ରୋଦୟ '୨ୟ ଅଙ୍କ, ପୃ ୭୮

(୭୦) The cult of Jagannath, pp 32-33.

(୭୧) Inscriptions of Orissa, Vol III, part II—p. 396
(୭୨) Indian Antiquary, Vol XIV, pp. 55-82.,
(୭୩) ଯୁଗେ ଯୁଗେ ଜଗନ୍ନାଥଧାମର ସଂସ୍କୃତି ('ଶ୍ରୀ ଜଗନ୍ନାଥ' ପତ୍ରିକା, ପୃ ୪-୫, ପ୍ରଥମବର୍ଷ, ୩ୟ ସଂଖ୍ୟା, ଜୁନ୍, ୧୯୮୧) କେଦାର ନାଥ ମହାପାତ୍ର ।

(୭୪). History of Orissa, Voll II, p. 515—Dr H. K. Mahatab. (୭୫) E. I. Vol II, p. 180, (୭୬ ଶ୍ରୀଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ତତ୍ତ୍ୱ, ପୃ ୨୮—ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ।

(୭୭ History of Indian and Indonesian Art—Dr. A.K. Coomarswamy

(୭୮) Indian Architecture, p. 120 --Mr Percy Brown,
(୭୯) J.A.S.B 1898, p 331—M. M. Chakravatri.
(୮୦) Studies in Orissan History, Archacology

and Archives, pp. 265-296—Padmasri Paramnanda Acharya.

(୮୧) ଯୁଗେ ଯୁଗେ ଜଗନ୍ନାଥ ଧାମର ସଂସ୍କୃତି ଶ୍ରୀଜଗନ୍ନାଥ ପତ୍ରିକା ପୃ୫, ପ୍ରଥମ ବର୍ଷ ୩ୟ ସଂଖ୍ୟା)

(୮୨) ତତ୍ରୈବ, (୮୩) (କ) ମାଦଳାପାଞ୍ଜି, ଅନଙ୍ଗଭୀମ ଦେବ ୩ୟଙ୍କ ରାଜତ୍ଵକାଳୀନ ବିବରଣୀ, (ଖ) O.H.R.J Vol V, No 1 and 2 pp. 66-67.

(୮୪) ମାଦଳାପାଞ୍ଜି, ଅନଙ୍ଗଭୀମ ଦେବ ୩ୟଙ୍କ ରାଜତ୍ଵକାଳୀନ ବିବରଣୀ, (୮୫) ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଶ୍ରୀଜଗନ୍ନାଥ (କୋଣାର୍କ ସଂଖ୍ୟା ୬୨, ମସିହା ୧୯୬୭, ପୃ ୧୯)—କେଦାର ନାଥ ମହାପାତ୍ର, (୮୬) ଓଡ଼ିଶାର ପ୍ରତ୍ନତତ୍ତ୍ଵ ଓ ଅନ୍ୟାନ୍ୟ ପ୍ରବନ୍ଧ, ପୃ ୧୩୯-୧୪୨—ପରମାନନ୍ଦ ଆଚାର୍ଯ୍ୟ, (୮୭) S I.I. Vol V, No 12, 14. (୮୮) ମାଦଳାପାଞ୍ଜି ବିବରଣୀ ।

(୮୯) The Suryavansi Gajapati of Orissa, p35—Prabhat Mukherjee.

(୯୦) ଯୁଗେ ଯୁଗେ ଜଗନ୍ନାଥ ଧାମର ସଂସ୍କୃତି (ଶ୍ରୀଜଗନ୍ନାଥ' ପତ୍ରିକା, ପ୍ରଥମ ବର୍ଷ, ତୃତୀୟ ସଂଖ୍ୟା, ପୃ ୧୩)

(୯୧) J.A S.B, 1893, pp 93-99.

(୯୨) ଯୁଗେ ଯୁଗେ ଜଗନ୍ନାଥ ଧାମର ସଂସ୍କୃତି (ଶ୍ରୀ ଜଗନ୍ନାଥ ପତ୍ରିକା, ପ୍ରଥମ ବର୍ଷ, ତୃତୀୟ ସଂଖ୍ୟା, ୧୩),

(୯୩) The cult of Jagannath, p 50—Dr. K C. Mishra (୯୪) (କ) ମାଦଳା ପାଞ୍ଜି, ରାମଚନ୍ଦ୍ର ଦେବଙ୍କ ରାଜତ୍ଵକାଳୀନ ବିବରଣୀ, (ଖ) 'ଶ୍ରୀକୃଷ୍ଣ ଭକ୍ତ ବାତ୍ସଲ୍ୟ' ନାଟକ (ଉତ୍କଳ ବିଶ୍ଵବିଦ୍ୟାଳୟ ପୋଥି ନଂ ୨୨୬), (୯୫) ଓଡ଼ିଶାର ଧର୍ମ, ପୃ ୧୧୧—ଭଗବାନ ପଣ୍ଡା, (୯୬) ଫକୀରମୋହନ ଗ୍ରନ୍ଥାବଳୀ, ୧ମ ଖଣ୍ଡ, ପୃ ୬୫, ୯୭) ଓଡ଼ିଶା ଇତିହାସ, ୨ୟ ଖଣ୍ଡ, ପୃ ୫୫୪-ଡକ୍ଟର ହରେକୃଷ୍ଣ ମହତାବ ।

—o—

# ସୁଭଦ୍ରା ତତ୍ତ୍ୱ

ଡକ୍ଟର ବାସୁଦେବ ସାହୁ (ସ୍ୱର୍ଗତ)
ରିଡ଼ର, ଓଡ଼ିଆ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ

ଜଗନ୍ନାଥ ଓ ବଳଭଦ୍ରଙ୍କ ତତ୍ତ୍ୱ ପରି ସୁଭଦ୍ରା ତତ୍ତ୍ୱ ବଡ଼ ରହସ୍ୟମୟ । ଚତୁର୍ଦ୍ଦଶ ଶତାବ୍ଦୀବେଳକୁ ଜଗନ୍ନାଥଙ୍କ ଭଗିନୀ ଓ ସ୍ତ୍ରୀ ଉଭୟ ଭାବରେ ରହସ୍ୟର ଚରମ ସୀମାରେ ପହଞ୍ଚି ସାରିଲେଣି । ଜଗନ୍ନାଥଙ୍କୁ କୃଷ୍ଣଙ୍କ ଅବତାର ଓ ବଳଭଦ୍ରଙ୍କୁ ବଳରାମଙ୍କ ଅବତାର ଭାବରେ ଗ୍ରହଣ କରି ନିଆଗଲା ପରେ ବଳରାମଙ୍କ ସହୋଦରା (ରୋହିଣୀଙ୍କ କନ୍ୟା) ଓ ଅର୍ଜ୍ଜୁନଙ୍କ ପତ୍ନୀ ସୁଭଦ୍ରାଙ୍କ ଅବତାର ଭାବରେ ଜଗନ୍ନାଥ ଓ ବଳଭଦ୍ରଙ୍କ ମଧ୍ୟରେ ବିରାଜିତା ଦେବୀଙ୍କୁ ଗ୍ରହଣ କରି ନିଆଯାଇଛି । ଓଡ଼ିଶାରେ ଶାକ୍ତ ଓ ବୈଷ୍ଣବ ଧର୍ମରେ ତନ୍ତ୍ରର ପ୍ରଭାବ ପଡ଼ିବା ପରେ ଜଗନ୍ନାଥଙ୍କୁ ଭୈରବ ଭାବରେ ବିବେଚନା କରାଯାଇଛି ଓ ସୁଭଦ୍ରାଙ୍କୁ ତାଙ୍କର ଶକ୍ତି ଭାବରେ ଗ୍ରହଣ କରାଯାଇଛି । କୌଣସି କୌଣସି ଗ୍ରନ୍ଥରେ ବଳଭଦ୍ରଙ୍କୁ ଶିବ ବା ଭୈରବ ରୂପେ ବିଚାର କରାଯାଇ ସୁଭଦ୍ରାଙ୍କୁ ତାଙ୍କର ଶକ୍ତି ଭାବରେ କଳ୍ପନା କରାଯାଇଛି । ସୁଭଦ୍ରା ଶାପଭ୍ରଷ୍ଟ ବ୍ରହ୍ମାଙ୍କର କଳି-ଅବତାର ଭାବରେ ମଧ୍ୟ କଳ୍ପିତା ହୋଇଛନ୍ତି । ଆଦିବାସୀ, ବୌଦ୍ଧ, ଶୈବ, ଶାକ୍ତ ଓ ବୈଷ୍ଣବ ସଂସ୍କୃତି ସହିତ ସୁଭଦ୍ରା ବିଭିନ୍ନ ସମୟରେ ସମ୍ପର୍କିତା ହୋଇଛନ୍ତି । ସେ ସାଂଖ୍ୟ ଦର୍ଶନର ପ୍ରକୃତି ସ୍ୱରୂପିଣୀ ବୋଲି ମଧ୍ୟ ଗୃହୀତା ହୋଇଛନ୍ତି । ସେ ଲକ୍ଷ୍ମୀଙ୍କର ଏକ

ରୂପାନ୍ତର ଭାବରେ କୀର୍ତ୍ତିତା ହୋଇଛନ୍ତି । ତାଙ୍କୁ ରାଧା ଭାବରେ ବି କଳ୍ପନା କରାଯାଇଛି । ପୁଣି ତାଙ୍କୁ ବାସୁଦେବ ଓ ସଙ୍କର୍ଷଣଙ୍କ ସହିତ ସଂପୃକ୍ତା ଏକାନଂଶା ଭାବରେ ମଧ୍ୟ ଗ୍ରହଣ କରାଯାଇଛି । ସୁଭଦ୍ରାଙ୍କ ମଧ୍ୟରେ ଏପରି କିଛି ମହତ୍ତ୍ୱ ରହିଛି ଯାହା ତାଙ୍କୁ ବିଭିନ୍ନ ଧର୍ମ ଓ ସଂସ୍କୃତିରେ ସମ୍ମାନନୀୟ ସ୍ଥାନ ଦେଇପାରିଛି ।

ସପ୍ତମ ଶତାବ୍ଦୀ ଠାରୁ ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଆମ୍ଭେମାନେ ବିଭିନ୍ନ ଶିଳାଲେଖ ଓ ଗ୍ରନ୍ଥରେ ଜଗନ୍ନାଥ, ପୁରୁଷୋତ୍ତମ, ପୁରୁଷୋତ୍ତମ କ୍ଷେତ୍ର ଓ ମନ୍ଦିରର ଉଲ୍ଲେଖ ପାଉ । (୧)କିନ୍ତୁ କୌଣସି ସ୍ଥଳରେ ଜଗନ୍ନାଥଙ୍କ ସହିତ ବଳଭଦ୍ର ଓ ସୁଭଦ୍ରା ପୂଜା ପାଉଥିବାର ବା ମନ୍ଦିରର ସ୍ଥାପିତ ହୋଇଥିବାର ପ୍ରମାଣ ପାଇ ନ ଥାଉ । ଚୋଡ଼ଗଙ୍ଗ ଦେବ ୧୧୧୦ ଖ୍ରୀ ରେ ଓଡ଼ିଶା ଅଧିକାର କରିବା ପରେ ଶ୍ରୀଜଗନ୍ନାଥଙ୍କ ଭଗ୍ନମନ୍ଦିରର ସଂସ୍କାର କରି ତା ସ୍ଥାନରେ ଏକ ବିରାଟ ମନ୍ଦିର ନିର୍ମାଣ କରି ଜନତାର ଦୃଷ୍ଟି ଆକର୍ଷଣ କରିବାକୁ ଇଚ୍ଛା କରିଥିଲେ । ଶ୍ରୀରାମାନୁଜାଚାର୍ଯ୍ୟଙ୍କ ଦ୍ୱାରା ବୈଷ୍ଣବ ଧର୍ମରେ ଦୀକ୍ଷିତ ହେଲାପରେ ୧୧୧୪-୧୫ ଖ୍ରୀଷ୍ଟାବ୍ଦ ବେଳକୁ ସେ ବଡ ଦେଉଳ ନିର୍ମାଣ କାର୍ଯ୍ୟ ସମାପ୍ତ କରିଥିବା ସମ୍ଭବ । ଏହି ମନ୍ଦିରରେ କେବଳ ଶ୍ରୀ ଜଗନ୍ନାଥ ହିଁ ସ୍ଥାପିତ ହୋଇଥିଲେ । ବଳଭଦ୍ର ବା ସୁଭଦ୍ରା ସ୍ଥାନ ପାଇ ନ ଥିଲେ । ମନ୍ଦିର ନିର୍ମାଣକାରୀ ଚୋଡ଼ଗଙ୍ଗ ଦେବଙ୍କ ପ୍ରଶସ୍ତିଗାନ ପାଇଁ ଯେଉଁ ଅଭିଲେଖ ଲେଖାଯାଇଛି ତହିଁରେ ମନ୍ଦିରର ଦେବତା ଜଗନ୍ନାଥଙ୍କର ହିଁ ମହିମା ଗାନ କରାଯାଇଛି । ବଳଭଦ୍ର ବା ସୁଭଦ୍ରାଙ୍କ ସମ୍ପର୍କରେ କୌଣସି ଉଲ୍ଲେଖ ନାହିଁ । (୨) ଅନଙ୍ଗଭୀମଦେବ ୩ୟଙ୍କର ୧୨୩୦ ଖ୍ରୀ.ର ନାଗରୀ ତାମ୍ରଲେଖ (୩) ଓ ନରସିଂହ ଦେବ ୨ୟଙ୍କର ୧୩୩୩ ଖ୍ରୀ:ର ଅଶନଖାଲି ତାମ୍ରଲେଖ (୪)ରେ ମଧ୍ୟ ପୁରୀରେ ପୁରୁଷୋତ୍ତମଙ୍କ ମନ୍ଦିର ନିର୍ମାଣ ଓ ପୁରୁଷୋତ୍ତମଙ୍କ ପ୍ରତିଷ୍ଠା କଥା ଉଲ୍ଲିଖିତ ହୋଇଛି କିନ୍ତୁ ସୁଭଦ୍ରା ଓ ବଳଭଦ୍ରଙ୍କ ସମ୍ପର୍କରେ କିଛି ସୂଚନା ଦିଆଯାଇ ନାହିଁ । ସର୍ବପ୍ରଥମେ ଚତୁର୍ଦ୍ଦଶ ଶତାବ୍ଦୀର ରଚନା ସ୍କନ୍ଦପୁରାଣର ଉତ୍କଳଖଣ୍ଡ ସୁଭଦ୍ରାଙ୍କୁ ଜଗନ୍ନାଥଙ୍କର ଭଗିନୀ ଓ ସ୍ତ୍ରୀ ଭାବରେ ପରିଚିତ କରାଇଛି । ଉକ୍ତିଟି ହେଉଛି—

"ତସ୍ୟ ଶକ୍ତି ସ୍ୱରୂପେୟଂ ଭଗିନୀ ସ୍ତ୍ରୀ ପ୍ରବର୍ତ୍ତିକା ।" (୫)

ଏହି ଗ୍ରନ୍ଥରେ ସୁଭଦ୍ରାଙ୍କୁ ଲକ୍ଷ୍ମୀଙ୍କ ସହିତ ଅଭିନ୍ନା ବୋଲି ମଧ୍ୟ କଳ୍ପନା କରଯାଇଛି । (୬)ଆମେ ଜାଣୁ ଶ୍ରୀ ସମ୍ପ୍ରଦାୟର ପ୍ରବର୍ତ୍ତକ ରମାନୁଜାଚାର୍ଯ୍ୟଙ୍କ ଉପଦେଶ କ୍ରମେ ଚୋଡ଼ଗଙ୍ଗ ଦେବ ଜଗନ୍ନାଥ-ମନ୍ଦିର ବେଢ଼ାରେ ଲକ୍ଷ୍ମୀଙ୍କ ପାଇଁ ମଧ୍ୟ ଏକ ମନ୍ଦିର ନିର୍ମାଣ କରି ତାହାଙ୍କ ପୂଜା ବ୍ୟବସ୍ଥା କରଇ-ଥିଲେ । (୭) ଦ୍ୱାଦଶ ଶତାବ୍ଦୀରେ ଜଗନ୍ନାଥଙ୍କ ସ୍ତ୍ରୀ ଲକ୍ଷ୍ମୀ ତାଙ୍କର ଶକ୍ତି ଭାବରେ ବିବେଚିତା ହୋଇଥିଲେ । ଚତୁର୍ଦ୍ଦଶ ଶତାବ୍ଦୀରେ ତାହାଙ୍କୁ ଜଗନ୍ନାଥଙ୍କ ଭଗିନୀ ସୁଭଦ୍ରାଙ୍କ ସହିତ ଅଭିନ୍ନା ବୋଲି କଳ୍ପନା କରିବା ମୂଳରେ ନିଶ୍ଚିତ ଭାବରେ ରହିଛି ତନ୍ତ୍ରସର୍ବସ୍ୱ ଶାକ୍ତଧର୍ମର ପ୍ରଭାବ । ଏହି ଶାକ୍ତ ଧର୍ମ ତାନ୍ତ୍ରିକ ବୌଦ୍ଧଧର୍ମ ଦ୍ୱାରା ପ୍ରଭାବିତ ହୋଇଥିଲା । ସମ୍ଭବତଃ ତ୍ରୟୋଦଶ ଶତାବ୍ଦୀରେ ପୁରୀର ଶ୍ରୀଜଗନ୍ନାଥ ମନ୍ଦିରରେ ଜଗନ୍ନାଥଙ୍କ ସହିତ ବଳଭଦ୍ର ଓ ସୁଭଦ୍ରା ସ୍ଥାନ ପାଇଛନ୍ତି ।

ତ୍ରୟୋଦଶ ଶତାବ୍ଦୀରେ ଭାଗବତ ସମ୍ପ୍ରଦାୟର ପ୍ରଭାବରେ ଓଡ଼ିଶାରେ ତ୍ରିମୂର୍ତ୍ତି ପରିକଳ୍ପନା ଦେଖା ଦେଇଥିଲା । (୮) ୧୨୨୫ଖ୍ରୀ:ରେ ଖୋଦିତ ଅନଙ୍ଗଭୀମ ଦେବଙ୍କ ଅଭିଲେଖରେ ହଳୀ, ଚକ୍ରୀ ଓ ସୁଭଦ୍ରାଙ୍କ ନାମୋଲ୍ଲେଖ ରହିଛି । (୯) ଭାନୁଦେବ ପ୍ରଥମ (୧୨୬୪–୧୨୭୮ ଖ୍ରୀ:)ଙ୍କ ସମୟର ଅନନ୍ତ ବାସୁଦେବ ମନ୍ଦିର (ଭୁବନେଶ୍ୱର) ଶିଳାଲେଖରେ ବଳଦେବ, କୃଷ୍ଣ (ବାସୁଦେବ) ଓ ସୁଭଦ୍ରାଙ୍କ ନାମ ଏକତ୍ର ଉଲ୍ଲିଖିତ ହୋଇଅଛି । (୧୦) ତ୍ରୟୋଦଶ ଶତାବ୍ଦୀରେ ନିର୍ମିତ କୋଣାର୍କ ମନ୍ଦିର ଗାତ୍ରରେ କୃଷ୍ଣ (ଜଗନ୍ନାଥ) ଶିବ (ବଳଭଦ୍ର) ଓ ଦୁର୍ଗା (ସୁଭଦ୍ରା)ଙ୍କର ମୂର୍ତ୍ତି ଖୋଦିତ ହୋଇଅଛି । ତେବେ ଏ ସବୁ ପ୍ରତ୍ନତାତ୍ତ୍ୱିକ ନିଦର୍ଶନଗଡ଼ିକରୁ ଜଣାଯାଉଛି ତ୍ରୟୋଦଶ ଶତାବ୍ଦୀରେ ମଧ୍ୟ ଜଗନ୍ନାଥ–ବଳଭଦ୍ର–ସୁଭଦ୍ରା ତ୍ରିଦେବତାଙ୍କ ନାମ ସ୍ପଷ୍ଟ ଭାବରେ ପ୍ରକାଶ ପାଇ ନ ଥିଲା ।

ଐତିହାସିକ ଭିତ୍ତିରେ ପୁରୀ ମନ୍ଦିରରେ ଜଗନ୍ନାଥଙ୍କ ସହିତ ବଳଭଦ୍ର ଓ ସୁଭଦ୍ରାଙ୍କୁ ତ୍ରୟୋଦଶ ଶତାବ୍ଦୀର ଶେଷାର୍ଦ୍ଧ ପୂର୍ବରୁ ସମ୍ପୃକ୍ତ କରଯାଇ ନ

ପାରିଲେ ମଧ୍ୟ ଓଡ଼ିଶାରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଏହି ତ୍ରିଦେବତା ଏକତ୍ର ବହୁକାଳରୁ ପୂଜା ପାଇ ଆସୁଥିଲେ ବୋଲି କିମ୍ବଦନ୍ତୀ, ଧାର୍ମିକ ଓ ସାଂସ୍କୃତିକ ବିଶ୍ୱାସ ରହି ଆସିଛି । ଏହି ପରିପ୍ରେକ୍ଷୀରେ ବିଭିନ୍ନ ଧର୍ମ ଓ ସଂସ୍କୃତିରେ ସୁଭଦ୍ରାଂକର ସମଧର୍ମିଣୀ ବା ସମରୂପା ଦେବୀଂକର ଉପାସନା କିପରି ପ୍ରଚଳିତ ଥିଲା, ଆଲୋଚନା କରଯାଉ ।

## ଆଦିବାସୀ ସଂସ୍କୃତି ଓ ସୁଭଦ୍ରା :-

ଆଦିବାସୀ (କନ୍ଧ)ମାନଂକ ଦୃଷ୍ଟିରେ ଜାକେରୀ ପେନୁ, ତାନାପେନୁ ଓ ମୁରବିପେନୁ ଏ ତିନିଦେବତା ହେଉଛନ୍ତି ଶ୍ରେଷ୍ଠ । ମଝି ଦେବତା ହେଉଛନ୍ତି ତାନାପେନୁ । ଏ ହେଉଛନ୍ତି ସ୍ତ୍ରୀ ଦେବତା । ତାଂକର ଡାହାଣକୁ ଜାକେରୀ ପେନୁ ତାନାପେନୁଂକ ସ୍ୱାମୀ । ତାନାପେନୁଂକ ବାମ ପାର୍ଶ୍ୱରେ ମୁରବିପେନୁ, ତାନାପେନୁଂକ ଭାଇ । ଏ ତିନି ଦେବତା ଉପରେ ଏକ ଛାତ ଥାଏ । ଏହାକୁ ମଧ୍ୟ କନ୍ଧମାନେ ମାନିଥାନ୍ତି । ତାନାପେନୁ ହେଉଛନ୍ତି ମା ଧରିତ୍ରୀ । ସୃଷ୍ଟି ଆରମ୍ଭ ହେବାପରେ ସେ କୌଣସି କାରଣରୁ ମାନବ ସମାଜ ଉପରେ ରାଗି ସଂହାରକାରିଣୀ ମୂର୍ତ୍ତି ଧାରଣ କଲେ । ମାନବମାନେ ତାନାଂକ ଭାଇ ମୁରବିଙ୍କୁ ପ୍ରାର୍ଥନା କରିବାରୁ ସେ ତାନାଙ୍କୁ ସଂହାର କାର୍ଯ୍ୟରୁ କ୍ଷାନ୍ତ କରାଇଲେ । ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ମନେକରନ୍ତି, ''କାଳକ୍ରମେ ଏହି ଜାକେରି ପେନୁ । ତାନାପେନୁ ଓ ମୁରବିପେନୁ ହୁଏତ ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥ ରୂପରେ ପୂଜା ପାଇଥିବେ ଓ ଉପରର ପଥରଟି ସୁଦର୍ଶନ ରୂପରେ ପରିଚିତ ହୋଇଥିବେ । ସୁଭଦ୍ରାଙ୍କୁ ଭୈରବୀ ରୂପରେ ଲୋକେ ବରାବର କଳ୍ପନା କରି ଆସିଛନ୍ତି । ଜଗନ୍ନାଥ ସୁଭଦ୍ରାଂକ ଭାଇ । ବଳଭଦ୍ର ଭୈରବ ଏହି ଧାରଣା ମଧ୍ୟ ଅଛି । ଅତଏବ କନ୍ଧମାନଂକ ଦେବତା **ଜାକେରୀପେନୁ, ତାନାପେନୁ ମୁରବିପେନୁ, ବଳଭଦ୍ର, ସୁଭଦ୍ରା, ଜଗନ୍ନାଥ** ଏହି ତ୍ରିମୂର୍ତ୍ତିରେ ରୂପାନ୍ତରିତ ହୋଇଛନ୍ତି ବୋଲି ଭାବିବା ମଧ୍ୟ ଅସଙ୍ଗତ ହେବ ନାହିଁ ।'' (୧୧)

ଡକ୍ଟର କାହ୍ନୁଚରଣ ମିଶ୍ର ଆଦିବାସୀମାନଙ୍କ ଦ୍ୱାରା ପୂଜା ପାଉଥିବା **'ସ୍ତମ୍ଭେଶ୍ୱରୀ'ଙ୍କୁ** 'ସୁଭଦ୍ରା'ଙ୍କର ମୂଳ ରୂପ ଭାବରେ କଳ୍ପନା କରିଛନ୍ତି । ତାଙ୍କ ମତରେ ଦକ୍ଷିଣ କୋଶଳ ଓ କଳିଙ୍ଗ ମଧ୍ୟରେ ମହାକାନ୍ତାର ନାମରେ ଏକ ବିରାଟ ପାର୍ବତ୍ୟ ରାଜ୍ୟ ଥିଲା । ତାହାର ଶବରମାନେ ଏକ କାଷ୍ଠ ସ୍ତମ୍ଭକୁ 'ସ୍ତମ୍ଭେଶ୍ୱରୀ' ଭାବରେ ପୂଜା କରୁଥିଲେ । ପ୍ରତି ଶବର ଗ୍ରାମରେ ଘରେ ଘରେ ଏହି ଦେବୀ ଗୃହଦେବତା ଓ ଇଷ୍ଟ ଦେବତା ଭାବରେ ପୂଜା ପାଉଥିଲେ । କ୍ରମେ ମହାକାନ୍ତାରର ରାଜବଂଶ ମଧ୍ୟ ଏହି ସ୍ତମ୍ଭେଶ୍ୱରୀଙ୍କୁ ଇଷ୍ଟ ଦେବୀ ଭାବରେ ପୂଜା କଲେ ଓ ନିଜକୁ 'ସ୍ତମ୍ଭେଶ୍ୱରୀ ପାଦଭକ୍ତ' ଭାବରେ ଅଭିହିତ କଲେ । (୧୨) ମହାକାନ୍ତାରର ପରବର୍ତ୍ତୀ ନାମ ହେଉଛି ଗୋନ୍ଦ୍ରମ (Gondrama) କଳାହାଣ୍ଡି ଜିଲ୍ଲାର ତେରସିଙ୍ଗା ଗ୍ରାମରୁ ପ୍ରାପ୍ତ ୪ର୍ଥ–୫ମ ଶତାବ୍ଦୀରେ ଏକ ତାମ୍ରଲେଖରୁ ଜଣାଯାଏ ସ୍ଥାନୀୟ ରାଜା ତୁଷ୍ଟିକର ସ୍ତମ୍ଭେଶ୍ୱରୀଙ୍କର ଉପାସକ ଥିଲେ । ତାମ୍ରଲେଖରେ ସ୍ତମ୍ଭେଶ୍ୱରୀ 'ଭଗବତୀ' ଭାବରେ ଅଭିହିତ ହୋଇଛନ୍ତି । (୧୩) ପରବର୍ତ୍ତୀ କାଳରେ ଶୁଲ୍କୀ ଓ ଗୋନ୍ଦ୍ରମ ତଥା ଖିଞ୍ଜଳିମଣ୍ଡଳର ରାଜାମାନେ ସ୍ତମ୍ଭେଶ୍ୱରୀ ଦେବୀଙ୍କୁ ଇଷ୍ଟ ଦେବୀ ରୂପେ ଗ୍ରହଣ କରିଥିଲେ । ଦୀନେଶ ଚନ୍ଦ୍ର ସରକାରଙ୍କ ମତରେ "ସ୍ତମ୍ଭେଶ୍ୱରୀ ଓଡ଼ିଶାର ଶୁଲ୍କୀମାନଙ୍କର ଗୃହ ଦେବତା ବା ଇଷ୍ଟଦେବତା ଥିଲେ । (୧୪) ତେବେ ସେ ସ୍ତମ୍ଭେଶ୍ୱରୀ ଭାବରେ ପୂଜିତ କାଷ୍ଠସ୍ତମ୍ଭକୁ ମୂଳତଃ ଶିବଲିଙ୍ଗ ବୋଲି ମନେ କରିଛନ୍ତି । କିନ୍ତୁ ଡକ୍ଟର ସତ୍ୟନାରାୟଣ ରାଜଗୁରୁ ଏହାଙ୍କୁ ମୂଳତଃ ଶବରମାନଙ୍କର ଦେବୀ ଭାବରେ ଗ୍ରହଣ କରିଛନ୍ତି । 'ସ୍ତମ୍ଭେଶ୍ୱରୀ' ନାମକରଣ ପରବର୍ତ୍ତୀକାଳରେ ବ୍ରାହ୍ମଣମାନଙ୍କ ଦ୍ୱାରା ହୋଇଥିଲେ ମଧ୍ୟ ମୂଳତଃ ଶବରମାନେ ହିଁ ଏହି ଦେବୀଙ୍କୁ ପୂଜା କରୁଥିଲେ । ଏହି ଦେବୀ ପ୍ରଥମେ ଓଡ଼ିଶାର ପଶ୍ଚିମାଞ୍ଚଳରେ ପୂଜା ପାଉଥିଲେ ଓ କ୍ରମଶଃ ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳରେ ପରିଚିତା ହେଲେ । ଡଃ କାହ୍ନୁଚରଣ ମିଶ୍ରଙ୍କ ମତରେ ଦକ୍ଷିଣ ଓଡ଼ିଶାରେ 'ନାରାୟଣ' ବା 'ସ୍ୱୟମ୍ଭୂ' ରୂପରେ ପୂଜିତ ଦେବତା କାଳକ୍ରମେ 'ପୁରୁଷୋତ୍ତମ' ବା 'ଜଗନ୍ନାଥ'ରେ ମଧ୍ୟ–ଓଡ଼ିଶା ଓ ପୂର୍ବ ଓଡ଼ିଶାରେ ପୂଜିତ 'ମଣିନାଗେଶ୍ୱର' 'ବଳଭଦ୍ର'ରେ ଓ ପଶ୍ଚିମ ଓଡ଼ିଶାରେ ପୂଜିତା ସ୍ତମ୍ଭେଶ୍ୱରୀ' 'ସୁଭଦ୍ରା'ରେ ରୂପାନ୍ତରିତ ହୋଇ ଓଡ଼ିଶାର 'ଇଷ୍ଟଦେବତା' ଭାବରେ ପୂଜା ପାଉଅଛନ୍ତି ।(୧୫)

ପଶ୍ଚିମ ଓଡ଼ିଶାରେ ସୁଭଦ୍ରାଙ୍କୁ 'ଭବାନୀ' ଭବରେ କଳ୍ପନା କରିବାର ପରମ୍ପରା ଅତି ପ୍ରାଚୀନ । ଲୋକ-ପରମ୍ପରାରେ ପ୍ରଚଳିତ ଏହି ବିଶ୍ୱାସ ଲୋକ ଗୀତରେ ମଧ୍ୟ ରୂପାୟିତ ହୋଇଛି । ଯଥା:-

"ଅଷାଢ ମାସରେ ଗୁନ୍ଥା ରଥ
ରଥେ ବିଜେ କଲେ ଜଗତ ନାଥ
**ଆଗେ ବଳଭଦ୍ର ପଛେ ଭବାନୀ**
ପଛେ କୁଦାଇଲେ ଦୁତି ଲୋ ଶାରଙ୍ଗ ପାନି
ତାଲଖାଇରେ ।" (୧୭)

ପ୍ରଫେସର ପ୍ରହ୍ଲାଦ ପ୍ରଧାନଙ୍କ ମତରେ ଏହି ଲୋକଗୀତରୁ ପ୍ରମାଣିତ ହୁଏ ବଳଭଦ୍ର ହେଉଛନ୍ତି ଶିବ ଓ ସୁଭଦ୍ରା ହେଉଛନ୍ତି ତାଂକର ଶକ୍ତି ଭବାନୀ । (୧୭) ପଶ୍ଚିମ ଓଡ଼ିଶାରେ ଶବରମାନଂକ ଦ୍ୱାରା ପୂଜିତା 'ସ୍ତମ୍ଭେଶ୍ୱରୀ' ତୁଷ୍ଟିକରଂକ ସମୟରେ (୪ର୍ଥ-୫ମ ଶତାବ୍ଦୀରେ) 'ଭଗବତୀ ଭବରେ ଅଭିହିତା ହୋଇ ସାରିଥିଲେ । ସେହି 'ଭଗବତୀ' ପଶ୍ଚିମ ଓଡ଼ିଶାରେ ଲୋକ ସଂସ୍କୃତିରେ 'ଭବାନୀ' ଭବରେ ଅଭିହିତ ହେବାରେ କୌଣସି ଆଶ୍ଚର୍ଯ୍ୟ ନାହିଁ ।

## ବୌଦ୍ଧ ସଂସ୍କୃତିରେ ସୁଭଦ୍ରା :-

ଡକ୍ଟର ହରେକୃଷ୍ଣ ମହତାବ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ବୌଦ୍ଧଧର୍ମର ତ୍ରିରତ୍ନର ରୂପାନ୍ତର ବୋଲି ମତ ଦେଇଛନ୍ତି । ଜଗନ୍ନାଥ 'ବୁଦ୍ଧ' ରତ୍ନର, ବଳଭଦ୍ର 'ସଂଘ' ରତ୍ନର ଓ ସୁଭଦ୍ରା 'ଧର୍ମ' ରତ୍ନର ରୂପାନ୍ତର । ତାଂକ ମତରେ, "ଅଶୋକଂକ ସମୟରେ ଓଡ଼ିଶାର ଶବରମାନେ ବୌଦ୍ଧଧର୍ମରେ ଦୀକ୍ଷିତ ହୋଇଥିଲେ । ପୁରୀରେ ବୌଦ୍ଧସ୍ତୂପ ନିର୍ମିତ ହୋଇଥିଲା ଓ ସେଥିରେ ବୌଦ୍ଧ-ତ୍ରିରତ୍ନ ଚିହ୍ନ ସ୍ୱାଭାବିକ କ୍ରମରେ ଅଂକିତ ହୋଇଥିଲା । ଏ ସ୍ତୂପ ଶବର-ମାନଂକର ଶ୍ରେଷ୍ଠ ପୂଜା ପୀଠ ଥିଲା । ଖ୍ରୀ:ପୂ:୧ମ ଶତାବ୍ଦୀରେ ବା ଖ୍ରୀଷ୍ଟୀୟ

୧ମ ଶତାବ୍ଦୀରେ ଯେଁତବେଳେ ମହାଯାନ ପନ୍ଥା ପ୍ରବର୍ତ୍ତିତା ହୋଇ ବୁଦ୍ଧ ଓ ବୋଧିସତ୍ତ୍ୱମାନଂକ ପୂଜା ଆରମ୍ଭ ହେଲା, ସେତେବେଳେ ସରଳ ପ୍ରାଣ ଶବରମାନେ ସ୍ତୂପର ତ୍ରିରତ୍ନ ଚିହ୍ନଟିକୁ ପୂଜା କଲେ । ଏ ସମୁଦାୟ ଚିହ୍ନ ଅର୍ଥାତ୍ ଚିହ୍ନତ୍ରୟକୁ 'ଜଗନ୍ନାଥ' ବୋଲି କୁହାଯାଉ ଥିଲା । ବୁଦ୍ଧଂକର ଅପର ନାମ 'ଜଗନ୍ନାଥ' । × × 'ଜଗନ୍ନାଥ' ନାମର ମୂଳ ହେଉଛି ବୌଦ୍ଧ । × × × କୌଣସି ପ୍ରାଚୀନ ପୁରାଣ ବା ଅଭିଲେଖରେ ଜଗନ୍ନାଥ ବିଷ୍ଣୁଙ୍କ ନାମାନ୍ତର ବୋଲି ଜଣାଯାଏ ନାହିଁ । କିଛିକାଳ ପରେ ଯେତେବେଳେ ମୂର୍ତ୍ତି ପୂଜାର ସୂତ୍ରପାତ ହେଲା, ସେତେବେଳେ ସେ ତିନୋଟି ଚିହ୍ନକୁ କାଠରେ ମୂର୍ତ୍ତି ନିର୍ମାଣ କରି ଲୋକେ ପୂଜା କଲେ ଓ ମୂର୍ତ୍ତିମାନଙ୍କୁ ମନୁଷ୍ୟାକୃତି ଦେବା ଲାଗି ସ୍ୱାଭାବିକ ଇଚ୍ଛାର ପରିପୂରଣ ନିମିତ୍ତ ଆଖି ନାକ ଦେଖାଇବା ପାଇଁ ଯେତେଦୂର ସମ୍ଭବ ଚିତ୍ରର ବ୍ୟବସ୍ଥା କଲେ । ମୂର୍ତ୍ତି ଯେତେବେଳେ ତିନୋଟି ହୋଇଗଲେ, ସେତେବେଳେ ଜଗନ୍ନାଥ (ବୁଦ୍ଧ), ଧର୍ମ ଓ ସଂଘର ଆରୋପ ମଧ୍ୟରେ ସ୍ୱାଭାବିକ ଗତିରେ ଏ ମୂର୍ତ୍ତିତ୍ରୟ ଗଠିତ ହୋଇଅଛି । ବୌଦ୍ଧଧର୍ମରେ ଧର୍ମ ନାରୀ ବୋଲି ପରିକଳ୍ପିତ ହୁଅନ୍ତି ଓ ଆଉ ମଧ୍ୟ ସଂଘରେ ପରସ୍ପର ପରସ୍ପର ଭାଇ–ଭଉଣୀର ସମ୍ପର୍କ ବୌଦ୍ଧଧର୍ମର କଠୋର ନିୟମାନ୍ତର୍ଗତ । × × × ଖ୍ରୀ: ସପ୍ତମ ବା ଅଷ୍ଟମ ଶତାବ୍ଦୀରେ ଯେତେବେଳେ ବୁଦ୍ଧ ବିଷ୍ଣୁଂକ ଅବତାର ବୋଲି ଗୃହୀତ ହେଲେ, ସେତିକିବେଳେ ବୁଦ୍ଧ ଜଗନ୍ନାଥଙ୍କୁ ବିଷ୍ଣୁଙ୍କ ଅବତାର ବୋଲି ମନେ କରାହୋଇଅଛି, କିନ୍ତୁ ତାଙ୍କ ସହିତ ଥିବା ଅନ୍ୟ ଦୁଇ ମୂର୍ତ୍ତିଙ୍କ ସ୍ଥିତିକୁ ବିଷ୍ଣୁଙ୍କ ସହ ମେଳ ଖୁଆଇବା ପାଇଁ ବୁଦ୍ଧଙ୍କ ପରବର୍ତ୍ତୀ ଅବତାର କୃଷ୍ଣ-ବାସୁଦେବଙ୍କ ଭାଇ ଓ ଭଉଣୀ ବଳଦେବ ଓ ସୁଭଦ୍ରାଙ୍କ ଆଶ୍ରୟ ନିଆ ହୋଇଛି । ଭାଇ ଭଉଣୀ ବୋଲି ପରିକଳ୍ପିତ ହୋଇ ଶତ ଶତ ବର୍ଷ କାଳ ପୂଜା ପାଉଥିବା ମୂର୍ତ୍ତିତ୍ରୟଙ୍କ ଠାରେ ବିଷ୍ଣୁତ୍ୱ ଆରୋପଣ କଲାବେଳେ ନାରୀ କଳ୍ପିତ ମୂର୍ତ୍ତିକୁ ସୁଭଦ୍ରା ବ୍ୟତୀତ ଅନ୍ୟ କୌଣସି ଅବତାର ସମ୍ପର୍କୀୟ ଦେବୀ ବୋଲି ମନେ କରିବା ଅସମ୍ଭବ । ଏହିଭଳି ଜଗନ୍ନାଥଙ୍କ ସହ ସୁଭଦ୍ରାଙ୍କ ବିଚିତ୍ର ସମାବେଶ ହୋଇଅଛି ।" (୧୮)

ଜଗନ୍ନାଥଙ୍କୁ 'ବୁଦ୍ଧ' ଭାବରେ ପ୍ରମାଣ କରିବା ପାଇଁ ବହୁ ଅକାଟ୍ୟ ଯୁକ୍ତି ରହିଛି । ଐତିହାସିକ ଓ ସାହିତ୍ୟିକ ଭିତ୍ତି ଉପରେ ଏହି ଯୁକ୍ତିଗୁଡ଼ିକ ପ୍ରତିଷ୍ଠିତ । ତେଣୁ ସୁଭଦ୍ରାଙ୍କୁ ଧର୍ମ' ରତ୍ନର ରୂପାନ୍ତର ଭାବିବା ସ୍ୱାଭାବିକ । ବୌଦ୍ଧଧର୍ମରେ 'ଧର୍ମ'ଙ୍କୁ ନାରୀ ରୂପେ କଳ୍ପନା କରଯାଉ ଥିବାରୁ ଡକ୍ଟର ମହତାବ ସୁଭଦ୍ରାଙ୍କୁ 'ଧର୍ମ' ଭାବରେ ଗ୍ରହଣ କରି ନେଇଛନ୍ତି ।

ତନ୍ତ୍ର ପ୍ରଭାବିତ ବୌଦ୍ଧଧର୍ମରେ ମଧ୍ୟ ସୁଭଦ୍ରାଙ୍କର ବର୍ଣ୍ଣନା ରହିଛି । ବୌଦ୍ଧ ତନ୍ତ୍ରଗ୍ରନ୍ଥରେ ବର୍ଣ୍ଣିତ ବିଭିନ୍ନ ମଣ୍ଡଳ ମଧ୍ୟରୁ ସମ୍ବର ମଣ୍ଡଳ, ଷଟ୍-ଚକ୍ରବର୍ତ୍ତୀ ମଣ୍ଡଳ ଓ କାଳଚକ୍ର ମଣ୍ଡଳରେ ସୁଭଦ୍ରାଙ୍କର ରୂପ, ରଙ୍ଗ ଓ ଗୁଣାଦିର ଉଲ୍ଲେଖ ରହିଛି । (୯) କାଳଚକ୍ର ମଣ୍ଡଳ ଅନ୍ତର୍ଗତ ବାକ୍‌ମଣ୍ଡଳରେ ନୈଋତ କୋଣ ପଦ୍ମକର୍ଣ୍ଣିକାରେ ଅଷ୍ଟମ ଦଳରେ ଯେଉଁ ସୁଭଦ୍ରା ଅଧିଷ୍ଠିତା ତାଙ୍କର ଚାରୋଟି ହାତ, ତିନୋଟି ଆଖି, ସେ ରକ୍ତବର୍ଣ୍ଣା ଓ ଲଳିତାସନରେ ଉପବିଷ୍ଟା । ଷଟ୍‌ଚକ୍ରବର୍ତ୍ତୀ ମଣ୍ଡଳର ବର୍ଣ୍ଣନା ଅନୁସାରେ ସୁଭଦ୍ରା ଧବଳବର୍ଣ୍ଣା, ଦ୍ୱିଭୁଜା, ତ୍ରିନେତ୍ରା, ଗଳାରେ ତାଙ୍କର ତାଙ୍କର ଆର୍ଦ୍ର ମୁଣ୍ଡମାଳା, ମସ୍ତକରେ କୃଷ୍ଣବର୍ଣ୍ଣ ଜଟାର ମୁକୁଟ, ହସ୍ତରେ ପଞ୍ଚମୁଦ୍ରା । ସେ ବଜ୍ରପ୍ରଭ ଦେବତାଙ୍କର ଶକ୍ତି । ଏହି ମଣ୍ଡଳରେ ଅଧିଷ୍ଠିତ 'ସୁଭଦ୍ର' ଦେବତାଙ୍କ ସହିତ ମଧ୍ୟ ତାଙ୍କୁ ସମ୍ପୃକ୍ତ କରଯାଇ ପାରେ । ତେଣୁ ସେ ଶ୍ୟାମା ଦେବୀ । ପ୍ରଫେସର ପ୍ରହ୍ଲାଦ ପ୍ରଧାନଙ୍କ ମତରେ 'ସୁଭଦ୍ର'ଙ୍କୁ 'ବଳଭଦ୍ର'ଙ୍କ ସହିତ ତୁଳନା କରଯାଇପାରେ । ତେଣୁ ବଳଭଦ୍ର ସୁଭଦ୍ର ବା ଶିବ ହେଲେ ସୁଭଦ୍ରା ଭବାନୀ ବା ଦୁର୍ଗାଙ୍କ ସହିତ ତୁଳନୀୟ । ସମ୍ବର ମଣ୍ଡଳରେ ମଧ୍ୟ ଯେଉଁ ସୁଭଦ୍ରାଙ୍କର ବର୍ଣ୍ଣନା ରହିଛି ସେ ଭବାନୀଙ୍କ ସହିତ ତୁଳନୀୟ ଓ ବଳଭଦ୍ରଙ୍କର ଶକ୍ତି ହେବା ଅଧିକ ସଙ୍ଗତ । (୧୦)

## ଏକାନଂଶା ଓ ସୁଭଦ୍ରା

ବିଶିଷ୍ଟ ଐତିହାସିକ ଅଧ୍ୟାପକ ପ୍ରଭାତ ମୁଖାର୍ଜୀଙ୍କ ମତରେ ସୁଭଦ୍ରା ହେଉଛନ୍ତି 'ଏକାନଂଶା'ଙ୍କର କ୍ରମ ପରିଣତ ରୂପ । ତାଙ୍କ ମତରେ କୌଣସି

ପ୍ରାଚୀନ ଅଭିଲେଖରେ ବା ମତ୍ସ୍ୟପୁରାଣ, ବ୍ରହ୍ମାଣ୍ଡ ପୁରାଣ, ବିଷ୍ଣୁ ପୁରାଣ ଓ ବାୟୁପୁରାଣ ପ୍ରଭୃତି ପ୍ରାଚୀନ ପୁରାଣମାନଙ୍କରେ 'ସୁଭଦ୍ରା'ଙ୍କର ନାମ ଦେଖିବାକୁ ମିଳେ ନାହିଁ । ସର୍ବପ୍ରଥମେ ୫ମ ଶତାବ୍ଦୀର ବରାହମିହିରଙ୍କ ଦ୍ୱାରା ଲିଖିତ ବୃହତ୍ ସଂହିତାରେ ଯେଉଁ ଏକାନଂଶାଙ୍କର ବର୍ଣ୍ଣନା ରହିଅଛି ସେ ହିଁ ସୁଭଦ୍ରାଂକର ମୂଳ ରୂପ । 'ବୃହତ୍ ସଂହିତା'ର 'ପ୍ରତିମା ଲକ୍ଷଣ' ଅଧ୍ୟାୟରେ ସୂର୍ଯ୍ୟ, ବିଷ୍ଣୁ, ଶ୍ରୀରାମଚନ୍ଦ୍ର, କୃଷ୍ଣ, ବଳଦେବ, ବୁଦ୍ଧ ଓ ଅର୍ହତ୍ ପ୍ରଭୃତି ଦେବଦେବୀମାନଂକର ମୂର୍ତ୍ତି ଗଠନ ପ୍ରସଙ୍ଗରେ 'ଏକାନଂଶା'ଂକର ବର୍ଣ୍ଣନା ରହିଛି–

"ଏକାନଂଶା କାର୍ଯ୍ୟାଦେବୀ ବଳଦେବ କୃଷ୍ଣୟୋମଧ୍ୟେ
କଟି ସଂସ୍ଥିତ–ବାମକର ସରୋଜମିତରେଣ ଚୋଦ୍‌ବହତୀ ।" (୨୧)

ବଳଦେବ କୃଷ୍ଣଂକ ମଧ୍ୟରେ ଏକାନଂଶା ଦଣ୍ଡାୟମାନ । ପରବର୍ତ୍ତୀ ସଂସ୍କୃତ ଗ୍ରନ୍ଥମାନଂକରେ ଏହି ଏକାନଂଶା ପାର୍ବତୀ ରୂପେ ପରିକଳ୍ପିତ ହୋଇଛନ୍ତି । ଅଧ୍ୟାପକ ପ୍ରଭାତ ମୁଖାର୍ଜୀଙ୍କ ମତରେ ଗୁପ୍ତକାଳୀନ ବୈଷ୍ଣବ ଧର୍ମରେ ଯେତେବେଳେ ଶକ୍ତିବାଦର ଅଭ୍ୟୁଦୟ ଘଟିଲା ଏହି ଏକାନଂଶା ଶକ୍ତିସ୍ୱରୂପିଣୀ ହୋଇଗଲେ । (୨୨) ପରେ ଯେତେବେଳେ ସାଂଖ୍ୟ ଦର୍ଶନର ପୁରୁଷ–ପ୍ରକୃତି ତତ୍ତ୍ୱକୁ ଭିତ୍ତି କରି ଅବତାର ସହିତ ଶକ୍ତିଂକର ସମାବେଶ କରାଗଲା, ସେତେବେଳେ ଶକ୍ତିରୂପେ ଏକାନଂଶାଙ୍କୁ କୃଷ୍ଣ-ବଳଦେବଂକ ସହିତ ନିଆଯାଇଛି । ଜଗନ୍ନାଥଙ୍କୁ ଯେତେବେଳେ କୃଷ୍ଣ ଓ ବଳଭଦ୍ରଙ୍କୁ ବଳଦେବ ରୂପେ ଗ୍ରହଣ କରାଯାଇଛି, ସୁଭଦ୍ରାଙ୍କୁ ଶକ୍ତି ରୂପେ ଏମାନଂକ ସହିତ ସଂଯୁକ୍ତ କରାଯାଇଛି ଏବଂ ବୋଧହୁଏ ଏହି କାରଣରୁ ପ୍ରଥମେ ଭଗିନୀ ରୂପେ କଳ୍ପିତା ସୁଭଦ୍ରା ପରେ ସ୍ତ୍ରୀ ରୂପେ ପ୍ରବର୍ତ୍ତିତା ହୋଇଛନ୍ତି । (୨୩)

ଡକ୍‌ଟର କେ. ଏନ୍. ବାନାର୍ଜୀ ଭୁବନେଶ୍ୱରସ୍ଥ ଅନନ୍ତ–ବାସୁଦେବ ମନ୍ଦିର ସୁଭଦ୍ରାଙ୍କୁ ଏକାନଂଶା ବୋଲି ନିରୂପଣ କରିଛନ୍ତି । (୨୪) ପାଳ ରାଜତ୍ୱକାଳର ଏକାନଂଶାଙ୍କର ଏକ ବ୍ରୋଞ୍ଜ୍ ମୂର୍ତ୍ତି ବ୍ରିଟିଶ୍ ମ୍ୟୁଜିୟମ୍‌ରେ

ସଂରକ୍ଷିତ ଅଛି । (୨୫) ପଦ୍ମାସୀନା ଓ ଦ୍ୱିଭୁଜା ଏହି ଦେବୀ ଦକ୍ଷିଣ ହସ୍ତରେ ଏକ ଦର୍ପଣ ଧାରଣ କରିଛନ୍ତି । ସର୍ବଭୂଷିତ ବଳରାମ ଓ କୃଷ୍ଣମୂର୍ତ୍ତି ଦୁଇଟିର ମଧ୍ୟରେ ସେ ଠିଆ ହୋଇଛନ୍ତି । (୨୬) ତେବେ ହିନ୍ଦୁ ମୂର୍ତ୍ତି ତତ୍ତ୍ୱ ଦୃଷ୍ଟିରୁ ଏହି ଏକାନଂଶାଙ୍କ ସହିତ ସୁଭଦ୍ରାଙ୍କର କୌଣସି ସାମ୍ୟ ନାହିଁ । କିନ୍ତୁ ତ୍ରିମୂର୍ତ୍ତି ଗଠନ ଲାଗି ଦ୍ୱାଦଶ–ତ୍ରୟୋଦଶ ଶତାବ୍ଦୀରେ ଏହି ଏକାନଂଶା ସୁଭଦ୍ରା ଭାବରେ ଗୃହୀତ ହୋଇଛନ୍ତି । (୨୭)

## ବ୍ରହ୍ମା ଓ ସୁଭଦ୍ରା

ଓଡ଼ିଶାରେ ଚତୁର୍ଦ୍ଦଶ ଶତାବ୍ଦୀବେଳକୁ ବୌଦ୍ଧ, ଶୈବ, ଶାକ୍ତ ଓ ବୈଷ୍ଣବ ଧର୍ମ ମଧ୍ୟରେ ମୈତ୍ରୀ ସ୍ଥାପିତ ହୋଇଛି । ବୁଦ୍ଧ ବିଷ୍ଣୁଙ୍କର ନବମ ଅବତାର ରୂପେ କଳ୍ପିତ ହୋଇଛନ୍ତି । ଜଗନ୍ନାଥ ମନ୍ଦିରରେ ବୁଦ୍ଧ ଭାବରେ ଜଗନ୍ନାଥ ରୂପୀ ବିଷ୍ଣୁ, ଶିବ ଭାବରେ ବଳଭଦ୍ର ଓ ଶକ୍ତି ସୁଭଦ୍ରା ସ୍ଥାନ ପାଇଛନ୍ତି । ପଞ୍ଚଦଶ ଶତାବ୍ଦୀରେ ହିନ୍ଦୁ ତ୍ରିମୂର୍ତ୍ତି ବ୍ରହ୍ମା; ବିଷ୍ଣୁ ଓ ମହେଶ୍ୱରଙ୍କ ସହିତ ପୁରୀ ମନ୍ଦିରର ତ୍ରିମୂର୍ତ୍ତିଙ୍କର ସମୀକରଣ ଲାଗି ଚେଷ୍ଟା ହୋଇଛି । ଏତିକିବେଳେ ସୁଭଦ୍ରାଙ୍କୁ ବ୍ରହ୍ମାଙ୍କର ଅବତାର ବୋଲି କୁହାଯାଇଛି । ସାରଳା ଦାସ ଜଗନ୍ନାଥଙ୍କ ସଙ୍ଗରେ ସୁଭଦ୍ରାଙ୍କର ସମାବେଶ ସମ୍ପର୍କରେ ଲେଖିଛନ୍ତି–

"ଆକାଶର ବାଣୀ ଶୁଣିବ କିରୀଟି
କ୍ଷୀରେଦେ ମେଲିବ ନେଇ କୃଷ୍ଣ ଅଙ୍ଗ ଗୋଟି,
ସେ ପିଣ୍ଡ ଲାଗିବ ଆସି ସମୁଦ୍ର କୂଳେ
ଜାରା ଶବର ପୂଜିବ ତାହା ସବୁକାଳେ,
ଜଗନ୍ନାଥ ରୂପେ ହରି ବିଜୟ କରିବେ
କଳିଯୁଗ ନରଙ୍କର ଦୁଷ୍କୃତ ହରିବେ,
ଗତ ଦୋଷ ଉପେକ୍ଷା କରିବେ ଦେବ ହରି
ବ୍ରହ୍ମା ବସିବେ ସଙ୍ଗେ ସୁଭଦ୍ରା– ରୂପ ଧରି ।"

× × ×

"ବନ୍ଦଇ ନାରାୟଣ ନୀଳଗିରି ନାଥ
ଚତୁର୍ଦ୍ଧା ରୂପ ଧରି ବିଜୟେ ପଦ୍ମନେତ୍ର
ଯେକଇ ମୂର୍ତ୍ତି ଯେ ଚାରି ରୂପ ହୋଇ
ଜଗନ୍ନାଥ, ବଳଭଦ୍ର, ସୋହୋଦ୍ରା' ସୁଦର୍ଶନ ନାମ ବହି
ବଳରାମ ବୋଲିଣ ଯେବଣ ନାମ ହୋଇ
ପ୍ରତକ୍ଷେ ଯେ ସଦାଶିବ କପିଳାସ ବାସୀ ସେହି ।
**ମଧ୍ୟରେ ସୋହଦ୍ରା ଯେ ଜଗତର ପିତା**
ସଂସାର ଜାତ କରିବାକୁ ଅଟନ୍ତି ମହାଜ୍ଞାତା–
ଅନାଦି ମାତାଙ୍କର ଶାପଗୃଣ ଘେନି
ତେଣୁ ସେ ସ୍ତ୍ରୀଲିଙ୍ଗ ରୂପ ବହିଛନ୍ତି ପୁଣି ।" (୨୯)

"ବାମେ ମାରକଣ୍ଡ ଡାହାଣରେ ଯମେଶ୍ୱର
ଉତ୍ତମ ପୁରୁଷଙ୍କ ଆସନ ଯୋଗବଳ,
ମହାବୌଦ୍ଧ ରୂପେ କଳି କାଳ-ପାପନାଶୀ
ଦୁରନ୍ତକ ପାତକ ଯା' ଦର୍ଶନେ ବିନାଶି,
ଅନାଗତ ବେଦରେ ଡାହାଣେ ବଳଭଦ୍ର
ଦୋଷଶୂନ୍ୟ ପିତାମହ ଅଛନ୍ତି ସୋଭଦ୍ର ।" (୩୦)

ଯଶୋବନ୍ତ ଦାସ 'ପ୍ରେମଭକ୍ତି ବ୍ରହ୍ମଗୀତା'ରେ ସୁଭଦ୍ରାଙ୍କୁ ବ୍ରହ୍ମା ରୂପେ ସାକାର କରି ବ୍ରହ୍ମା ସୁଭଦ୍ରା–ଅବତାର କରିବାର କାରଣ ମଧ୍ୟ ଦର୍ଶାଇଛନ୍ତି–

"ଯେକାଳେ ବ୍ରହ୍ମା ବିଷ୍ଣୁ ହର । ଜାତ ହୋଇଲେ ବ୍ରହ୍ମାଣ୍ଡର
ବ୍ରହ୍ମା ରହିଲେ ପୃଥ୍ୱୀ ସ୍ଥାପି । ବିଷ୍ଣୁ ରହିଲେ ସର୍ବବ୍ୟାପୀ ।
ରୁଦ୍ର ରହିଲେ ଯୋଗ ମନ୍ତ୍ର । ଯେମନ୍ତେ କେତେ କାଳ ଅନ୍ତେ ।
ଭେଟିଲେ ମାତା ପୁତ୍ରେ ପୂର୍ଣ୍ଣ । ସେ ରୁଦ୍ର ସଙ୍ଗେ ବିଡ଼ମ୍ବଣ ।
ତା ଶୁଣି ଆମ୍ଭେ ପୁଣି ଗଲୁଁ । ବ୍ରହ୍ମାର ସହିତେ ମିଳିଲୁ ।

ମାତା କହିଲେ ବିଦ୍ୟମଣ । ପୁତ୍ର ସେ ମାତାଙ୍କ ସଙ୍ଗେଣ ।
ଆମ୍ଭେ ବୋଇଲୁଁ ଶୁଣ ମାତ । ଧର୍ମ ସେ ଲଙ୍ଘିଲେ ଯଗତ ।
ବାଳ ସ୍ୱଭବ ରୁଦ୍ର ସେହି । ତୁମ୍ଭେ ଯେ ଗର୍ଭଧାରୀ ଥାଇ ।
ତୁମ୍ଭେ କେମନ୍ତେ କଲ ଏହା । ତା' ଶୁଣି କୋପେ ଯୋଗମାୟା ।
ଶାପ ଆମ୍ଭଙ୍କୁ କୋପେ ଦେଲେ । ଯୋନି ତୁ ନିନ୍ଦିଲୁ ବୋଇଲେ ।
ଯୋନିରୁ ବିଷ୍ଣୁ ହୋଇ ଜାତ । ଯୁଗ ଯୁଗକୁ ସେ ସମ୍ଭୁତ ।
ଯେ ବ୍ରହ୍ମା ପ୍ରିରି ଯୋନି ହେଉ । ଅପୂଜା ହୋଇ ଦିନ ଯାଉ ।

× × ×

ଯେ ରୁଦ୍ର ବଳଭଦ୍ର ରୂପ । ଅଟନ୍ତି ଅନନ୍ତ ସ୍ୱରୂପ ।
ଆମ୍ଭେ ଶ୍ରୀଜଗନ୍ନାଥ ଦେହୀ । ବ୍ରହ୍ମା ସୁଭଦ୍ରା ହୋଇ ତହିଁ । ୩୧

ଅଚ୍ୟୁତାନନ୍ଦ ଦାସ ମଧ୍ୟ 'ମନ୍ମଥ ଚନ୍ଦ୍ରିକା'ରେ ସୁଭଦ୍ରାଙ୍କୁ ବ୍ରହ୍ମାଙ୍କର ରୂପାନ୍ତର ବୋଲି ବର୍ଣ୍ଣନା କରିଛନ୍ତି–

"ଜଗନ୍ନାଥ ରୂପ ଗୋଟି ସତ ବିଷ୍ଣୁ ସହି
ବ୍ରହ୍ମାଟି ସୁଭଦ୍ରା ଦେବୀ ମଧ୍ୟେଛନ୍ତି ରହି ।
ହରି ହଳଧର ମନ ତ୍ରିମାୟା ପୁରୁଷ
କିଛି ନ ଜାଣନ୍ତି ସଦା କାଳର ଉଦାସ । ୩୨

ବିଷ୍ଣୁକେଶରୀ ପୁରାଣ ଓ ମାର୍କଣ୍ଡେୟ ପୁରାଣରେ ଅନୁରୂପ ବର୍ଣ୍ଣନା ଦେଖିବାକୁ ମିଳେ–

"ଏ ଦୋଷରୁ ବିଧାତା ତ୍ରିପିରୀ ରୂପ ହୁଅ
ବେନି ପୁରୁଷ ମଧ୍ୟରେ ତହିଁ ବସିଥାଅ ।
ସୁଭଦ୍ରା ନାମ ବହିଣ ନୀଳାଚଳ ବାସେ
ବିଷ୍ଣୁ ଦକ୍ଷିଣେ ଅନନ୍ତ ଦେବ ବାମ ପାଶେ ।

ମଧ୍ୟେ ବସିବୁ ଯୁବତୀ ରୂପ ତୁହି ଧରି
କର କର୍ଣ୍ଣ ଅଞ୍ଚଳକୁ ହୃଦେ ଗୋପ୍ୟ କରି । ୩୩

"ବ୍ରହ୍ମା ବିଷ୍ଣୁ ଈଶ୍ୱର ଆବର ଦିନମଣି
ଏ ବିଧି ଗୃରି ରୂପ ଜଗତ ଚିନ୍ତାମଣି ।" ୩୪

ଏ ସବୁ ଦୃଷ୍ଟାନ୍ତରୁ ପ୍ରମାଣିତ ହେଉଛି ପଞ୍ଚଦଶ ଓ ଷୋଡ଼ଶ ଶତାବ୍ଦିରେ ବ୍ରହ୍ମା ଅଭିଶାପ ପାଇ ସୁଭଦ୍ରା ହେବା କଥାଟି ଲୋକ-ବିଶ୍ୱାସରେ ଦୃଢ଼ୀଭୂତ ହୋଇ ଯାଇଥିଲା । ବ୍ରହ୍ମା ଅଭିଶାପ ପାଇବା ସମ୍ପର୍କରେ ଦୁଇଟି ପୌରାଣିକ ଉପାଖ୍ୟାନ ରହିଛି । ପ୍ରଥମଟି ହେଲା ନୂତନ ସୃଷ୍ଟି ପାଇଁ ବ୍ରହ୍ମା ଯେତେବେଳେ ଉଦ୍ୟତ ହୁଅନ୍ତି, ସେତିକିବେଳେ ମାତା ଯୋଗମାୟା ବ୍ରହ୍ମାଙ୍କ ସହିତ ରତିକ୍ରୀଡ଼ା ଇଚ୍ଛା କଲେ । ବ୍ରହ୍ମା ଏଭଳି ଅନ୍ୟାୟ ଅନୁରୋଧ ପାଇଁ ଯୋଗମାୟାଙ୍କୁ ତିରସ୍କାର କଲେ । ଏଥିରେ କ୍ରୋଧାନ୍ୱିତା ହୋଇ ଯୋଗମାୟା ଅଭିଶାପ ଦେଲେ, -'ଯେଉଁ ସ୍ତ୍ରୀ ଜାତିକୁ ତୁ ଆଜି ଅବମାନନା କଲୁ ସେହି ସ୍ତ୍ରୀ ରୂପ ଧରି ତୁ ମର୍ତ୍ତ୍ୟରେ ଅବତୀର୍ଣ୍ଣ ହୁଅ ।'' ସେହି ଅଭିଶାପରେ ବ୍ରହ୍ମା ସୁଭଦ୍ରା ରୂପ ଧାରଣ କରିଅଛନ୍ତି । ଅନ୍ୟ ଏକ ପୌରାଣିକ ଉପାଖ୍ୟାନ ହେଉଛି—ଦ୍ୱାପର ଯୁଗରେ ବ୍ରହ୍ମା କୃଷ୍ଣଙ୍କର ବତ୍ସାହରଣ କରିଥିଲେ । ତେଣୁ କ୍ରୁଦ୍ଧ କୃଷ୍ଣ ବ୍ରହ୍ମାଙ୍କୁ ଅଭିଶାପ ଦେଇଥିଲେ, "ତୁମର ଏ ହୀନ ଆଚରଣ ପାଇଁ ତୁମେ ଅପୂଜା ହୋଇ ରହିବ ।" ବ୍ରହ୍ମା କ୍ଷମା ପ୍ରାର୍ଥନା କରିବାରୁ କୃଷ୍ଣ କହିଲେ— "ମୁଁ ମର୍ତ୍ତ୍ୟରେ ପୁରୁଷୋତ୍ତମ କ୍ଷେତ୍ରରେ ଯେତେବେଳେ ଦାରୁବ୍ରହ୍ମ ରୂପେ ପୂଜା ପାଇବି, ତୁମେ ମୋ ସଙ୍ଗରେ ଗୁପ୍ତରେ ରହି ପୂଜା ପାଇବ । ତୁମକୁ କେହି ବ୍ରହ୍ମା ବୋଲି ଜାଣିପାରିବେ ନାହିଁ । ସୁଭଦ୍ରା ଭାବରେ ହିଁ ଜାଣି ଲୋକେ ତୁମକୁ ପୂଜା କରିବେ । ସେହି ଅଭିଶାପ ଓ ଆଶୀର୍ବାଦରେ ବ୍ରହ୍ମା ଆଜି ସୁଭଦ୍ରା ରୂପେ ପୂଜା ପାଉଛନ୍ତି । ୩୫

# ଭଗିନୀ ସୁଭଦ୍ରା

ଜଗନ୍ନାଥ ବିଷ୍ଣୁ ରୂପେ ବିଦିତ ହେବା ଦିନଠାରୁ ବଳଭଦ୍ର ତାଙ୍କର ବଡ ଭାଇ ରୂପେ ଓ ସୁଭଦ୍ରା ତାଙ୍କର ସାନ ଭଉଣୀ ରୂପେ ବିଦିତ ହୋଇ ଆସୁଅଛନ୍ତି । ଜଗନ୍ନାଥଙ୍କୁ ଦ୍ୱାପର ଯୁଗର କୃଷ୍ଣ, ବଳଭଦ୍ରଙ୍କୁ ବଳରାମ ଓ ସୁଭଦ୍ରାଙ୍କୁ ବଳରାମଙ୍କ ସୋଦରା ଭାବରେ ଗ୍ରହଣ କରାଯାଇଛି । କୃଷ୍ଣ ଯଶୋଦା-ନନ୍ଦନ, ବଳରାମ ରୋହିଣୀ-ନନ୍ଦନ ଓ ସୁଭଦ୍ରା ରୋହିଣୀ–କନ୍ୟା । ଯଶୋଦା ଓ ରୋହିଣୀ ନଂଦରାଜାଙ୍କର ଦୁଇ ପତ୍ନୀ । କୃଷ୍ଣଙ୍କ ଅଭିଳାଷ କ୍ରମେ ସୁଭଦ୍ରା ଅର୍ଜ୍ଜୁନଙ୍କୁ ବିବାହ କରିଥିଲେ । କୃଷ୍ଣ, ବଳରାମ ଓ ସୁଭଦ୍ରା କାହିଁକି ମର୍ତ୍ତ୍ୟ ବୈକୁଣ୍ଠ ଶ୍ରୀକ୍ଷେତ୍ରରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ରୂପରେ ଅବତୀର୍ଣ୍ଣ ହେଲେ ସେ ସମ୍ପର୍କରେ ପୌରାଣିକ ଉପାଖ୍ୟାନ ମାନ ରହିଛି । ଏ ଉପାଖ୍ୟାନଗୁଡ଼ିକ ଗୌଡ଼ୀୟ ବୈଷ୍ଣବମାନଙ୍କ ଦ୍ୱାରା ରାଧାଙ୍କ ମହତ୍ତ୍ୱ ପ୍ରଖ୍ୟାପନ ନିମନ୍ତେ ପରିକଳ୍ପିତ ହୋଇଛି । ଏହାର ସଂକ୍ଷିପ୍ତ ସାର ଦେଉଛି–ଥରେ ଶ୍ରୀକୃଷ୍ଣ ଦ୍ୱାରକାରେ ରାଧାଙ୍କ ବିରହ ସହି ନ ପାରି 'ରାଧା' 'ରାଧା' ବୋଲି ଚିତ୍କାର କଲେ । ଶ୍ରୀକୃଷ୍ଣଙ୍କ ଏପରି ଅବସ୍ଥା ଦେଖି ଅଷ୍ଟପାଟବଂଶୀ ବଡ଼ ଚିନ୍ତିତା ହୋଇ ଉଠିଲେ । ବ୍ରଜଲୀଳା ପ୍ରସଙ୍ଗ ଜାଣିବା ପାଇଁ ସେ ବିଷୟରେ ବିଶାରଦା ବୃନ୍ଦା ଦେବୀ (କୌଣସି କୌଣସି ପୁରାଣରେ ରୋହିଣୀ)ଙ୍କୁ ଅନୁରୋଧ କଲେ । ବୃନ୍ଦାଦେବୀ ଏ ପ୍ରସଙ୍ଗ ବ୍ୟାଖ୍ୟାନ ବେଳେ ସେ ସ୍ଥାନକୁ ଯେପରି କୃଷ୍ଣ, ବଳରାମ ବା ଅନ୍ୟ କେହି ନ ଆସି ପାରନ୍ତି ସେଥିପାଇଁ ସୁଭଦ୍ରାଙ୍କୁ ଦ୍ୱାର ଜଗାଇ ଦେଲେ । ଏ ପ୍ରସଙ୍ଗ ବ୍ୟାଖ୍ୟାନ ବେଳେ ରାଜସଭାରେ କୃଷ୍ଣ ବଳରାମଙ୍କର ଚିତ୍ତ ଆନ୍ଦୋଳିତ ହେବାରୁ ସେମାନେ ବ୍ୟାଖ୍ୟାନ ସ୍ଥଳ ଆଡ଼କୁ ଦୌଡ଼ି ଆସିଲେ, କିନ୍ତୁ ସୁଭଦ୍ରା ଅନ୍ତଃପୁର (ବ୍ୟାଖ୍ୟାନ ସ୍ଥଳ) ଆଡ଼କୁ ମୁଖ କରି ଦୁଇ ହାତକୁ ଦୁଇ ଦୁଆର-ବନ୍ଧରେ ରଖି ପଥରୋଧ କଲେ । କୃଷ୍ଣ, ଉପବିଷ୍ଟ ବଳରାମ ସୁଭଦ୍ରାଙ୍କ ଦୁଇପାର୍ଶ୍ୱରେ ଠିଆ ହୋଇ ଅନ୍ତଃପୁର ଆଡ଼କୁ ମୁଖ କରି ବ୍ରଜଲୀଳା ଶ୍ରବଣ କଲେ । ଏ ପ୍ରସଙ୍ଗ ଶୁଣିଲାବେଳେ କୃଷ୍ଣ, ବଳରାମ ଓ ସୁଭଦ୍ରା ଏତେ ଅଭିଭୂତ ହୋଇପଡ଼ିଲେ ଯେ ସେମାନଙ୍କର କଳେବର ବିଗଳିତ ହେବାକୁ ଲାଗିଲା, ଚକ୍ଷୁ

ବିସ୍ତାରିତ ହୋଇଗଲା । ମହାଭାବ ପ୍ରବଳ ହେବାରୁ ତିନିଙ୍କର ହସ୍ତପଦ ସଙ୍କୁଚିତ ହୋଇଗଲା । ସେମାନେ ନିଷ୍ଚଳ ହୋଇଗଲେ । ସୁଦର୍ଶନ ଚକ୍ର ମଧ୍ୟ ତରଳି ଯାଇ ଦୀର୍ଘ ସ୍ତମ୍ଭାକୃତି ଧାରଣ କଲା । ୩୬

ଏହି ସମୟରେ ନାରଦ ସେଠାରେ ପହଞ୍ଚି ଏ ଅବସ୍ଥା ଦେଖି ବିସ୍ମିତ ହୋଇଗଲେ । ବ୍ରଜପ୍ରସଙ୍ଗ ବ୍ୟାଖ୍ୟାନ ଶେଷ ହେବା ପରେ ସମସ୍ତେ ପୂର୍ବାବସ୍ଥା ଫେରି ପାଇଲେ । ବ୍ରଜଲୀଳା ପ୍ରସଙ୍ଗ ଶ୍ରବଣ କରି ଏପରି ଅପୂର୍ବ ରୂପ-ଧାରଣର କାରଣ ବୋଲି ଜାଣିପାରି ନାରଦ ଏପରି ଅପୂର୍ବ ରୂପ ଚତୁଷ୍ଟୟ ଜଗଦ୍‌ବାସୀଙ୍କୁ ଦେଖାଇବା ପାଇଁ କୃଷ୍ଣଙ୍କୁ ଅନୁରୋଧ କଲେ । କୃଷ୍ଣ 'ତଥାସ୍ତୁ' କହି ସମ୍ମତି ପ୍ରଦାନ କରିଥିଲେ । ଏହାପରେ କଳିଯୁଗରେ ଇନ୍ଦ୍ରଦ୍ୟୁମ୍ନଙ୍କ ପ୍ରାର୍ଥନା, ବିମଳାଙ୍କ ତପସ୍ୟା ଓ ନାରଦଙ୍କ ଅନୁରୋଧ କ୍ରମେ ପୁରୁଷୋତ୍ତମ କ୍ଷେତ୍ରରେ ଚତୁର୍ଦ୍ଧାମୂର୍ତ୍ତି ବିରାଜିତ ଓ ପୂଜିତ ହେଉଛନ୍ତି ।

ଅସଲ କଥାଟି ହେଲା ଓଡ଼ିଶାରେ କୃଷ୍ଣ—ଉପାସନାର ପ୍ରାଧାନ୍ୟ ପ୍ରତିଷ୍ଠିତ ହେଲାପରେ ଜଗନ୍ନାଥଙ୍କୁ କୃଷ୍ଣ-ରୂପେ ଗ୍ରହଣ କରି ନିଆଯାଇଛି ଓ ବଳଭଦ୍ରଙ୍କୁ ବଳରାମ ରୂପେ, ସୁଭଦ୍ରାଙ୍କୁ ଦ୍ୱାପର ଯୁଗରେ ସୁଭଦ୍ରା ରୂପେ ପ୍ରତିପାଦନ କରିବା ପାଇଁ ପୌରାଣିକ ଉପାଖ୍ୟାନର ପରିକଳ୍ପନା କରାଯାଇଛି । ଏହିପରି ଭାବରେ ଆଦ୍ୟାଶକ୍ତି ସ୍ୱରୂପିଣୀ ସୁଭଦ୍ରା କୃଷ୍ଣ ବଳରାମଙ୍କର ଭଗିନୀ ଭାବରେ ଗୃହୀତ ହୋଇଛନ୍ତି । ୩୭

## ରାଧା ସ୍ୱରୂପିଣୀ ଓ ଲକ୍ଷ୍ମୀ ସ୍ୱରୂପିଣୀ ସୁଭଦ୍ରା:-

ଓଡ଼ିଶାରେ କୃଷ୍ଣ ଉପାସନାର ପ୍ରଭାବ ଫଳରେ ଗୌଡ଼ୀୟ ବୈଷ୍ଣବମାନେ ସୁଭଦ୍ରାଙ୍କୁ ଜଗନ୍ନାଥରୂପୀ କୃଷ୍ଣଙ୍କର ଭଗିନୀ ଭାବରେ କେବଳ ନୁହଁ, ଶକ୍ତି 'ରାଧା' ଭାବରେ ବି କଳ୍ପନା କରିଛନ୍ତି । ନିଗକାର ବୃହଦ୍‌ ସ୍ୱରୂପ ଜଗନ୍ନାଥଙ୍କର ବର୍ଣ୍ଣ

କାଳବେଳେ ଶିବଦାସ 'ରାଧା ରସାମୃତ ଗୀତା'ରେ ତାହାଙ୍କୁ ଚିରକିଶୋର କୃଷ୍ଣ ଓ ସୁଭଦ୍ରାଙ୍କୁ ଚିର କିଶୋରୀ ରାଧା ଭାବରେ ବର୍ଣ୍ଣନା କରିଛନ୍ତି—

'ସ୍ୱୟଂ ନିରାକାର ପ୍ରଭୁ ଦାରୁବ୍ରହ୍ମ ହୋଇ
ଦର୍ଶନ ମାତ୍ରକେ ପାପୀ ମୋକ୍ଷଗତି ପାଇ ।
ବ୍ରହ୍ମରୂପ ଗୋପ୍ୟ କରି ଦାରୁ ରୂପ ଦିଶେ
ମାୟାବୀମାନଙ୍କୁ ସେହି ହୋଇଛି ଅଦୃଶ୍ୟ ।
କିଶୋର କିଶୋରୀ ରୂପ ସେହି ଅଙ୍ଗେ ଅଛି
କପଟରେ ଚତୁର୍ଦ୍ଧାମୂରତି ସେ ହୋଇଛି ।

× × ×

ଜ୍ୟେଷ୍ଠ ବଳରାମ ଯେ କନିଷ୍ଠ ଜଗନ୍ନାଥ
ଯେଉଁ ରାଧା ସୁଭଦ୍ରା ଟି ନାମ ତାର ଖ୍ୟାତ ।'' ୩୮

ଉତ୍କଳୀୟ ବୈଷ୍ଣବମାନେ ସୁଭଦ୍ରାଙ୍କୁ ଜଗନ୍ନାଥଙ୍କର ପ୍ରେୟସୀ ବା ସ୍ତ୍ରୀ ଭାବରେ ଗ୍ରହଣ କରିପାରି ନାହାନ୍ତି । ଏପରିକି କି ଲକ୍ଷ୍ମୀଙ୍କ ପରିବର୍ତ୍ତେ ସୁଭଦ୍ରାଙ୍କୁ ପାଖରେ ରଖିଥିବାରୁ ଓ ଦୁଇ ଭାଇ ଭଉଣୀଙ୍କୁ ସଙ୍ଗରେ ନେଇ ମନ୍ଦିରରେ ଥିବାରୁ ଏହା ନିର୍ଲଜ୍ଜ କାର୍ଯ୍ୟ ବୋଲି ସମାଲୋଚନା କରିବାକୁ ଛାଡ଼ି ନାହାନ୍ତି । ଅଭିମାନୀ କବି ବଳରାମ ଦାସ 'ଭାବ ସମୁଦ୍ର'ରେ ଲେଖିଛନ୍ତି—

''ତୋର ମୁଖେ ଲାଜ ସଙ୍କୋଚ ନାହିଁ
ମଧ୍ୟରେ ଭଗ୍ନୀ ପାଶେ ବେନି ଭାଇ ।

× × ×

ସୁଭଦ୍ରାଙ୍କୁ ଯେ କାହିଁ ଦେବୁ କହ
ଅର୍ଜ୍ଜୁନର ତୋର ଏକଇ ଦେହ ।
ହରି ହୋ ବେଳେ ଅଛୁ ତାକୁ ଦେଇ
ଏବେ ହୋ କାହିଁ ହୋଇ ହସିଥାଇ ।
ସୁଭଦ୍ରାଙ୍କୁ କଲୁ ଦେଖା ଦର୍ଶନୀ
ବଳରାମ ଦାସ କହିଲ ଜାଣି ।'' ୩୯

ଅଚ୍ୟୁତାନନ୍ଦ ମଧ୍ୟ 'ମନ୍ମଥ ଚନ୍ଦ୍ରିକା'ରେ ସୁଭଦ୍ରାଙ୍କୁ ଗମେଶ୍ୱରୀ ରାଧା ବୋଲି କହିଛନ୍ତି–

"ସୁଭଦ୍ରାଟି ରଙ୍ଗଦେବୀ ରାଧା ରଙ୍ଗେଶ୍ୱରୀ
ମଧ୍ୟରେ ବିଜୟ ମାତ ଶୂନ୍ୟ ରୂପ ଧରି ।" ୪୦

ଉତ୍କଳୀୟ ବୈଷ୍ଣବମାନେ ସୁଭଦ୍ରାଙ୍କୁ ଲକ୍ଷ୍ମୀ ସ୍ୱରୂପା ବୋଲି କଳ୍ପନା କରିଛନ୍ତି । 'ସ୍କନ୍ଦପୁରାଣ' ଉତ୍କଳ ଖଣ୍ଡରେ ସୁଭଦ୍ରା ଲକ୍ଷ୍ମୀଙ୍କର ଅବତାର ବୋଲି ବର୍ଣ୍ଣିତ ହୋଇଛନ୍ତି । ୪୧ 'ନୀଳାଦ୍ରି ମହୋଦୟ'ରେ ମଧ୍ୟ ତାଙ୍କୁ ବୈଷ୍ଣବୀ, ବିଷ୍ଣୁରୂପା, ମହାଲକ୍ଷ୍ମୀ ଭାବରେ ସମ୍ବୋଧନ କରଯାଇ ନମସ୍କାର ଜ୍ଞାପନ କରଯାଇଛି । ତନ୍ତ୍ରଜ୍ଞ ଗଣେଶ ପ୍ରସାଦ ପରିଜା ସୁଭଦ୍ରାଙ୍କୁ 'ସପ୍ତଶତୀ ଚଣ୍ଡୀ'ର ମହାଲକ୍ଷ୍ମୀ ରୂପେ କଳ୍ପନା କରିଛନ୍ତି । ୪୨

## ତନ୍ତ୍ରଦେବୀ–ସୁଭଦ୍ରା

ପ୍ରଥମେ ବୌଦ୍ଧଧର୍ମରେ ତନ୍ତ୍ରପ୍ରବେଶ ଲାଭ କଲା ପରେ କାଳକ୍ରମେ ଶୈବ, ଶାକ୍ତ ଓ ବୈଷ୍ଣବ ଧର୍ମକୁ ଆକ୍ରାନ୍ତ କରିଥିଲା । ତେଣୁ ତନ୍ତ୍ରର ଶକ୍ତି ଭିନ୍ନ ଭିନ୍ନ ରୂପ ଧାରଣ କରିଛନ୍ତି । ବୌଦ୍ଧ ତନ୍ତ୍ରଗ୍ରନ୍ଥରେ ବଜ୍ରପ୍ରଭ ଓ ସୁଭଦ୍ରଙ୍କ ସଙ୍ଗରେ ସୁଭଦ୍ରା କିପରି ସମ୍ପର୍କିତା, ସେ କଥା ପୂର୍ବରୁ ଆଲୋଚିତ ହୋଇଅଛି । ବଜ୍ରପ୍ରଭ ଓ ସୁଭଦ୍ର ପ୍ରଭୃତି ଶୈବ ଓ ଶାକ୍ତ ଧର୍ମରେ ଶିବ, ଭବ, ଭୈରବ ଆଦି ରୂପରେ ପରିଣତ ହୋଇ ଯାଇଛନ୍ତି । ବୈଷ୍ଣବ ଧର୍ମରେ ଶକ୍ତିଙ୍କୁ ବୈଷ୍ଣବୀ ବୋଲି କୁହାଯାଇଛି । ବ୍ରହ୍ମାଙ୍କର ଶକ୍ତି ଭାବରେ ବ୍ରାହ୍ମଣୀ ମଧ୍ୟ ପରିକଳ୍ପିତ ହୋଇଛନ୍ତି । ସୁଭଦ୍ରା ଏ ସବୁ ଧର୍ମ ସହିତ ଶକ୍ତି ଭାବରେ ବନ୍ଦିତା ହୋଇଛନ୍ତି–

"ନମୋ ଦେବ୍ୟୈ ମହାଦେବ୍ୟୈ ବୈଷ୍ଣବ୍ୟୈ ଚ ନମୋ ନମଃ ।
ବ୍ରହ୍ମାଣ୍ୟୈ ବ୍ରହ୍ମରୂପାୟୈ ଶିବାୟୈ ସତତଂ ନମଃ ॥

ରୁଦ୍ରାଣ୍ୟୈ ରୁଦ୍ରରୂପାୟୈ କାଳରାତ୍ର୍ୟୈ ନମୋ ନମଃ ।
ବୈଷ୍ଣବ୍ୟୈ ବିଷ୍ଣୁରୂପାୟୈ ମହାଲକ୍ଷ୍ମ୍ୟୈ ନମୋ ନମଃ ।।
ସ୍ତ୍ରୀ ରୂପିଣ୍ୟୈ ନମସ୍ତେଽସ୍ତୁ ସୁଭଦ୍ରେ ତ୍ୱାଂ ନମାମ୍ୟହମ୍ ।
ସାକ୍ଷାତ୍ ବ୍ରହ୍ମସ୍ୱରୂପାଂ ତ୍ୱାଂ ଜଗଦମ୍ବେ ନମୋଽସ୍ତୁ ତେ ।। ୪୩

ଭାରତର ଚାରୋଟି ପ୍ରଧାନ ଦେବପୀଠ ମଧ୍ୟରେ ଓଡ୍ରୀୟାନ ଥିଲା ଅନ୍ୟତମ । ଏହି ଓଡ୍ରୀୟାନର ଦେବୀ ବିମଳା ପ୍ରଧାନ ଶକ୍ତି ଭାବରେ ଓ ଓଡ୍ରେଶ ଜଗନ୍ନାଥ ଭୈରବ ରୂପରେ ବହୁ ସ୍ଥାନରେ ବନ୍ଦିତ ହୋଇଛନ୍ତି ।

"ଓଡ୍ରାଖ୍ୟଂ ପ୍ରଥମଂ ପୀଠଂ ଦ୍ୱିତୀୟଂ ଜାଳଶୈଳକମ୍
ତୃତୀୟଂ ପୂର୍ଣ୍ଣପୀଠନ୍ତୁ କାମରୂପଂ ଚତୁର୍ଥକମ୍ ।
ଓଡ୍ରପୀଠଂ ପଶ୍ଚିମେ ତୁ ତଥୈବୋଡ୍ରେଶ୍ୱରୀଂ ଶିବାମ୍
କାତ୍ୟାୟିନୀଂ ଜଗନ୍ନାଥମୋଡ୍ରେଶଂ ଚ ପ୍ରପୂଜୟେତ୍ ।" ୪୪

'ଦେବୀ ଭାଗବତ'ରେ ବର୍ଣ୍ଣିତ ଅଛି ଦକ୍ଷପ୍ରଜାପତିଙ୍କ କନ୍ୟା ଓ କାପାଳିକ ଶିବଙ୍କ ପତ୍ନୀ ଦେବୀ ସତୀଙ୍କର ମୃତ ଶରୀରକୁ ଶିବଙ୍କର କାନ୍ଧରୁ ଖସାଇବା ପାଇଁ ମହାବିଷ୍ଣୁ ଶ୍ରୀଜଗନ୍ନାଥ ତାହାକୁ ଖଣ୍ଡ ଖଣ୍ଡ କରି ଦେଇଥିଲେ । ଏହା ୧୦୮ ଭାଗରେ ବିଭକ୍ତ ହୋଇ ଭୂପତିତ ହେଲା ଓ ପୁରୁଷୋତ୍ତମ ପୀଠରେ ପତିତ ଶରୀରାଂଶରୁ ବିମଳାପୀଠରେ ସୃଷ୍ଟି ହେଲା । ଏ ଶରୀରାଂଶଟି ପଦଯୁଗଳ, ନାଭିମଣ୍ଡଳ କି ରସନା ଏ ସମ୍ପର୍କରେ ମତଭେଦ ରହିଛି । ତେବେ ଏ ବର୍ଣ୍ଣନାବେଳେ ବିମଳାଙ୍କୁ ଭୈରବୀ ଓ ଜଗନ୍ନାଥଙ୍କୁ ଭୈରବ ଭାବରେ ଗ୍ରହଣ କରଯାଇଛି—

(କ) "ଉତ୍କଳେ ନାଭିଦେଶେ ଚ ବିମଳା ପୁରୁଷୋତ୍ତମେ
ବିମଳା ଭୈରବୀ ଯତ୍ର ଜଗନ୍ନାଥ ସ୍ତୁ ଭୈରବଃ ।"

(ଖ) "ରସନା ଉତ୍ର ଦେଶେ ଚ ବିମଳା ପୁରୁଷୋତ୍ତମେ
ତଦ୍‌ଭୂଷିଷ୍ଟ ମହାପୀଠେ ଜଗନ୍ନାଥାଖ୍ୟୋ ଭୈରବଃ ।

କୈବଲ୍ୟ ଦକ୍ଷ ଶାଗ୍ଧରଦ୍ରବ୍ୟଂ କୈବଲ୍ୟମେବଚ
ଉଡ୍‌ଡୀୟାନ ପରଂ କେଁଳା ବିମଳା ବିମଳପ୍ରଦା ।''

ଅନ୍ୟ ତନ୍ତ୍ରପୀଠମାନଙ୍କରେ ଭୈରବ ରକ୍ଷକ ଥିବା ସମୟରେ ବିମଳା ପୀଠରେ ଭୈରବ (ଜଗନ୍ନାଥ) ସ୍ୱୟଂ ସ୍ୱାମୀ, ପଠାଧିକାରୀ ଯଥା–

(କ) ''ବିମଳା ସା ମହାଦେବୀ ଜଗନ୍ନାଥ ସ୍ତୁ ଭୈରବଃ ।''

(ଖ) ''ଦକ୍ଷିଣାର୍ଣ୍ଣବତୀରେଣ ଉଡ୍‌ଡ୍ରୀୟାନ ପରଂସ୍ଥଳଂ
ଉଡ୍‌ଡୀଶ ଭୈରବ ସାକ୍ଷାତ୍ ମାଧବ କମଳେ କ୍ଷଣମ୍
ବିମଳା ଭୈରବୀ ନିତ୍ୟାନିତ୍ୟ କୈବଲ୍ୟ ଭୋଜିନୀ
ଚିଜ୍ଜିକୌଳମତାଃ ସର୍ବେ କୌଳାଗ୍ଧର ପରାୟଣଃ ।''

ଜଗନ୍ନାଥଙ୍କ ଭୋଗ ବିମଳାଙ୍କ ପାଖରେ ସମର୍ପିତ ହେଲପରେ 'ମହାପ୍ରସାଦ' ରୂପେ ପରିଗଣିତ ହୁଏ । ଏହି ବିମଳାଙ୍କ ସହିତ ସୁଭଦ୍ରାଙ୍କର କୌଣସି ସମ୍ପର୍କ ଅଛି କି ନାହିଁ ନିର୍ଣ୍ଣୟ କରିବାର କଥା । ବିମଳାଙ୍କୁ ଯେପରି ତନ୍ତ୍ରଧାରରେ ପୂଜା କରଯାଏ, ସୁଭଦ୍ରାଙ୍କୁ ସେହିପରି ତନ୍ତ୍ରଧାରରେ ପୂଜା କରଯାଏ । ସୁଭଦ୍ରା ଓ ବିମଳା ଉଭୟଙ୍କୁ ଦୁର୍ଗା ଭବରେ ଗ୍ରହଣ କରଯାଏ । ପୁଣି ବିମଳା ଜଗନ୍ନାଥଙ୍କର ମାୟା ଶକ୍ତି, ବଳଭଦ୍ରଙ୍କର କ୍ରିୟା ଶକ୍ତି ଓ ସୁଭଦ୍ରାଙ୍କର ଇଚ୍ଛା ଶକ୍ତି ରୂପେ ବର୍ଣ୍ଣିତ । ୪୫ ବିମଳା 'ଓଁ ହ୍ରୀଁ' ମନ୍ତ୍ରରେ ପୂଜିତ ହୋଇଥାନ୍ତି । ୪୬ ସୁଭଦ୍ରା ମଧ୍ୟ 'ଓଁ ହ୍ରିଂ' ମନ୍ତ୍ରରେ ପୂଜିତ ହୋଇଥାନ୍ତି । ୪୭ କୌଣସି କୌଣସି ସ୍ଥାନରେ 'ବିମଳା ସା ମହାଦେବୀ ଜଗନ୍ନାଥସ୍ତୁ ଭୈରବଃ'' ଲେଖାଥିଲାବେଳେ କୌଣସି କୌଣସି ସ୍ଥାନରେ 'ସୁଭଦ୍ରା ସା ମହାଦେବୀ ଜଗନ୍ନାଥସ୍ତୁ ଭୈରବଃ' ବୋଲି ଲେଖାଯାଇଛି । ୪୮ ବହୁ କ୍ଷେତ୍ରରେ ଉଭୟ ବିମଳା ଓ ସୁଭଦ୍ରାଙ୍କୁ ଭୈରବୀ ବୋଲି କୁହାଯାଇଛି । ତେଣୁ ଅନେକ ତନ୍ତ୍ରଜ୍ଞ ସୁଭଦ୍ରା ଓ ବିମଳାଙ୍କ ମଧ୍ୟରେ ଅଭିନ୍ନତା ଲକ୍ଷ୍ୟ କରନ୍ତି । ବୌଦ୍ଧଧର୍ମର ତନ୍ତ୍ର ଶୈବ, ଶାକ୍ତ ଓ ବୈଷ୍ଣବ ଧର୍ମରେ ଅନୁପ୍ରବେଶ କରିବା

ପରେ ହିଁ ସୁଭଦ୍ରାଙ୍କର ଏପରି ବର୍ଣ୍ଣନା ହୋଇଅଛି । ଡଃ ବଂଶୀଧର ମହାନ୍ତିଙ୍କ ମତରେ, 'ଜଗନ୍ନାଥ ଏବଂ ବଳଭଦ୍ର ଉଭୟଙ୍କ ମଧ୍ୟରେ ସ୍ଥାପିତ ସୁଭଦ୍ରାଙ୍କ ପ୍ରତିମା ତାନ୍ତ୍ରିକ ବୌଦ୍ଧଧର୍ମର ଇଙ୍ଗିତ ଦେଇଥାଏ । 'ସୁଦର୍ଶନ' ମୂର୍ତ୍ତି ଗୋଟିଏ ସ୍ତମ୍ଭ ବା ଲିଙ୍ଗର ଆକୃତି, ତାହା ବଜ୍ରଯାନରେ 'ଚକ୍ର' ବା 'ଲିଙ୍ଗ'ର ସଙ୍କେତ ବୋଲି ମନେହୁଏ ।'' ୪୯

ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଯେଉଁ ସିଂହାସନ ଉପରେ ଅଧିଷ୍ଠିତ ତାହାର ଭିତରଟି ହେଉଛି ଫମ୍ପା, ତାହାର ପଛ ପାଖରେ ଅନ୍ଧକାର ମଧ୍ୟରେ ଗୁପ୍ତ ଦ୍ୱାରଟିଏ ଅବସ୍ଥିତ । ସେଠାରେ ତ୍ରିପୁର ଦେବୀଙ୍କର ଯନ୍ତ୍ର ଅତି ଗୁପ୍ତ ଭାବରେ ସଂରକ୍ଷିତ ହୋଇଅଛି । ତେଣୁ ସିଂହାସନରେ ଯେଉଁ ଭୋଗ ସମର୍ପିତ ହୁଏ ତାହା ଭୈରବ ଚକ୍ରରେ ମହାପ୍ରସାଦ ରୂପେ ଗୃହୀତ ହୋଇଥାଏ । ୫୦ ଜଗନ୍ନାଥଙ୍କ ପୀଠରେ ତନ୍ତ୍ରର ପ୍ରଭାବ ସମ୍ପର୍କରେ ଏକ କିମ୍ବଦନ୍ତୀ ରହିଛି—''ଦକ୍ଷପ୍ରଜାପତିଙ୍କ କନ୍ୟା ସତୀ ଦେବୀଙ୍କର ନାଭିଦେଶ ବିରଜା କ୍ଷେତ୍ରରେ ପତିତ ହେଲା । ସେଠାରୁ ଏହା ଭସି ଭସି ଆସି ପୁରୀ ସମୁଦ୍ର କୂଳରେ ଲାଗିଲା । କଳିଙ୍ଗ ରାଜା ସ୍ୱପ୍ନରେ ଆଦିଷ୍ଟ ହୋଇ ଏହି ନାଭିକୁ ତିନି ଖଣ୍ଡ କରି ତିନୋଟି ବିଗ୍ରହ ମଧ୍ୟରେ ସ୍ଥାପନ କଲେ । ଏହି ତିନୋଟି ବିଗ୍ରହ ମଧ୍ୟରୁ କୃଷ୍ଣ ବିଗ୍ରହଟି ହେଉଛନ୍ତି ଭୈରବ, ପୀତ ବିଗ୍ରହଟି ଭଦ୍ରା ବା ସୁଭଦ୍ରା (ଦୁର୍ଗା) ଓ ଶ୍ୱେତ ବିଗ୍ରହଟି ଅନନ୍ତବଳୟ ଶିବ । କାଳକ୍ରମେ ଓଡ଼ିଶାରେ ବୈଷ୍ଣବ ଧର୍ମର ପ୍ରାଧାନ୍ୟ ଯୋଗୁ ବିଗ୍ରହ ତିନୋଟି ଭିନ୍ନ ନାମ ଲାଭ କରିଛନ୍ତି । ମାତ୍ର ବିଗ୍ରହଗୁଡ଼ିକୁ ପ୍ରଥମରୁ ଯେଉଁ ତନ୍ତ୍ରମତରେ ପୂଜା କରାଯାଉଥିଲା ଅଦ୍ୟାବଧି ତାହା ଅବ୍ୟାହତ ରହିଛି । ୫୧

ଯୋଗମାର୍ଗୀ ଉତ୍କଳୀୟ ବୈଷ୍ଣବମାନେ ମଧ୍ୟ ବଳଭଦ୍ରଙ୍କୁ ଶ୍ରୀଁ ବୀଜ, ଜଗନ୍ନାଥଙ୍କୁ କ୍ଲୀଁ ବୀଜ ଓ ସୁଭଦ୍ରାଙ୍କୁ ହ୍ରୀଁ ବୀଜର ମୂଳ ଦେବତା ରୂପେ ଗ୍ରହଣ କରିଛନ୍ତି । ଦିବାକର ଦାସ 'ଜଗନ୍ନାଥ ଚରିତାମୃତରେ ଲେଖିଛନ୍ତି—

'ଶ୍ରୀଁକାର ବଳଦେବ ଜାଣ । ସୁଭଦ୍ରା ହ୍ରୀଁ ବୀଜ ପ୍ରମାଣ
ରାଧିକା ସଂଯୁକ୍ତ ଅଟନ୍ତି । କ୍ଲୀଁ ବୀଜ ଜଗନ୍ନାଥ ମୂର୍ତ୍ତି ।'' ୫୨

## ଜଗତ୍‌ଜନନୀ ଆଦ୍ୟାଶକ୍ତି ସୁଭଦ୍ରା:-

ସୁଭଦ୍ରା ଭଗିନୀ ଭାବରେ ନୁହେଁ ଶକ୍ତି ଭାବରେ ପ୍ରତିଷ୍ଠିତା ହେବା-ଯୋଗୁଁ ହିଁ ତାହାଙ୍କୁ ଜଗଜ୍ଜନନୀ ଓ ଆଦ୍ୟାଶକ୍ତି ଭାବରେ ସମ୍ମାନ ଦିଆଯାଇଛି । ସାଂଖ୍ୟ ଦର୍ଶନରେ 'ପ୍ରକୃତି' ହେଉଛନ୍ତି ଜଗଜ୍ଜନନୀ ଓ ଆଦ୍ୟାଶକ୍ତି । ନିର୍ବିକଳ୍ପ 'ପୁରୁଷ' 'ପ୍ରକୃତି' ଅନ୍ୱିତା ହୋଇ ଇଚ୍ଛାଶକ୍ତିର ଅଧିକାରୀ ହେଲେ ଓ ସୃଷ୍ଟି ସମ୍ପାଦନ କଲେ ଏହି 'ପୁରୁଷ'ଙ୍କୁ ଭାରତୀୟ ଦର୍ଶନ ଗ୍ରନ୍ଥମାନଙ୍କରେ ପରମାତ୍ମା ଆଖ୍ୟା ଦିଆଯାଇଛି । ସେ ପ୍ରଥମେ ନିର୍ଗୁଣ ଥିଲେ । ଅନନ୍ତର ତ୍ରିଗୁଣମୟୀ ଯୋଗମାୟାଙ୍କୁ ଆଶ୍ରୟ କରି ସୃଷ୍ଟି ଲୀଳା ସମ୍ପାଦନ କରିବାପାଇଁ ସତ୍ତ୍ୱ, ରଜ, ତମ ତିନିଗୁଣରେ ଅନ୍ୱିତ ହୋଇ ସଗୁଣ ହେଲେ । ସେ ହେଲେ ବ୍ରହ୍ମା, ସେ ହେଲେ ବିଷ୍ଣୁ, ସେ ହେଲେ ମହେଶ୍ୱର । ("ଏକ ବ୍ରହ୍ମତ୍ରୟ ଭଙ୍ଗା ବ୍ରହ୍ମା-ବିଷ୍ଣୁ-ମହେଶ୍ୱରାଃ ।") ବ୍ରହ୍ମା ଭାବରେ ସେ ସୃଷ୍ଟି କଲେ, ବିଷ୍ଣୁ ଭାବରେ ପାଳନ କଲେ, ମହେଶ୍ୱର ଭାବରେ ସଂହାର କଲେ । ତ୍ରିଗୁଣମୟୀ ଯୋଗମାୟାଙ୍କୁ ଆଦ୍ୟାଶକ୍ତି ଓ ଜଗଜ୍ଜନନୀ ଭାବରେ ଗ୍ରହଣ କରାଯାଏ । ତାହାଙ୍କ ସମ୍ପର୍କରେ ବିଭିନ୍ନ ଶାସ୍ତ୍ର, ପୁରାଣ ଓ କାବ୍ୟମାନଙ୍କରେ ପ୍ରଶସ୍ତିଗାନ କରାଯାଇ ଅଛି । ଯଥା :-

(କ) "ଯୋଗମାୟା ମହାଦେବୀ ମହାମାୟା ନମୋଽସ୍ତୁତେ
ଈଶ୍ୱରୀ ଅଙ୍ଗଭଞ୍ଜନମ୍ ବ୍ରହ୍ମସ୍ଥାନ ସ୍ଥିତେ ସଦା ।" ୫୩

(ଖ) "ଶିବ ଶକ୍ତି ସମାଯୋଗଃ ପରମାତ୍ମେତି ନିଶ୍ଚିତମ୍
ପରାଂ ଶକ୍ତେଷୁ ସଂଜାତା ଛିନ୍ନକ୍ତିଷୁ ତଦ୍‌ଭବାମ୍ ।" ୫୪

ସୁଭଦ୍ରାଙ୍କୁ ଏହି ଜଗଜ୍ଜନନୀ ଆଦ୍ୟାଶକ୍ତି ଯୋଗମାୟା ରୂପେ ଅନେକ ପଣ୍ଡିତ ଗ୍ରହଣ କରି ତାହାଙ୍କୁ ଜୀବାତ୍ମାର ଗତି ନିୟନ୍ତ୍ରଣ-କାରିଣୀ ଶକ୍ତି ବୋଲି ମତ ଦେଇଥାନ୍ତି । ସେ ପ୍ରଣବ ତତ୍ତ୍ୱରେ ଅର୍ଦ୍ଧମାତ୍ରା ଓ ସୃଷ୍ଟି ତତ୍ତ୍ୱରେ ଚଳ

ଉପର ଦୁଇବିନ୍ଦୁର ସଂଯୋଗ କାରିଣୀ ଅର୍ଥାତ୍ ଦୁଇ ବିନ୍ଦୁ ବା ଦୁଇ ଶୂନ୍ୟର ସଂଯୋଗ-କାରିଣୀ ବିସର୍ଗ ମାତ୍ରା ଃ, ଃ) । ପ୍ରଥମେ ସୃଷ୍ଟି ପୂର୍ବରୁ 'ପୁରୁଷ' ବା 'ପରମାତ୍ମା'ଙ୍କର ଇଚ୍ଛାଶକ୍ତି ଜନିତ ଯେଉଁ କମ୍ପନ (କାଂପିଲ୍ୟ) ସୃଷ୍ଟି ହୁଏ, ତାହା ଦୁଇଶକ୍ତିର ମିଳନଜନିତ କମ୍ପନ । ଏହି ଦୁଇଶକ୍ତି ହେଉଛି ସଗୁଣ ଶକ୍ତି ଓ ନିର୍ଗୁଣ ଶକ୍ତି । (ପ୍ରକୃତି ଓ ପୁରୁଷ), ଏହା ଦୁଇ ଶୂନ୍ୟର ସଂଯୋଗ ଶକ୍ତି । ଦୁଇ ଶୂନ୍ୟର ସଂଯୋଗ କଲେ ବିସର୍ଗ (ଃ) ସୃଷ୍ଟି ଲାଭ କରେ । ଏହି ବିସର୍ଗ ମାତ୍ରା ହିଁ ସୁଭଦ୍ରା । କମ୍ପନର କାରଣ ସ୍ୱରୂପ ତାହାଙ୍କୁ 'କାଂପିଲ୍ୟ-ବାସିନୀ' ବୋଲି ମଧ୍ୟ ଅଭିହିତ କରଯାଇଛି । ୫୫

ସ୍କନ୍ଦ ପୁରାଣରେ ସୁଭଦ୍ରାଙ୍କୁ ଜଗଜ୍ଜନନୀ ଭାବରେ ବ୍ରହ୍ମା ସ୍ତୁତି କରିଥିବାର ଉଲ୍ଲେଖ ରହିଛି—

"ଜୟ ଭଦ୍ରେ ସୁଭଦ୍ରେ ତ୍ୱଂ ସର୍ବେଷାଂ ଭଦ୍ରଦାୟିନି !
ଭଦ୍ରା ଭଦ୍ରାସ୍ୱରୂପା ତ୍ୱଂ ଭଦ୍ରକାଳି ନମୋଽସ୍ତୁତେ ।
ତ୍ୱଂ ମାତା ଜଗତାଂ ଦେବି ! ପିତା ନାରାୟଣୋ ହି ସଃ
ସ୍ତ୍ରୀ ରୂପଂ ସର୍ବମେବ ତ୍ୱଂ ପୁଂରୂପୋ ଜଗଦୀଶ୍ୱରଃ ।" ୫୬

ଶଙ୍ଖନାଭି ସିଂହାସନ (ରତ୍ନମଣ୍ଡପ)ରେ ସୁଭଦ୍ରା ଯୋଗମାୟା ରୂପ ଧାରଣ କରି ଅବତୀର୍ଣ୍ଣ ହୋଇଥିବାର ସୂଚନା ଶିବଦାସଙ୍କର 'ରାଧା ରସାମୃତ ଗୀତା'ରେ ମିଳିଥାଏ—

"ଶଙ୍ଖନାଭି ସିଂହାସନ ଯେଉଁ ସ୍ଥାନ କହି
ଯେଉଁ ସିଂହାସନେ ଯୋଗମାୟା ରୂପ ହୋଇ ।" ୫୭

## ଉପସଂହାର

ବିଭିନ୍ନ ସମୟରେ ବିଭିନ୍ନ ଧର୍ମ, ସଂସ୍କୃତି ଓ ବିଶ୍ୱାସର ବିଦ୍ୱାନ୍‌ମାନେ ସୁଭଦ୍ରାଙ୍କୁ ନିଜ ନିଜ ଦୃଷ୍ଟିକୋଣରୁ ଦେଖିଥିବାରୁ ସୁଭଦ୍ରାଙ୍କର ଏତେ ଏତେ

ରୂପ ଆବିଷ୍କୃତ ହୋଇଛି । ତେଣୁ ସୁଭଦ୍ରାଙ୍କର ପ୍ରକୃତ ସ୍ୱରୂପ ନିରୂପଣ କରିବା ଅତି କଷ୍ଟକର ବ୍ୟାପାର । ତେବେ ପୁରୀ ମନ୍ଦିରରେ ପ୍ରଥମେ ଜଗନ୍ନାଥ ପ୍ରତିଷ୍ଠିତ ହୋଇ ପରେ ବଳଭଦ୍ର ଓ ସୁଭଦ୍ରା ପ୍ରତିଷ୍ଠିତ ହୋଇଥିବାର ଐତିହାସିକ ପ୍ରମାଣ ମିଳିଥିବାରୁ ପରେ ବଳଭଦ୍ର ଓ ସୁଭଦ୍ରାଙ୍କର ସମାବେଶର କାରଣ ଅନୁସନ୍ଧାନ କରଯାଇ ପାରେ । ଯଦି "ଏମାନେ ଏକତ୍ର ଏକ ସମୟରେ ପ୍ରତିଷ୍ଠିତ ହୋଇ-ଥିଲେ ମାତ୍ର ଜଗନ୍ନାଥଙ୍କ ପ୍ରାଧାନ୍ୟ ଯୋଗୁ କେବଳ ତାଙ୍କରି ବର୍ଣ୍ଣନା ଗ୍ରନ୍ଥ ଓ ଅଭିଲେଖମାନଙ୍କରେ ମିଳିଥାଏ, ବଳଭଦ୍ର ଓ ସୁଭଦ୍ରାଙ୍କର ଉଲ୍ଲେଖ ମିଳି ନ ଥାଏ ।" ଏହି ମତକୁ ଗ୍ରହଣ କରଯାଏ, ତଥାପି ଏ ତିନିଙ୍କର ସମାବେଶର କାରଣ ମଧ୍ୟ ଅନୁସନ୍ଧାନ କରଯିବା ଉଚିତ । ଏ ଦୁଇ ଠାକୁର ଦୁଇ ଭାଇ ଏବଂ ସୁଭଦ୍ରା ତାଙ୍କର ଭଉଣୀ ଏହି ମତ ଗ୍ରହଣ କରଯିବା ପାଇଁ କୌଣସି ବଳିଷ୍ଠ ବାସ୍ତବିକ ଯୁକ୍ତି ନାହିଁ । ହିନ୍ଦୁ ତ୍ରିମୂର୍ତ୍ତି ବା ବୌଦ୍ଧ ତ୍ରିରତ୍ନ ଏହି ତ୍ରିମୂର୍ତ୍ତିର ପରିକଳ୍ପନା-ଉତ୍ସ ହୋଇପାରେ । ହିନ୍ଦୁ ତ୍ରିମୂର୍ତ୍ତି ପରିକଳ୍ପନାରେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ସ୍ଥାନ ପାଇଛନ୍ତି । ଜଗନ୍ନାଥଙ୍କ ମଧ୍ୟରେ ତେଣୁ ବିଷ୍ଣୁତ୍ୱ, ବଳଭଦ୍ରଙ୍କ ମଧ୍ୟରେ ମହେଶ୍ୱରତ୍ୱ ଓ ସୁଭଦ୍ରାଙ୍କ ମଧ୍ୟରେ ବ୍ରହ୍ମାତ୍ୱ ଆରୋପ କରଯାଇଛି । କିନ୍ତୁ ଓଡ଼ିଶାରେ ବ୍ରହ୍ମାଙ୍କ ଉପାସନା ଗୁରୁତ୍ୱ ଲାଭ କରିନାହିଁ । ବୌଦ୍ଧ ତ୍ରିରତ୍ନ କାଳକ୍ରମେ ତ୍ରିମୂର୍ତ୍ତିରେ ପରିଣତ ହୋଇଯିବା କଥା ଡକ୍ଟର ମହତାବ ପ୍ରତିପାଦନ କରିବାକୁ ଚେଷ୍ଟା କରିଛନ୍ତି । ତେଣୁ ସେ ଜଗନ୍ନାଥଙ୍କ ମଧ୍ୟରେ ବୁଦ୍ଧତ୍ୱ, ବଳଭଦ୍ରଙ୍କ ମଧ୍ୟରେ ସଂଘତ୍ୱ ଓ ସୁଭଦ୍ରାଙ୍କ ମଧ୍ୟରେ ଧର୍ମତତ୍ତ୍ୱର ଆରୋପଣ କରିଛନ୍ତି ।

ପଣ୍ଡିତ ମୁଖାର୍ଜୀଙ୍କ ମତରେ ତ୍ରୟୋଦଶ ଶତାବ୍ଦୀରେ ଓଡ଼ିଶାରେ ରାମାନୁଜାଚାର୍ଯ୍ୟଙ୍କ ପ୍ରବର୍ତ୍ତିତ ଶ୍ରୀସଂପ୍ରଦାୟର ପ୍ରାଧାନ୍ୟ ଲୋପ ପରେ ମେଦିନପୁର-ବାସୀ ରମାଇ ପଣ୍ଡିତ 'ଧର୍ମ' ସମ୍ପ୍ରଦାୟର ପ୍ରବର୍ତ୍ତନ କରିଥିଲେ ଓ ବ୍ରାହ୍ମଣ୍ୟ ଧର୍ମ ସହିତ ବୌଦ୍ଧଧର୍ମର ସମୀକରଣ ପାଇଁ ଚେଷ୍ଟା କରିଥିଲେ । ବ୍ରାହ୍ମଣ୍ୟଧର୍ମର

ଭାଗବତ ସମ୍ପ୍ରଦାୟର ତ୍ରିମୂର୍ତ୍ତି ସହିତ ବୌଦ୍ଧ ତ୍ରିରତ୍ନର ସମୀକରଣ ପାଇଁ ଚେଷ୍ଟା କରିବା ଫଳରେ ପୁରୀ ତ୍ରିମୂର୍ତ୍ତିର ପରିକଳ୍ପନା ସମ୍ଭବ ହୋଇଅଛି । ୫୮

ତିନୋଟି ମୂର୍ତ୍ତି ଏକତ୍ର ସ୍ଥାପନ କରିବାର ପରିକଳ୍ପନା ଭାଗବତ ଧର୍ମ ବା ବୌଦ୍ଧଧର୍ମରୁ ଆସିଥାଇ ପାରେ, ମାତ୍ର ଓଡ଼ିଶାରେ ବିଭିନ୍ନ ଧର୍ମର ପ୍ରଚଳନ ଓ ପୁରୁଷୋତ୍ତମ କ୍ଷେତ୍ରରେ ତାହାର ସମନ୍ୱୟ ପ୍ରଚେଷ୍ଟାରୁ ହିଁ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କର ସୃଷ୍ଟି ଏଥିରେ ସନ୍ଦେହ ନାହିଁ । ଓଡ଼ିଶାରେ ବୌଦ୍ଧ, ବୈଷ୍ଣବ, ଶୈବ ଓ ଶାକ୍ତ ଧର୍ମର ସହାବସ୍ଥାନ ଓ ମୈତ୍ରୀ ଏପରି ତ୍ରିମୂର୍ତ୍ତି ପରିକଳ୍ପନା ପାଇଁ ପ୍ରେରଣା ଯୋଗାଇ ଥିଲା । ଜଗନ୍ନାଥଙ୍କ ମଧ୍ୟରେ ବିଷ୍ଣୁତ୍ୱ ଆରୋପଣ ସହଜ, କାରଣ ବିଷ୍ଣୁଙ୍କର ଏକ ବିଶେଷଣ ହେଉଛି 'ଜଗନ୍ନାଥ' । ରାମାୟଣ, ମହାଭାରତ ଓ ବିଷ୍ଣୁ ସମ୍ପର୍କିତ ବିଭିନ୍ନ ପୁରାଣରେ 'ଜଗନ୍ନାଥ' ଶବ୍ଦ ବିଷ୍ଣୁଙ୍କ ପାଇଁ ବ୍ୟବହୃତ ହୋଇଛି । ଏହି ନାମଟି ବୁଦ୍ଧଙ୍କ ପାଇଁ ମଧ୍ୟ ପ୍ରଯୁଜ୍ୟ । ଇନ୍ଦ୍ରଭୂତି 'ଜ୍ଞାନସିଦ୍ଧି' ଗ୍ରନ୍ଥରେ ବହୁ ସ୍ଥାନରେ ବୁଦ୍ଧଙ୍କ ପାଇଁ 'ଜଗନ୍ନାଥ' ଶବ୍ଦର ପ୍ରୟୋଗ କରିଛନ୍ତି । ତେଣୁ ବୁଦ୍ଧ ବିଷ୍ଣୁଙ୍କର ନବମ ଅବତାର ଭାବରେ ଗୃହୀତ ହୋଇଛନ୍ତି । ପରେ ଶୈବମାନେ ଜଗନ୍ନାଥଙ୍କୁ ଭୈରବ ଭାବରେ ଗ୍ରହଣ କରି ନେଇଛନ୍ତି । 'ବଳଭଦ୍ର' ବୌଦ୍ଧଧର୍ମର 'ସୁଭଦ୍ର', 'ବଜ୍ରପ୍ରଭ' ପ୍ରଭୃତିଙ୍କ ଦ୍ୱାରା ସମ୍ଭୂତ । ବଳରାମ, ବଳଦେବ ଓ ବଳଭଦ୍ର, ନାମ ମଧ୍ୟରେ ସାମ୍ୟ ଥିବାରୁ ବୈଷ୍ଣବମାନେ ମଧ୍ୟ ତାଙ୍କୁ ଗ୍ରହଣ କରି ନେଇଛନ୍ତି । ବଳଦେବ ଓ ବଳଭଦ୍ର ଅନନ୍ତ ନାଗଙ୍କର ଅବତାର ରୂପେ ପରିକଳ୍ପିତ ହେବାରୁ ଓଡ଼ିଶାର ନାଗପୂଜକମାନେ ମଧ୍ୟ ତାଙ୍କୁ ସମ୍ମାନ ଦେଲେ । ସର୍ପ ମସ୍ତକରେ ସମ୍ପାଧାନ କରିଥିବାରୁ ଶିବ ଭାବରେ କଳ୍ପିତ ହୋଇ ଶୈବମାନଙ୍କ ଦ୍ୱାରା ପୂଜିତ ହେଲେ । 'ସୁଭଦ୍ରା' ବୌଦ୍ଧଧର୍ମର 'ସୁଭଦ୍ରା' ସହିତ ସଂପୃକ୍ତ । ତେଣୁ ବୌଦ୍ଧମାନଙ୍କ ଦ୍ୱାରା ଗୃହୀତ ହେଲେ । ଦୁର୍ଗାଙ୍କର ନାମ ଭଦ୍ରା ଓ ସୁଭଦ୍ରା ଥିବାରୁ ଶାକ୍ତ ଓ ଶୈବମାନେ ମଧ୍ୟ ତାଙ୍କୁ ଗ୍ରହଣ କରିନେଲେ । କୃଷ୍ଣଙ୍କର ଭଗିନୀଙ୍କ ନାମ 'ସୁଭଦ୍ରା' ଥିବାରୁ ବୈଷ୍ଣବମାନେ ମଧ୍ୟ ସୁଭଦ୍ରାଙ୍କୁ ସମ୍ମାନ ଦେଖାଇଲେ । ଅଧିକନ୍ତୁ ଓଡ଼ିଶାର

ସୌରମାନଙ୍କ ସନ୍ତୁଷ୍ଟି ପାଇଁ ସୂର୍ଯ୍ୟଙ୍କର ପ୍ରତୀକ 'ସୁଦର୍ଶନ' ଏହି ତ୍ରିମୂର୍ତ୍ତିଙ୍କରେ ସ୍ଥାନ ପାଇଥିଲେ । ଗାଣପତ୍ୟମାନଙ୍କର ସନ୍ତୁଷ୍ଟି ପାଇଁ ସ୍ନାନ ମଣ୍ଡପରେ ତ୍ରିମୂର୍ତ୍ତି ଗଣେଶଙ୍କ 'ହସ୍ତୀଶିର' ଧାରଣ କରି ହସ୍ତୀବେଶ ହେଲେ । ବୌଦ୍ଧଧର୍ମର ତ୍ରିରତ୍ନ ସହିତ ମେଳ ରହିବାରୁ ଏ ତିନିଦେବତା ବୌଦ୍ଧଙ୍କର ଉପାସ୍ୟ ହେଲେ, ଧର୍ମଚକ୍ର ସହିତ ସୁଦର୍ଶନଙ୍କର ମେଳ ଥିବାରୁ ସୁଦର୍ଶନ ମଧ୍ୟ ବୌଦ୍ଧଙ୍କର ଗ୍ରହଣୀୟ ହେଲେ ।

ମୁଖ୍ୟତଃ ପୁରୁଷୋତ୍ତମ କ୍ଷେତ୍ରରେ ବୌଦ୍ଧ, ବୈଷ୍ଣବ, ଶୈବ ଏବଂ ଶାକ୍ତମାନଙ୍କର ପ୍ରଭାବ ଥିବାରୁ ସେମାନଙ୍କର ଧର୍ମତତ୍ତ୍ୱର ସମନ୍ୱୟ ଘଟାଇ ତ୍ରିମୂର୍ତ୍ତି ଉପାସନାର କଳ୍ପନା କରାଯାଇଥିଲା । ଜଗନ୍ନାଥ ମୁଖ୍ୟତଃ ବୌଦ୍ଧ ଓ ବୈଷ୍ଣବ ଧର୍ମର, ବଳଭଦ୍ର ମୁଖ୍ୟତଃ ଶୈବ ଧର୍ମର ଓ ସୁଭଦ୍ରା ମୁଖ୍ୟତଃ ଶାକ୍ତ ଧର୍ମର ଦେବଦେବୀ ଭାବରେ ପ୍ରଥମେ ଶ୍ରୀମନ୍ଦିରରେ ସ୍ଥାନ ପାଇଥିଲେ ।

—o—

## ସଙ୍କେତ ସୂଚୀ

(୧) (କ) ଜ୍ଞାନସିଦ୍ଧି, ୧ମ ସର୍ଗ, ୧ମ ଶ୍ଳୋକ—ଇନ୍ଦ୍ରଭୂତି

(ଖ) ଦ:ପୂ: ବଙ୍ଗଳାର ସମତଟର ରାଜା ଶ୍ରୀଧାରଣଙ୍କ ୭ମ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧର କୈଲନ ତାମ୍ରଲେଖ (I.H.Q, Vol XXIII, pp. 221-241

(ଗ) ବାର୍ହସ୍ପତ୍ୟସୂତ୍ରମ୍ ୩/୧୧୯-୧୨୮, ପୃ ୨୨ (ସପ୍ତମ ଶତାବ୍ଦୀର ଗ୍ରନ୍ଥ)

(ଘ) ମଧ୍ୟପ୍ରଦେଶର ସତ୍ନା ଜିଲ୍ଲାର ମୈହାର୍ ଗ୍ରାମରୁ ପ୍ରାପ୍ତ ୧୦ମ ଶତାବ୍ଦୀର ତାମ୍ରଲେଖ ( E. I. Vol XXXV, pp. 177-175)

(ଙ) ଅନର୍ଘ ରାଘବ–ମୁରାରି ମିଶ୍ର (୧୦ମ ଶତାବ୍ଦୀ), (ଚ) ରୁଦ୍ରଯାମଳ (୧୦ମ ଶତାବ୍ଦୀ)

(ଛ) ପ୍ରବୋଧ ଚନ୍ଦ୍ରୋଦୟ – କୃଷ୍ଣ ମିଶ୍ର ( ୧୧ଶ ଶତାବ୍ଦୀ ), (ଜ) ତନ୍ତ୍ରଯାମଳ (୧୧ଶ ଶତାବ୍ଦୀ)

(ଝ) କାଳିକା ପୁରାଣ (୧୧ଶ ଶତାବ୍ଦୀ), (ଞ) ଗୋପାଳ ଦେବଙ୍କ ବୋଉମଦେଓ ମନ୍ଦିର ଅଭିଲେଖ, ୧୦୫୮ ଖ୍ରୀ (O.H.R.J. Vol III No 1, p. 15)

(ଟ) କାଳାହାଣ୍ଡି ଦାନପତ୍ର (୧୦୩୧ ଖ୍ରୀ :)

(ଠ) ନାଗପୁର ଅଭିଲେଖ, ୧୧୦୪ ଖ୍ରୀ: (E.I. IIp.180)

(ଡ) ଗୋବିନ୍ଦପୁର ଅଭିଲେଖ, ୧୧୩୭ ଖ୍ରୀ: (E.I. II, p. 330)

(ଢ) Dasgoba plates of Rajaraja, III,(1170 A.D-1193 A.D)

(୨) (କ) O.H.R.J., Vol XVII, pp. 211-212

(ଖ) J.A.S.B., LXV, 1896, Part I, p. 229

(୩) E.I. Vol. 38, (୪) E.I. Vol. 31

(୫) ସ୍କନ୍ଦପୁରାଣ, ଉତ୍କଳଖଣ୍ଡ. ୧୯/୧୭, (୬) ତତ୍ରୈବ, ୧୯/୧୨-୧୫

(୭) Inscription of Chodagangadeva, V. 28 of the Prasasti (J.A.S.B. Vol LXV, 1896, part I, p. 229)

(୮) Evolution of the Puri Triad (Utkal University Silver Jubilee Souvenir, 1969,

(୯) E.I. Vol. 30, (୧୦) O.H.R.J. Vol III.

(୧୧) ଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ତତ୍ତ୍ୱ, ପୃ ୨୨–୨୮– ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ।

(୧୨) The cult of Jagannath. p. 13-Dr K. C. Mishra

(୧୩) O.H.R.J. Vol V, p. 63, (୧୪) E.I., Vol XXIX, p. 127

(୧୫) The cult of Jagannath, pp. 14-15-Dr K. C. Mishra.

(୧୬) ପଶ୍ଚିମ ଓଡ଼ିଶାର ଲୋକଗୀତ ଓ ସୁଭଦ୍ରା (ପୌରୁଷ, ଜୁଲାଇ, ୧୯୮୦, ପୃ ୭)–ପ୍ରହ୍ଲାଦ ପ୍ରଧାନ । (୧୭) ତତ୍ରୈବ, ପୃ ୮, (୧୮) ଓଡ଼ିଶା ଇତିହାସ, ୨ୟ ଖଣ୍ଡ, ଦ୍ୱିତୀୟ ସଂସ୍କରଣ, ପୃ ୫୮୦-୫୮୪, ଡଃ ହରେକୃଷ୍ଣ ମହତାବ (୧୯) Yogabali (Gackward Orient Series--Edited by Abhayakara Gupta.

(୨୦) ବୌଦ୍ଧ ପରମ୍ପରାରେ ସୁଭଦ୍ରା (ପୌରୁଷ, ଜୁଲାଇ, ୧୯୮୧, ପୃ ୬-୧୦) –ପ୍ରହ୍ଲାଦ ପ୍ରଧାନ ।

(୨୧) ବୃହତ୍ ସଂହିତା, ଅଧ୍ୟାୟ ୫୮/ଶ୍ଳୋକ ୩୬-୩୭

(୨୨) The History of Medieval Vaishnavism in Orissa p. 7--P. Mukherjee. (୨୩) Ibid.

(୨୪) Development of Hindu Iconography, p 503 Dr J.N. Banerjee

(୨୫) Evolution of the Puri Triad (Utkal University Silver Jubilee Souvenir, 1969, p. 53)- P. Mukherjee

(୨୭) J.R.A.S.B, 1950, PLXII, (୨୭) Evolution of the Puri Traid (Utkal University Silver Jubilee Souvenir, 1969, p 53)-P. Mukherjee

(୨୮) ସାରଳା ମହାଭାରତ ବନପର୍ବ, (୨୯) ତତ୍ରୈବ ଆଦ ପର୍ବ, ପୃ ୨୦୫୬ (୩୦) ତତ୍ରୈବ ବିରଟ ପର୍ବ, (୩୧) ପ୍ରେମଭକ୍ତି ବ୍ରହ୍ମଗୀତା ଯଶୋବନ୍ତ ଦାସ ।

(୩୨) ମନ୍ମଥ ଚନ୍ଦ୍ରିକା–ଅଚ୍ୟୁତାନନ୍ଦ ଦାସ । (୩୩) ବିଷ୍ଣୁକେଶରୀ ପୁରାଣ, ପୃ ୪୩ (୩୪) ମାର୍କଣ୍ଡେୟ ପୁରାଣ, (୩୫) ସୁଭଦ୍ରା : ଏକ ତାତ୍ତ୍ୱିକ ଆଲୋଚନା (ଉତ୍କଳ ପ୍ରସଙ୍ଗ, ରଥଯାତ୍ରା ବିଶେଷାଙ୍କ, ୧୯୮୧, ପୃ ୬୪)– ଉପେନ୍ଦ୍ର ନାଥ ହୋତା (୩୬) (କ) ତତ୍ରୈବ, (ଖ) ଶ୍ରୀ ସୁଭଦ୍ରା ଓ ଚତୁର୍ଦ୍ଧାମୂର୍ତ୍ତି ରହସ୍ୟ (କୋଣାର୍କ, ଜଗନ୍ନାଥ ସାହିତ୍ୟ ଓ ସଂସ୍କୃତି ବିଶେଷାଙ୍କ, ଓଡ଼ିଶା ସାହିତ୍ୟ ଏକାଡ଼େମୀ, ୧୯୯୭ ପୃ ୬୮–୬୯)= ଡ଼ଃ ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ)

(୩୭) ଶ୍ରୀ ସୁଭଦ୍ରା ଓ ଚତୁର୍ଦ୍ଧାମୂର୍ତ୍ତି ରହସ୍ୟ, ପୃ ୬୯–ଡ଼ଃ ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ)

୩୮ ଓଧା ରସାମୃତ ଗୀତା, ପୃ ୫୨-୫୩–ଶିବଦାସ (୩୯) ଘଟସମୁଦ୍ର, ପଦ ୧୪୮-୧୪୯ (୪୦) ମନ୍ମଥ ଚନ୍ଦ୍ରିକା–ଅଚ୍ୟୁତାନନ୍ଦ ଦାସ ।

(୪୧) ସ୍କନ୍ଦ ପୁରାଣ, ଉତ୍କଳ ଖଣ୍ଡ ୧୯/୨୧-୧୫, (୪୨) ତନ୍ତ୍ର ଅବଧାରରେ ଶ୍ରୀଜଗନ୍ନାଥ ('ଶ୍ରୀ ଜଗନ୍ନାଥ' ପତ୍ରିକା, ଜୁନ୍, ୧୯୮୧, ପୃ ୮୬)–ଗଣେଶ ପ୍ରସାଦ ପରିଡ଼ା ।

(୪୩) ନୀଳାଦ୍ରି ମହୋଦୟ । (୪୪) କାଳିକା ପୁରାଣ ଅଧ୍ୟାୟ ୬୪, (୪୫) ତନ୍ତ୍ରପୀଠ ଉଡ୍ରୀୟାନ ଓ ଦେବୀ ବିମଳା (ଝଙ୍କାର, ୧୯୮୦ ଅକ୍ଟୋବର, ପୃ ୬୩)–ରଘୁନାଥ ପାତ୍ର । (୪୬) ତତ୍ରୈବ, (୪୭) ଯୋଗମାୟା ସୁଭଦ୍ରା ଓ ଆଗମ ରହସ୍ୟ (ମାତୃଭୂମି, ପୂଜା ବିଶେଷାଙ୍କ, ୧୯୬୦)–ସଦାଶିବ ରଥ ଶର୍ମା । (୪୮) ତନ୍ତ୍ରଦେବତା ଜଗନ୍ନାଥ (ଉତ୍କଳ ପ୍ରସଙ୍ଗ, ରଥଯାତ୍ରା ବିଶେଷାଙ୍କ, ୧୯୭୦ ଜୁଲାଇ, ପୃ ୪୭)–ଗଣେଶ ପ୍ରସାଦ ପରିଡ଼ା ।

(୪୯) ଓଡ଼ିଶାରେ ବୌଦ୍ଧଧର୍ମ, ପୃ ୪୯–ଡଃ ବଂଶୀଧର ମହାନ୍ତି, (୫୦) ଉତ୍କଳ ତୀର୍ଥ ପରିଚିତି (ବଙ୍ଗଳା ଗ୍ରନ୍ଥ 'ଉତ୍କଳ ତୀର୍ଥେ', ପୃ ୧୫–ସ୍ୱାମୀ ସିଦ୍ଧାନନ୍ଦ)–ପ୍ରଫୁଲ୍ଲଚନ୍ଦ୍ର ଭଞ୍ଜଦେଓ । (୫୧) ତତ୍ରୈବ । (୫୨) ଜଗନ୍ନାଥ ଚରିତାମୃତ, ପୃ ୧୯୭–ଦିବାକର ଦାସ । (୫୩) ଗାୟତ୍ରୀ କଳ୍ପ । (୫୪) ଶିବ ସଂହିତା, ୨/୧୫ ପାର୍ବତୀ ଖଣ୍ଡ ।

(୫୫) (କ) ଭଗିନୀ ସ୍ତ୍ରୀ ପ୍ରବର୍ତ୍ତିକା–ମା ସୁଭଦ୍ରା (ଉତ୍କଳ ପ୍ରସଙ୍ଗ, ୧୯୭୭ ଜୁନ୍, ପୃ ୩୦ ୩୧–ସଦାଶିବ ରଥ ଶର୍ମା, (ଖ) ସୁଭଦ୍ରା : ଏକ ତାତ୍ତ୍ୱିକ ଆଲୋଚନା (ଉତ୍କଳ ପ୍ରସଙ୍ଗ, ରଥଯାତ୍ରା ବିଶେଷାଙ୍କ, ୧୯୮୧)–

ଉପେନ୍ଦ୍ରନାଥ ହୋତା (୫୬) ସ୍କନ୍ଦପୁରାଣ, ଉତ୍କଳ ଖଣ୍ଡ, ୨୭/୫୭·୫୮ ।
(୫୭) ଘଧାରସାମୃତ ଗୀତା, ପୃ. ୫୧—ଶିବ ଦାସ ।

(୫୮) Evolution of the Puri Triad (Utkal University Silver Jubilee Souvenir, 1969, p 52 ) P. Mukherjee.

–o–

# ବଳଭଦ୍ର - ତତ୍ତ୍ୱ

ଅଧୁନା ଜଗନ୍ନାଥ ବଡ଼ ଠାକୁର ଭାବରେ ଅଭିହିତ ହେଉଥିଲେ ହେଁ, ଅନୁମିତ ହୁଏ ଏକଦା ଜଗନ୍ନାଥଙ୍କ ବଡ଼ ଭାଇ ଭାବରେ ସମ୍ମାନିତ ବଳଭଦ୍ର ବଡ ଠାକୁର ଭାବରେ ଅଭିହିତ ହୋଇଥିଲେ । ରଥଯାତ୍ରାରେ ତାଂକରି ରଥ ହିଁ ସର୍ବପ୍ରଥମେ ଅଗ୍ରସର ହୁଏ । ପ୍ରାଚୀନକାଳରୁ ସୁଭଦ୍ରା ବଳଭଦ୍ରଂକର ଚନ୍ଦ୍ରୀ ଭାବରେ ପରିକଳ୍ପିତ ହୋଇଛନ୍ତି । ସୁଭଦ୍ରା ଦୁର୍ଗା ଭାବରେ ଓ ବଳଭଦ୍ର ଶିବ ଭାବରେ ପରିଚିତ ହୋଇ ଆସୁଥିବାର ଐତିହାସିକ ପ୍ରମାଣ ମଧ୍ୟ ରହିଛି । ଜଗନ୍ନାଥ ବୈଷ୍ଣବାୟିତ ହେବାପରେ ଓ କୃଷ୍ଣ ରୂପେ ପରିକଳ୍ପିତ ହେବାପରେ କୃଷ୍ଣଂକ ପ୍ରାଧାନ୍ୟ ଅନୁଯାୟୀ ଜଗନ୍ନାଥ ବଳଭଦ୍ରଂକ ଠାରୁ ଅଧିକ ପ୍ରାଧାନ୍ୟ ଲାଭ କଲେ ଓ ବଡ଼ ଠାକୁର ଭାବରେ ପରିଗଣିତ ହେଲେ । ଜଗନ୍ନାଥ ଓ ସୁଭଦ୍ରାଂକ ପରି ବଳଭଦ୍ରଂକ ତତ୍ତ୍ୱ ଏବେ ବି ରହସ୍ୟାଚ୍ଛନ୍ନ ହୋଇ ରହିଛି । ବିଭିନ୍ନ କାଳରେ ବିଭିନ୍ନ ସମ୍ପ୍ରଦାୟ ମାଧ୍ୟମରେ ବଳଭଦ୍ର ବିଭିନ୍ନ ରୂପରେ ଆମ ଆଗରେ ଅବତୀର୍ଣ୍ଣ ହୋଇଛନ୍ତି ।

## ଆଦିବାସୀ ଚେତନାରେ ବଳଭଦ୍ର

ଓଡ଼ିଶାର ଆଦିବାସୀ କନ୍ଧମାନଂକ ମଧ୍ୟରେ ଜାକେରି ପେନୁ, ତାନାପେନୁ ଓ ମୂରବିପେନୁ ଏହି ତିନି ଦେବତାଂକ ପୂଜା ପ୍ରଚଳିତ ଅଛି । ଏମାନଂକ ମଧ୍ୟରେ ଜାକେରିପେନୁ ବଡଭାଇ ଓ ମୂରବିପେନୁ ସାନ ଭାଇ । ତାନାପେନୁ

ବଡ଼ଘର ଢାକେରିପେନ୍‌ଙ୍କ ପତ୍ନୀ । ତାନାପେନ୍ ହେଉଛନ୍ତି ଧରିତ୍ରୀ । ତେଣୁ, ଢାକେରିପେନ୍ ଧରଣୀର ଅଧୀଶ୍ୱର ଭାବରେ ପରିକଳ୍ପିତ । କାହାରି କାହାରି ମତରେ ମୂରବିପେନ୍ ଢାକେରିପେନ୍‌ଙ୍କ ଶାଳକ । ସେ ଯାହାହେଉ କନ୍ଧମାନଙ୍କ ମଧ୍ୟରେ ଢାକେରିପେନ୍‌ଙ୍କ ପ୍ରାଧାନ୍ୟ ସ୍ୱୀକୃତ ।

ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କ ମତରେ "କାଳକ୍ରମେ ଏହି ଢାକେରିପେନ୍, ତାନାପେନ୍ ଓ ମୂରବିପେନ୍ ହୁଏତ ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥ ରୂପରେ ପୂଜା ପାଇଥିବେ । × × ସୁଭଦ୍ରାଙ୍କୁ ଭୈରବୀ ରୂପରେ ଲୋକେ ବରାବର କଳ୍ପନା କରି ଆସିଛନ୍ତି । × × × ବଳଭଦ୍ର ଭୈରବ ଏହି ଧାରଣା ମଧ୍ୟ ଅଛି । ଅତଏବ କନ୍ଧମାନଙ୍କ ଦେବତା ଢାକେରିପେନ୍, ତାନାପେନ୍, ମୂରବିପେନ୍— ବଳଭଦ୍ର, ସୁଭଦ୍ରା, ଜଗନ୍ନାଥ ଏହି ତ୍ରିମୂର୍ତ୍ତିରେ ରୂପାନ୍ତରିତ ହୋଇଛନ୍ତି ବୋଲି ଭାବିବା ମଧ୍ୟ ଅସଙ୍ଗତ ହେବ ନାହିଁ । (୧)

ପଶ୍ଚିମ ଓଡ଼ିଶାର ଅଧିବାସୀ ବିଶେଷତଃ ଆଦିବାସୀମାନଙ୍କ ମଧ୍ୟରେ ଏବେ ବି ବଳଭଦ୍ର ଭୈରବ ଓ ସୁଭଦ୍ରା ଭୈରବୀ ବା ଭବାନୀ ଭାବରେ ପରିକଳ୍ପିତ । ଡାଇଖାଇ ଗୀତରେ ଗୁଣ୍ଡିଚା ଯାତ୍ରା ବର୍ଣ୍ଣନା ପ୍ରସଙ୍ଗରେ ରହିଛି—

ଆଷାଢ଼ ମାସରେ ଗୁନ୍‌ଚା ରଥ
ରଥେ ବିଜେ କଲେ ଜଗତ ନାଥ ।
ଆଗେ ବଳଭଦ୍ର ପଛେ ଭବାନୀ
ପଛେ କୁଦାଇଲେ ଦୁତି ଲେ ଶାରଙ୍ଗପାନି ।
ଡାଇଖାଇରେ ।

ପ୍ରଫେସର ପ୍ରହ୍ଲାଦ ପ୍ରଧାନଙ୍କ ମତରେ ବଳଭଦ୍ର ରୁଦ୍ର ହେଲେ ସୁଭଦ୍ରା ଭବାନୀ ହେବା ଅତି ସ୍ୱାଭାବିକ । (୨)

ଇତିହାସରୁ ଜଣାଯାଏ, ଉତ୍ତର ଭାରତରେ ବାସ କରୁଥିବା ଶବରମାନେ ସପ୍ତମ ଶତାବ୍ଦୀ ପୂର୍ବରୁ ପୁରଦେବ ଓ ମୁରୁଗାନ୍ ନାମକ ଦୁଇଟି ଦେବତାଙ୍କର ପୂଜା କରୁଥିଲେ । ଏହି ପୁରଦେବ 'ପୁରୁଷଦେବ'ଙ୍କର ଓ ମୁରୁଗାନ୍ 'ଶେଷଦେବ' (ଅନନ୍ତନାଗ ଙ୍କର ରୂପାନ୍ତର ମାତ୍ର । ସମ୍ଭବତଃ ପୁରଦେବ ବା ପୁରୁଦେବ କାଳକ୍ରମେ ପୁରୁଷୋତ୍ତମ (ଜଗନ୍ନାଥ) ଓ ମୁରୁଗାନ୍ ବା ଶେଷଦେବ (ନାଗଦେବତା) ବଳଭଦ୍ରରେ ପରିଣତ ହୋଇଛନ୍ତି । (୩)

ଲୋକବିଗ୍ରହଙ୍କର କଣାସତାମ୍ରଲେଖ (୪) ଓ ଭାନୁବର୍ଦ୍ଧନଙ୍କର ଓଲସିଂ ତାମ୍ରଲେଖ (୫)ରୁ ଜଣାଯାଏ, ୬ଷ୍ଠ-୭ମ ଶତାବ୍ଦୀବେଳକୁ ଓଡ଼ିଶାର କେନ୍ଦ୍ର ଓ ପୂର୍ବାଞ୍ଚଳରେ (ତୋଷାଳୀରେ) ମଣିନାଗେଶ୍ୱର ନାମକ ଦେବତା ଇଷ୍ଟଦେବତା ଭାବରେ ପୂଜା ପାଉଥିଲେ । ସମ୍ଭବତଃ ରଣପୁରର ମୈନାକ (ମଣିନାଗ) ପର୍ବତରେ ସେ ପ୍ରତିଷ୍ଠିତ ହୋଇଥିଲେ । (୬) ନାଗପୂଜା ପ୍ରଥମେ ଶବରମାନଙ୍କ ମଧ୍ୟରେ ପ୍ରଚଳିତ ଥିଲା । ଡକ୍ଟର କାହ୍ନୁଚରଣ ମିଶ୍ରଙ୍କ ମତରେ ତୋଷାଳୀର ମଣିନାଗ ପର୍ବତରେ ପୂଜିତ ନାଗଦେବତା ପରବର୍ତ୍ତୀ କାଳରେ ବଳଦେବ ବା ବଳଭଦ୍ର ରୂପରେ ଜଗନ୍ନାଥ ଓ ସୁଭଦ୍ରା (ସ୍ତମ୍ଭେଶ୍ୱରୀ)ଙ୍କ ସହିତ ପୂଜା ପାଇଲେ । (୭)

ନାଗପୂଜା ସମଗ୍ର ଭାରତ ବର୍ଷରେ ଆଦର ଲାଭ କରିଥିଲା ଓ ସମ୍ଭବତଃ ନାଗଦେବତା ଅନନ୍ତ ନାଗଙ୍କର ଅବତାର ଭାବରେ ସମ୍ମାନ ଲାଭ କରିଥିଲେ ଏବଂ କୃଷ୍ଣଙ୍କର ବଡ ଭାଇ ଭାବରେ ପୂଜା ପାଉଥିଲେ । ଶୁଭଙ୍କର 'ମଙ୍କର ନେଉଳପୁର ଦାନପଟାରୁ ଜଣାଯାଏ ଯେ ସେହି ସମୟରେ ବଳିଦେବ ଥିଲେ ଅନ୍ୟତମ ଲୋକପ୍ରିୟ ଦେବତା । (୮) ଏହି ଦାନପଟର ସମୟ ୮ମ ଶତାବ୍ଦୀ (୯) ଏଥିରୁ ଅନୁମିତ ହୁଏ, ୮ମ ଶତାବ୍ଦୀ ପୂର୍ବରୁ ଓଡ଼ିଶାରେ ବଳଦେବ ବା ବଳଭଦ୍ର ପୂଜା ଲୋକପ୍ରିୟତା ଅର୍ଜନ କରି ସାରିଥିଲା । ଏହି ଦାନପଟାରେ ଦାତାମାନଙ୍କର ଦୀର୍ଘ ତାଲିକାରେ ପୁରୁଷୋତ୍ତମ ନାମଧାରୀ ୪ ଜଣ, ବଳଭଦ୍ର ନାମଧାରୀ ୩ ଜଣ, ହଳଧର ନାମଧାରୀ ଜଣେ ପୁରୁଷ ଅଛନ୍ତି । ଏଥିରୁ ଅନୁମେତ ହୁଏ, ୮ମଶତାବ୍ଦୀ

ବେଳକୁ ବଳଭଦ୍ର ଓ ହଳଧର (ବଳଦେବ ବା ବଳଭଦ୍ରଙ୍କର ନାମାନ୍ତର) ସ୍ଥାନୀୟ ଦେବତା ଭାବରେ ମଧ୍ୟ ଲୋକପ୍ରିୟ ହୋଇ ସାରିଥିଲେ । (୧୦) ବଳଭଦ୍ରଙ୍କର ମୂଳ ରୂପ ନାଗଦେବତା ମୂଳତଃ ଆଦିବାସୀମାନଙ୍କର ଦେବତା ।

## ବୌଦ୍ଧ ସଂସ୍କୃତିରେ ବଳଭଦ୍ର-ତତ୍ତ୍ୱ

ବର୍ତ୍ତମାନ ଜଗନ୍ନାଥ ବୈଷ୍ଣବ ଦେବତା ଭାବରେ ପୂଜିତ ହେଉଥିଲେ ହେଁ ତାହାଙ୍କୁ ବୌଦ୍ଧ, ଶୈବ ଓ ତାନ୍ତ୍ରିକ ଶାକ୍ତଧର୍ମ ସହିତ ସମ୍ପୃକ୍ତ କରାଯାଇ ଥାଏ । ଜଗନ୍ନାଥ ବୁଦ୍ଧ ରୂପରେ ପରିକଳ୍ପିତ ହୋଇ ଆସିଅଛନ୍ତି । ଜଗନ୍ନାଥ-ବଳଭଦ୍ର-ସୁଭଦ୍ରାଙ୍କୁ ବୌଦ୍ଧ ତ୍ରିରତ୍ନ ଭାବରେ ମଧ୍ୟ କଳ୍ପନା କରାଯାଇ ଅଛି । ଜଗନ୍ନାଥ ହେଉଛନ୍ତି ବୁଦ୍ଧ, ବଳଭଦ୍ର ସଂଘ ଓ ସୁଭଦ୍ରା ଧର୍ମ । ବରାହମିହିର ବୃହତ୍ ସଂହିତାରେ ତ୍ରିରତ୍ନକୁ ବଳଦେବ-ଏକାନଂଶା-କୃଷ୍ଣ ରୂପେ ଗ୍ରହଣ କରିଛନ୍ତି । (୧୧) ଏହି ମତକୁ ଖଣ୍ଡନ କରିବାକୁ ଯାଇ ଡକ୍ଟର ହରେକୃଷ୍ଣ ମହତାବ ମତ ଦେଇଛନ୍ତି ବରାହମିହିର ବଳଦେବ, କୃଷ୍ଣ ଓ ଏକାନଂଶାଙ୍କର ମୂର୍ତ୍ତି ସମ୍ପର୍କରେ ଯେଉଁ ବର୍ଣ୍ଣନା ଦେଇଛନ୍ତି ତା ସହିତ ପୁରୁଷୋତ୍ତମ କ୍ଷେତ୍ରର ମୂର୍ତ୍ତିର କୌଣସି ସାମଞ୍ଜସ୍ୟ ନାହିଁ (୧୨) ବରଂ ବୌଦ୍ଧ ତ୍ରିରତ୍ନ ସହିତ ଜଗନ୍ନାଥ ବଳଭଦ୍ର-ସୁଭଦ୍ରାଙ୍କର ସମ୍ପର୍କ ଇତିହାସ ସମ୍ମତ । ଅଶୋକଙ୍କ ସମୟରେ ବୌଦ୍ଧଧର୍ମରେ ଦୀକ୍ଷିତ ହୋଇ ଶବରମାନେ ପୁରୀରେ ନିର୍ମିତ ବୌଦ୍ଧସ୍ତୂପକୁ ପୂଜା କରୁଥିଲେ । ଖ୍ରୀ:ପୂ: ୧ମ ଶତାବ୍ଦୀ ବା ଖ୍ରୀଷ୍ଟୀୟ ୧ମ ଶତାବ୍ଦୀରେ ଯେତେବେଳେ ମହାଯାନ ପନ୍ଥା ଓଡ଼ିଶାରେ ପ୍ରାଧାନ୍ୟ ଲାଭ କଲା, ଶବରମାନେ ବୌଦ୍ଧ ତ୍ରିରତ୍ନକୁ ପୂଜା କଲେ । କାଳକ୍ରମେ ବୁଦ୍ଧ, ସଂଘ, ଧର୍ମ ଏହି ତ୍ରିରତ୍ନକୁ ଆରୋପ କରାଯାଇ ଯଥାକ୍ରମେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ମୂର୍ତ୍ତିତ୍ରୟ ଗଠିତ ହେଲା । ୭ମ-୮ମ ଶତାବ୍ଦୀ ବେଳକୁ ବୁଦ୍ଧ ବିଷ୍ଣୁଙ୍କର ଅବତାର ରୂପେ ଗୃହୀତ ହେବାରୁ ତାଙ୍କ ସହିତ ଅନ୍ୟ ଦୁଇ ମୂର୍ତ୍ତିଙ୍କ ସ୍ଥିତିର ସଂଗତି ପ୍ରତିପାଦନ ପାଇଁ ଭାଇ-ଭଉଣୀ ବଳଦେବ-ସୁଭଦ୍ରାଙ୍କ ଆଶ୍ରୟ ନିଆଗଲା । (୧୩)

ତନ୍ତ୍ର ପ୍ରଭାବିତ ବୌଦ୍ଧ ଧର୍ମରେ ବିଭିନ୍ନ ମଣ୍ଡଳରେ କେତେକ ଶକ୍ତିଙ୍କ ସହିତ ତତ୍‌ସଂପୃକ୍ତ ପୁରୁଷ ଦେବତାଙ୍କ ନାମୋଲ୍ଲେଖ ରହିଛି । ଯଥା—

| ଶକ୍ତି | ପୁରୁଷ ଦେବତା |
|---|---|
| ଶ୍ୟାମାଦେବୀ | ସୁଭଦ୍ର |
| ସୁଭଦ୍ରା | ବଜ୍ରପ୍ରଭ |
| ହୟକର୍ଣ୍ଣା | ମହାଭୈରବ |
| ଖଗାନନା | ବିରୂପାକ୍ଷ |
| ମହାଭୈରବା | ବଜ୍ରଭୈରବ |
| ବାୟୁବେଗା | ମହାବୀର |

'ସୁଭଦ୍ରା' ବଜ୍ରପ୍ରଭ ଦେବତାଙ୍କର ଶକ୍ତି ଭାବରେ ଗୃହୀତ ହୋଇଛନ୍ତି । 'ସୁଭଦ୍ର' ମଧ୍ୟ 'ସୁଭଦ୍ରା'ଙ୍କ ସହିତ ସଂପୃକ୍ତ ହୋଇ ପାରନ୍ତି । ବଳଭଦ୍ରଙ୍କୁ ଶିବଙ୍କ ଅବତାର ଭାବରେ ଗ୍ରହଣ କରଯାଉ ଥିବାରୁ ସୁଭଦ୍ର ବଜ୍ରପ୍ରଭ, ମହାଭୈରବ, ବିରୂପାକ୍ଷ, ବଜ୍ରଭୈରବ ଦେବତାମାନେ ବଳଭଦ୍ରଙ୍କ ସହିତ ସଂପୃକ୍ତ ହୋଇ ପାରନ୍ତି । ପ୍ରଫେସର ପ୍ରହ୍ଲାଦ ପ୍ରଧାନଙ୍କ ମତରେ "'ମହାଭୈରବ ଓ ବିରୂପାକ୍ଷ ହେଉଛି ଶିବଙ୍କ ନାମ । ଆଉ ଗୋଟିଏ ଦେବତାଙ୍କ ନାମ 'ସୁଭଦ୍ର' ଯାହାଙ୍କୁ 'ବଳଭଦ୍ର'ଙ୍କ ସହିତ ତୁଳନା କରଯାଇପାରେ (ଦୁଇଟିଯାକରେ ଭଦ୍ର ଶବ୍ଦ ଅଛି) ଏବଂ ସୁଭଦ୍ରା ଶ୍ୟାମାଦେବୀଙ୍କ ସହିତ ଆସୁଛନ୍ତି । ଏଣୁ ଏମାନଙ୍କ ଶିବ ଓ ଭବାନୀ (ଦୁର୍ଗା)ଙ୍କ ସହିତ କିଛି ସମ୍ବନ୍ଧ ଅଛି ବୋଲି ଅନୁମାନ କରଯାଇପାରେ ।" (୧୪)

## ବ୍ରାହ୍ମଣ୍ୟ ଧର୍ମରେ ବଳଭଦ୍ର

ଶ୍ରୀ ଜଗନ୍ନାଥଙ୍କୁ ବ୍ରାହ୍ମଣ୍ୟ ଧର୍ମର ଦେବତା ଭାବରେ ପ୍ରତିପାଦନ କରିବାକୁ ଯାଇ ଅନେକ ପଣ୍ଡିତ ତାହାଙ୍କୁ କୃଷ୍ଣ-ବାସୁଦେବଙ୍କ ସହିତ ସଂପୃକ୍ତ କଲାବେଳେ ବଳଭଦ୍ରଙ୍କୁ ସଂକର୍ଷଣଙ୍କ ସହିତ ଓ ସୁଭଦ୍ରାଙ୍କୁ ଏକାନଂଶାଙ୍କ ସହିତ ସଂପୃକ୍ତ

କରିଥାନ୍ତି । ଗଜପତାନାର ଘସୁଣ୍ଡି ଶିଳାଲେଖକୁ ଭିତ୍ତି କରି ଅନୁମାନ କରଯାଇ ପାରେ ଯେ ଉତ୍ତର-ପଶ୍ଚିମ ଭାରତରେ ଭଗବତ ଧର୍ମ ଖ୍ରୀ: ପୂ: ୨ୟ ଶତାବ୍ଦୀ ପୂର୍ବରୁ ପ୍ରଚଳିତ ଥିଲ ଓ ଏହି ଭଗବତ ଧର୍ମ ସଂକର୍ଷଣ, ବାସୁଦେବ ଦୁଇ ଦେବତାଙ୍କୁ କେନ୍ଦ୍ର କରି ଗଢି ଉଠିଥିଲ । (୧୫) ଖ୍ରୀ: ପୂ: ୧ମ ଶତାବ୍ଦୀର ନାଗରିକାର ନାନାଘାଟ ଗୁମ୍ଫା ଶିଳାଲେଖରେ ମଧ୍ୟ ଅନ୍ୟ ଦେବତାମାନଙ୍କ ସହିତ ସଂକର୍ଷଣ ଓ ବାସୁଦେବଙ୍କର ନାମୋଲ୍ଲେଖ ରହିଛି । (୧୬) ଦକ୍ଷିଣ ଭାରତରେ ମଧ୍ୟ ବାସୁଦେବ-ସଂକର୍ଷଣ-ଭିତ୍ତିକ ଭଗବତ ଧର୍ମ ଖ୍ରୀ: ପୂ: ୨ୟ ଶତାବ୍ଦୀଠାରୁ ଖ୍ରୀଷ୍ଟୀୟ ୨ୟ ଶତାବ୍ଦୀ ପର୍ଯ୍ୟନ୍ତ ପ୍ରସାର ଲଭ କରିଥିଲ । କ୍ରମଶଃ ଦକ୍ଷିଣ ପୂର୍ବ ଭାରତକୁ ଏହା ବିସ୍ତାରିତ ହୋଇଥିଲ । (୧୭) ବିଶେଷତଃ କିସ୍ତନା ଜିଲ୍ଲାରେ ଏହା ଯଥେଷ୍ଟ ଆଦର ଲଭ କରିଥିଲ । (୧୮) ଖ୍ରୀ. ପୂ. ୨ୟ ଶତାବ୍ଦୀଠାରୁ ୫ମ ଶତାବ୍ଦୀ ମଧ୍ୟରେ ଓଡ଼ିଶାରେ ମଧ୍ୟ ଭଗବତ ଧର୍ମ ପ୍ରସାର ଲଭ କରିଥିଲ । (୧୯) ନାସିକ ଗୁମ୍ଫା ଶିଳାଲେଖରେ ସଂକର୍ଷଣ ଓ ବାସୁଦେବ ଯଥାକ୍ରମେ ରାମ ଓ କେଶବ ଭାବରେ ପରିଚିତ ହୋଇଛନ୍ତି । (୨୦) ପଞ୍ଚମ ଶତାବ୍ଦୀରେ ରଚିତ ବରାହ ମିହିରଙ୍କ ବୃହତ୍‌ସଂହିତାରେ ବାସୁଦେବ, ସଂକର୍ଷଣ ଓ ଏକାନଂଶାଙ୍କର ବର୍ଣ୍ଣନା ରହିଛି । (୨୧) ଓଡ଼ିଶାରେ ସଂକର୍ଷଣ ଓ ବାସୁଦେବ ଯଥାକ୍ରମେ ବଳଭଦ୍ର ଓ ଜଗନ୍ନାଥ ଭାବରେ ପରିଚିତ ହୋଇଛନ୍ତି । (୨୨)

ତେଣୁ ବଳଭଦ୍ର ସଂକର୍ଷଣ ଭାବରେ କୃଷ୍ଣଙ୍କ ସଙ୍ଗରେ ଆସିଛନ୍ତି ବୋଲି ବହୁଣ୍ୟ ଧର୍ମ ପକ୍ଷର ପଣ୍ଡିତମାନେ ମତ ଦେଇଛନ୍ତି । ତେବେ ବୃହତ୍ ସଂହିତାରେ ବରାହ ମିହିର ସଂକର୍ଷଣଂକର ମୂର୍ତ୍ତି ସମ୍ପର୍କରେ ଯେଉଁ ବର୍ଣ୍ଣନା ଦେଇଛନ୍ତି ତାହା ବଳଭଦ୍ରଂକ ମୂର୍ତ୍ତି ସହିତ କୌଣସି ସାମଞ୍ଜସ୍ୟ ପ୍ରତିପାଦନ କରି ପାରୁ ନାହିଁ । ସଂକର୍ଷଣ-ବାସୁଦେବ (ବଳରାମ କୃଷ୍ଣ) ଉପାସନା ଦକ୍ଷିଣ ଭାରତ ଓ ପୂର୍ବ ଭାରତରେ ପ୍ରସାର ଲଭ କରିବା ପରେ ଯେତେବେଳେ ଜଗନ୍ନାଥଙ୍କୁ କୃଷ୍ଣ ବୋଲି ଧରି ନିଆଯାଇଛି, ସେତେବେଳେ ତାଂକ ସହିତ ଭାଇ ସମ୍ପର୍କରେ ସଂପୃକ୍ତ ମୂର୍ତ୍ତିଟିକୁ ଅର୍ଥାତ୍ ବଳଭଦ୍ରଙ୍କୁ ସଂକର୍ଷଣ ବା ବଳରାମ ବୋଲି ଧରି ନିଆଯାଇଛି । (୨୩)

# ଶିବ-ସ୍ୱରୂପ ବଳଭଦ୍ର

ଭାରତୀୟ ତଥା ଉତ୍କଳୀୟ ସଂସ୍କୃତି ଓ ସାହିତ୍ୟରୁ ବଳଭଦ୍ର ଓ ଶିବଙ୍କ ଅଭିନ୍ନତ୍ୱ ସଂପର୍କରେ ବହୁ ପ୍ରମାଣ ମିଳୁଅଛି । ଶିବ ଲିଙ୍ଗ ଭାବରେ ପୂଜିତ ହୋଇ ଥାନ୍ତି । 'ଲିଙ୍ଗ' ଶବ୍ଦ ସହିତ ଲାଙ୍ଗଳ, ଲାଙ୍ଗଳ, ଲାଗୁଡ଼, ଲକୁଳ, ଲାଙ୍ଗୁ, ଲାଙ୍ଗୁଳ, ଲାଙ୍ଗୂଳ ଆଦି ଶବ୍ଦର ସଂପର୍କ ରହିଛି । (୨୪) ଏହି ସବୁ ଶବ୍ଦର ମୂଳ ରୂପେ ଚ୍ଚିଲୁସ୍କି 'ଲକ' ଶବ୍ଦକୁ ଗ୍ରହଣ କରିଛନ୍ତି । (୨୫) ଶିବଙ୍କୁ ଲାଙ୍ଗଳ ସହିତ ସଂପୃକ୍ତ କରାଯାଇ ତାହାଙ୍କୁ ଲାଙ୍ଗଳେଶ୍ୱର, ଲାଙ୍ଗଳଧାରୀ, ଲାଙ୍ଗଳୀ ଆଦି ଆଖ୍ୟା ଦିଆ ଯାଇ ଅଛି । ଲିଙ୍ଗ ପୁରାଣରେ ଅଛି—

"ଆଦ୍ୟେ ଶ୍ୱେତଃ କଳୌ ରୁଦ୍ରଃ ସୁତାରେ ମଦନସ୍ତଥା
ସୁହୋତ୍ରଃ କଙ୍କଣଶ୍ଚୈବ ଲୋକାକ୍ଷିର୍ମନସରମଃ ।
ଜଟାମାଲ୍ୟୋଽଟ୍ଟହାସଶ୍ଚ ଦାରୁକୋ ଲାଙ୍ଗଳୀ ତଥା ।" (୨୬)

ବଳଭଦ୍ର (ବଳରାମ ସ୍ୱରୂପ)ଙ୍କୁ ମଧ୍ୟ ଲାଙ୍ଗଳୀ, ଲାଙ୍ଗଳଧାରୀ ଭାବରେ ଅଭିହିତ କରାଯାଇଅଛି । କଳି ଯୁଗରେ ଲାଙ୍ଗଳୀ ଶିବ ଲାଙ୍ଗଳୀ ବଳରାମ (ହଳାୟୁଧ ବଳରାମ) ରୂପେ ଅବତାର ନେବେ ବୋଲି ବାୟୁ ପୁରାଣରେ ଉଲ୍ଲେଖ ରହିଛି—

"ନାମ୍ନା ବୈ ଲାଙ୍ଗଳୀ ଭୀମୋ ଯତ୍ର ଦେବାଃ ସବା ସବାଃ
ଦ୍ରକ୍ଷନ୍ତି ମାଂ କଳୌ ତସ୍ମିନ୍ନବତୀର୍ଣ୍ଣଂ ହଳାୟୁଧମ୍ ।" (୨୭)

ଲିଙ୍ଗ ପୁରାଣରେ ବିଷ୍ଣୁ, ଶିବ ଓ ହଳାୟୁଧ (ବଳଭଦ୍ର)ଙ୍କ ମଧ୍ୟରେ ଅଭେଦ ସୂଚିତ ହୋଇଅଛି—"ବିଷ୍ଣୋର୍ଦ୍ଦେବଃ ଗୁରୋର୍ମଦ୍ଦେବ୍ୟଃ ସାକ୍ଷାଦ୍ ହଳାୟୁଧଃ ।" (୨୮)

ଶିବ ଲକୁଳ, ଲଗୁଡ଼ ଆଦି ଶବ୍ଦ ସହିତ ସଂପୃକ୍ତ । ଶିବଙ୍କୁ ଲକୁଳେଶ ଲଗୁଡ଼ଧାରୀ, ଲକୁଟଧାରୀ, ଲକୁଳୀଶ ଆଦି ବିଶେଷଣରେ ଆଖ୍ୟାତ କରାଯାଇ ଥାଏ । ଲକୁଳୀଶ ପାଶୁପତ ନାମକ ଶୈବ ସଂପ୍ରଦାୟର ଆଦିଗୁରୁ ହେଉଛନ୍ତି

ଲକୁଳୀଶ ଓ ସେ ଶିବଙ୍କ ଅବତାର ରୂପେ ପରିଚିତ । ଶିବ ପୁରାଣ ଓ ଲିଙ୍ଗ ପୁରାଣରେ ଆଦି ଗୁରୁ ଲକୁଳୀଶ୍ୱର (ଲକୁଳୀଶ, ନକୁଳୀଶ)ଙ୍କୁ ଶିବଙ୍କ ସହିତ ସଂପୃକ୍ତ କରାଯାଇଅଛି । (୨୯)

ବରୋଦାରେ ଲକୁଳୀଶ ଶିବଙ୍କର ଗୋଟିଏ ମନ୍ଦିର ଅଛି । ଭୁବନେଶ୍ୱର ରାଜାରାଣୀ ମନ୍ଦିର ଲକୁଳୀଶ ସଂପ୍ରଦାୟର ମନ୍ଦିର ଓ ଏହାର ଦ୍ୱାର ବନ୍ଧରେ ଲକୁଳୀଶ ଶିବଙ୍କର ମୂର୍ତ୍ତି ଖୋଦିତ ହୋଇଅଛି । ଲକୁଳୀଶ ଶିବଙ୍କ ହାତରେ ଲଗୁଡ ବା ଗଦା ରହିଥିବାର ଦେଖାଯାଏ । ଲକୁଳ, ଲକୁଡ଼, ଲଗୁଡ଼, ଲକୁଳ, ଲଗୁଡ଼, ନକୁଳ ଆଦି ଶବ୍ଦ ସମାର୍ଥପର୍ଯ୍ୟାୟବାଚୀ । ନୟାଗଡ଼ର ଶରଣକୂଳସ୍ଥ ଶିବଙ୍କ ନାମ ଲଦୁକେଶ୍ୱର । ଲଦୁକେଶ୍ୱର ଶବ୍ଦ ଲଗୁଡେଶ୍ୱର ଶବ୍ଦର ବିପରିଣାମ ମାତ୍ର (ଲଗୁଡେଶ୍ୱର> ଲକୁଡେଶ୍ୱର> ଲଦୁକେଶ୍ୱର) ।

ଲିଙ୍ଗ ଶିବଙ୍କର ପ୍ରତୀକ । ଲଗୁଡ଼ (ବାଡ଼ି, ସ୍ତମ୍ଭ) ଲିଙ୍ଗର ପ୍ରତୀକ ରୂପେ ମଧ୍ୟ ପୂଜିତ ହୋଇଥାଏ । ଶିବଙ୍କୁ ଦଣ୍ଡ ମହାପ୍ରଭୁ ରୂପେ ପୂଜା କରାଯାଏ ଓ ଦଣ୍ଡ ନାଟରେ ଦଣ୍ଡ ବା ବାଡ଼ି ହେଉଛି ଲିଙ୍ଗ ରୂପୀ ଶିବଙ୍କର ପ୍ରତୀକ । ପୁରୀ ମନ୍ଦିରରେ ପୂଜିତ 'ସୁଦର୍ଶନ' ସ୍ତମ୍ଭ ରୂପେ ବିରାଜିତ । ଏହି ସ୍ତମ୍ଭ ବା ଲଗୁଡ଼ ଶିବଙ୍କର ଆୟୁଧ । ସମ୍ଭବତଃ ପୁରୀ ମନ୍ଦିରର ସୁଦର୍ଶନ ଏକଦା ଶିବରୂପୀ ବଳଭଦ୍ରଙ୍କର ଆୟୁଧ ରୂପେ ଅଥବା ସ୍ୱୟଂ ଶିବ ରୂପେ ପୂଜା ପାଉଥିଲେ ।

ଶିବ ହଳୀ, ହଳାୟୁଧ ଭାବରେ ଭାରତର ବିଭିନ୍ନ ସ୍ଥାନରେ ପରିକଳ୍ପିତ ହୋଇଥାଆନ୍ତି । (୩୦) ଓଡ଼ିଶାରେ ମଧ୍ୟ ବିଭିନ୍ନ ସ୍ଥାନରେ ଶିବ ଲାଙ୍ଗଳେଶ୍ୱର ବା କୃଷକ (ହଳୀ) ରୂପେ ପରିକଳ୍ପିତ ହୋଇଅଛନ୍ତି ।

ଶିବଙ୍କର ଭୂଷଣ ହେଉଛି ନାଗ । ବଳଭଦ୍ରଙ୍କ ମସ୍ତକରେ ସପ୍ତଫଣା ନାଗର ମୁକୁଟ ରହିଛି । ନାଗ ଜାତି (ଆଦିବାସୀ ଜାତି ବିଶେଷ) ନାଗ (ଶିବଙ୍କ ଭୂଷଣ) କୁ ଶିବ ରୂପେ ପୂଜା କରୁଥିଲେ । ବଳଭଦ୍ର ଏହି ନାଗ ଜାତିର ଉପାସ୍ୟ ଦେବତା ଥିଲେ ବୋଲି ଅନୁମାନ କରାଯାଇ ପାରେ । (୩୧)

ଶିବଙ୍କ ଏକ ନାମ ହେଉଛି ରୁଦ୍ର । 'ରୁଦ୍ର' ଶବ୍ଦକୁ 'ରୁଧିର' ଶବ୍ଦ ସହିତ ସଂପୃକ୍ତ କରଯାଇ ପାରେ । 'ରୁଧିର' ଶବ୍ଦର ଅର୍ଥ ହେଉଛି 'ରକ୍ତ' । ଶିବଙ୍କୁ ରକ୍ତ ବର୍ଣ୍ଣ ବିଶିଷ୍ଟ ଦେବତା ଭାବରେ ତନ୍ତ୍ର ସାହିତ୍ୟରେ ସ୍ତୁତି କରାଯାଇଛି ଯଥା :—

"ବନ୍ଦେ ସିନ୍ଦୂରବର୍ଣ୍ଣଂ ମଣିମୁକୁଟ ଲସଚ୍ଚାରୁ ଚନ୍ଦ୍ରାବତଂସଂ
ଭାଳୋଦ୍ୟନ୍ନେତ୍ରମୀଶଂ ସ୍ମିତମୁଖକମଳଂ ଦିବ୍ୟଭୂଷାଙ୍ଗରାଗମ୍ ।" (୩୨)

ପୁରୀ ମନ୍ଦିରର ବଳଭଦ୍ରଙ୍କୁ ଶିବ ରୂପେ କଳ୍ପନା କରାଯାଇ ତାହାଙ୍କୁ ଅରୁଣ ରୂପୀ ବା ରକ୍ତବର୍ଣ୍ଣ ବିଶିଷ୍ଟ ଦେବତା ରୂପେ ବନ୍ଦନା କରାଯାଇଅଛି ଯଥା:—

"ନମସ୍ତେ ଅରୁଣ ରୂପ ତୋହର ଲୋଚନା
ନମସ୍ତେ ଦୁର୍ଗତି ଦୁଃଖ ଭଞ୍ଜନେ ସୁମନା ।" (୩୩)

କୋଣାର୍କ ମନ୍ଦିରସ୍ଥ ଏକ ମୂର୍ତ୍ତି ଫଳକରେ ଶିବଲିଙ୍ଗ, ଜଗନ୍ନାଥ ଓ ମହିଷାମର୍ଦ୍ଦିନୀ ଦୁର୍ଗାଙ୍କୁ ଦେଖିବାକୁ ମିଳେ । ଏଠାରେ ଦୁର୍ଗା ହେଉଛନ୍ତି ସୁଭଦ୍ରା ଓ ଶିବଲିଙ୍ଗ ହେଉଛନ୍ତି ବଳଭଦ୍ର । ପୁରୀ ଜଗନ୍ନାଥ ମନ୍ଦିରସ୍ଥ ଭୋଗମଣ୍ଡପର ଉତ୍ତର-ପୂର୍ବ କୋଣରେ ଉପରକୁ ଥିବା ଏକ ଛୋଟିଆ ଫଳକରେ ଶିବ ଲିଙ୍ଗ, ଦୁର୍ଗା ଓ ଜଗନ୍ନାଥଙ୍କର ମୂର୍ତ୍ତି ରହିଛି । ଏଠାରେ ମଧ୍ୟ ଶିବଲିଙ୍ଗ ହେଉଛନ୍ତି ବଳଭଦ୍ର ।

ପ୍ରାଚୀନ ଓଡ଼ିଆ ସାହିତ୍ୟରେ ବଳଭଦ୍ରଙ୍କୁ ଶେଷଦେବ ଓ ଶିବ ଭାବରେ ବର୍ଣ୍ଣନା ଓ ବନ୍ଦନା କରାଯାଇଥିବାର ଦୃଷ୍ଟାନ୍ତ ପ୍ରଚୁର । ଯଥା :—

(କ) "ନମସ୍ତେ ଧବଳ ନୀଳ ରୂପ ନୀଳାମ୍ବର
ନମସ୍ତେ ଅନନ୍ତ ରୂପ ଦେବ ହଳଧର
ନମସ୍ତେ ହେ କାମପାଳ ଅନନ୍ତ-ମଣ୍ଡଳି
ନମସ୍ତେ ସପତ ଶଯ୍ୟା ଶପତ କୁଣ୍ଡଳୀ

(ଖ) ବଳରାମ ବୋଲିଣ ଯେବଣ ନାମ ହୋଇ
ପ୍ରତକ୍ଷେ ସଦାଶିବ କପିଳାସ ବାସୀ ସେହି । (୩୪)

(ଗ) "ଏବେ ଏକାମନ ହୋଇ ଶୁଣ ହେ ଶଙ୍କର
ନୀଳାଦ୍ରିରେ ହେବି ମୁହିଁ ବୌଦ୍ଧ ଅବତାର ।
ବଳଭଦ୍ର ରୂପେ ତୁମ୍ଭେ ବିଷ୍ଣୁ ମୂର୍ତ୍ତି ହୋଇ
ସୁଭଦ୍ରା ରୂପରେ ତହିଁ ଆଦ୍ୟା ଥିବ ରହି ।" (୩୬)

(ଘ) "ଜଗନ୍ନାଥ ରୂପ ଗୋଟି ସତ ବିଷ୍ଣୁ ସହି
ବନ୍ଧାଟି ସୁଭଦ୍ରା ଦେବୀ ମଧ୍ୟେ ଛନ୍ତି ରହି ।
ହରି ହଳଧର ମନ ତ୍ରି ମାୟା ପୁରୁଷ
କିଛି ନ ଜାଣନ୍ତି ସଦା କାଳରେ ଉଦାସ ।
ଅନନ୍ତଟି ବଳଦେବ ଶୁଣ ହୋ ସୁଜନ
ଆଦିଶକ୍ତି ସୁଭଦ୍ରାଟି ବିଜୟ ମଧ୍ୟେଣ ।" (୩୭)

(ଙ) "ଯେ କାଳେ ବ୍ରହ୍ମା ବିଷ୍ଣୁ ହର
ଜାତ ହୋଇଲେ ବ୍ରହ୍ମାଣ୍ଡର ।
ବ୍ରହ୍ମା ରହିଲେ ପୃଥ୍ୱୀ ଘାପି
ବିଷ୍ଣୁ ରହିଲେ ସର୍ବ ବ୍ୟାପି ।
ରୁଦ୍ର ରହିଲେ ଯୋଗ ମତେ
× × ×
ସେ ରୁଦ୍ର ବଳଭଦ୍ର ରୂପ
ଅଟନ୍ତି ଅନନ୍ତ ସ୍ୱରୂପ ।" (୩୮)

## ବଳଭଦ୍ରଙ୍କ ତାତ୍ତ୍ୱିକ ବ୍ୟାଖ୍ୟା

ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ପଞ୍ଚସଖାଯୁଗୀୟ କବିମାନେ ଉପନିଷଦ ବର୍ଣ୍ଣିତ 'ଓଁ'କାର (ଅ-ଉ ମ) ସହିତ ସଂଯୁକ୍ତ କରିଛନ୍ତି । ଉପନିଷଦ୍ ମାନଙ୍କରେ 'ଓଁ'କାରକୁ ସମସ୍ତ ସୃଷ୍ଟିର ମୂଳ ରୂପେ ନିର୍ଣ୍ଣିତ କରାଯାଇଅଛି । ମାଣ୍ଡୁକ୍ୟ ଉପନିଷଦ୍‌ରେ ଲେଖାଅଛି "ସର୍ବଂ ଓଁକାର ଏବଂ" ଏବଂ ଛାନ୍ଦୋଗ୍ୟୋପନିଷଦ୍‌ରେ ଲେଖାଅଛି "ଓଁମିତି ଅକ୍ଷରମିଦଂ ସର୍ବମ୍" ।

ପଞ୍ଚସଖା ଯୁଗୀୟ ସାହିତ୍ୟରେ ଅନେକତ୍ର ବଳଭଦ୍ରଙ୍କୁ ଓଁ' ରୂପେ ଗ୍ରହଣ କରାଯାଇଅଛି ଓ ତାଙ୍କଠାରୁ ଜଗତର ସୃଷ୍ଟି ବୋଲି ଦର୍ଶାଯାଇଅଛି । ରାଧାମୃତ ଗୀତାରେ ଅଛି–

"ଏମନ୍ତ ସ୍ଥାନରେ ଥବା ମନ କଲି ଇଛା
ସୃଷ୍ଟି ଲୀଳା କରିବାକୁ ହୋଇଲା ମୋ ବାଞ୍ଛା ।
ବାଞ୍ଛାରୁ କଳ୍ପନା ମୋର ବାହାର ହୋଇଲା
ଶବଦ ସ୍ୱରୂପ ଯାଇ ଜଳରେ ବୁଡ଼ିଲା ।

× × ×

ଜଳ ଅଛି ଶୂନ୍ୟ ଅଛି ନାହିଁ ସ୍ଥଳ କୂଳ
ଜଳର ଭିତରେ ଦେବୀ ହୁଏ ଟଳ ଟଳ ।
ମନେ ବିଚାରନ୍ତି କାହିଁ କରିବା ବିଶ୍ରାମ
ମୋତେ ରହିବାକୁ ଆଉ ନାହିଁ କେଉଁଣେ ସ୍ଥାନ ।
ଏତେ ବିଚାରିଣ ଦେବୀ ହୁଁକାର ଯେ କଲେ
ନାଭି କମଳରୁ ଏକ ଭ୍ରମ ଉପାଡ଼ିଲେ ।
ହୁଁକାର କରନ୍ତେ ସେ ଯେ ଓଁକାର ହୋଇଲା
ଓଁକାର ବୋଲିଣ ନାମ ଏହି ରୂପେ ହେଲା ।
ଘୋର ନାଦ କରି ଦେବୀ ଜଳରେ ପଡ଼ିଲେ
ଏକାର୍ଣ୍ଣବ ଜଳ ରସାତଳରେ ଭେଦିଲେ ।
ସେ ରେମ ଉପରେ ଦେବୀ ବସିଲେକ ଯହୁଁ
ଟଳମଳ ରେମାବଳୀ ହୋଇଲେକ ତହୁଁ ।
ତାହା ଦେଖି ଯୋଗମାୟା ସ୍ତୁକଲ୍ୟାଣ କଲେ
ବଜ୍ର ହୁଅ ବୋଲିଣ ଅଭୟ ବର ଦେଲେ ।
ବର ପାଇ ରସାବଳୀ ବଜ୍ର ଯେ ହୋଇଲା
ଯୋଗମାୟା ଅଙ୍ଗେ ଯେ ଲିଙ୍ଗ ରୂପେ ଭେଦିଲା ।

× × ×

ବୋଇଲେ ମାଗେ ଯେବେ ଦେବୁ ବର
ବେଦ ଶାସ୍ତ୍ର ମନ୍ତ୍ରରେ ତୁ ଆଗେ ମୋତେ ବର ।
ଓଁକାର ବୋଲିଣ ଆଗେ ବେଦରେ ବୋଲିବେ
ମୋତେ ନ ବୋଇଲେ ବେଦ ଶୁଦ୍ଧ ଯେ ନୋହିବେ ।
ତେଣୁ କରି ବିରାଟ ଯେ ହେଉ ମୋର ନାମ

× × ×

ତେଣୁ କରି ବଳଭଦ୍ର ନାମ ମୋର ହେଉ ।
ମୋର ଶିରେ ଅର୍ଦ୍ଧମାତ୍ରା ରୂପେ ତହିଁ ଥିବୁ
ତୋହ ପରେ ଲିଙ୍ଗ ରୂପେ ମୋତେ ତୁ ରଖିବୁ ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ସମସ୍ତ
ମୋର ଲିଙ୍ଗ ଶରୀରକୁ କରିଥିବୁ ଜାତ ।" (୩୯)

ସେହିପରି ଯଶୋବନ୍ତ ଦାସଙ୍କ ପ୍ରେମ ଭକ୍ତି ବ୍ରହ୍ମ ଗୀତାରେ ଲେଖାଅଛି–

"ଦେଖ ଏ ରତ୍ନ ସିଂହାସନ । କୋଟିଏ ବ୍ରହ୍ମା ବିଷ୍ଣୁମାନ
× ×
ଗ୍ରରି ପାରୁଶେ ବେଦ ପୂର୍ଣ । ପାବଛ ସ୍ୱରୂପରେ ଜାଣ
ଉପରେ ରତ୍ନମୟ ବେଦୀ । ଅଛି ବ୍ରହ୍ମାଣ୍ଡ ଖଣ୍ଡ ଭେଦି
ଓଁକାର ବ୍ରହ୍ମ ବିନ୍ଦୁ ସେହି । ଅନନ୍ତ ଶେଷ ଦେବ ସେହି
× ×
ଡାହାଣେ ବଳଭଦ୍ର ରୂପ । ଯେହି ସେ ବିରାଟ ସ୍ୱରୂପ
ଅନନ୍ତ ଅଙ୍ଗ ଏ ପ୍ରଛନ୍ନ । ଓଁକାର ହ୍ରୀଁ ଅଙ୍ଗ ଜନମ ।"

ଜଗନ୍ନାଥ ଦାସ 'ଏକାକ୍ଷର ଉଉର' କବିତାର ଲେଖିଛନ୍ତି–

"ଓମତି ଯେ ଏକାକ୍ଷର ପ୍ରକଟ ନୀଳ କନ୍ଦର
ପ୍ରଣବ ସହିତେ କ୍ଷେତ୍ରବର ହୋଇଛି

ଅର୍ଦ୍ଧମାତ୍ରା ଊର୍ଦ୍ଧ୍ବେ ବିଜେ ବିନ୍ଦୁ ଦାରୁବ୍ରହ୍ମ ସେ ଯେ
ପରଂବ୍ରହ୍ମ ବ୍ୟାପିଣ ଅଖିଳ ମୋହୁଛି
ଅକାର ଉକାର ମ କାର
ଋକ୍ ସାମ ଯଜୁ ଅଥର୍ବ ପ୍ରଣବାକ୍ଷର ।
ମହାଘଟ ବିଶ୍ୱଘଟ ଏ ବିଘଟ୍ ସେ ବିଘଟ
ବିଘଟୁ ଅଖିଳ କୋଟି ହୁଏ ପ୍ରକଟ
ସ୍ଥାବର ଜଙ୍ଗମ କୀଟ ପତଙ୍ଗାଦି ଯେତେ ଘଟ
ତହିଁ ଜୀବ ବଳଦେବ ଶ୍ରେଷ୍ଠ କନିଷ୍ଠ
ଜଗନ୍ନାଥ ପରମ ରୂପୀ
ପ୍ରକୃତି ଅଂଶେ ସୁଭଦ୍ରା ଅଶେଷ ବ୍ୟାପି ।"

ଏହା ଛଡ଼ା ଚତୁର୍ଦ୍ଧା ମୂର୍ତ୍ତି ଏକ ମୂର୍ତ୍ତିର ଭିନ୍ନ ଭିନ୍ନ ରୂପ ବୋଲି ବିଭିନ୍ନ ସ୍ଥାନରେ ଉଲ୍ଲେଖ ରହିଛି । ତହିଁରୁ ପ୍ରତିପନ୍ନ ହୁଏ, ଯେ ଜଗନ୍ନାଥ, ସେ ସୁଭଦ୍ରା, ସେ ସୁଦର୍ଶନ ଓ ସେ ମଧ୍ୟ ବଳଭଦ୍ର । ଯଥା :—

"ଯେଉଁ ପ୍ରଭୁ ଜଗନ୍ନାଥ ତହିଁ ବିନା ସବୁ ତତ୍ତ୍ୱ
ଶୁକ୍ଳ ଗଉର ରଙ୍ଗ କଳା ବୋଲିଟି
ଏମନ୍ତେ ଚାରି ହୋଇଲେ ଅପରେ ଚାରି କହିଲେ
ଶ୍ରୀ ନୀଳ କନ୍ଦରେ ବିଜେ ଚତୁର୍ଦ୍ଧାମୂର୍ତ୍ତି ।" (୪୦)

× × ×

ଶ୍ୱେତ ପୀତ ରକ୍ତ ନୀଳ ଚାରି
ଚାରି ବର୍ଣ୍ଣ ଏକ କଳେବର ଧାରୀ, ଶ୍ରୀ ଜଗନ୍ନାଥ ।" (୪୧)

ସୃଷ୍ଟିତତ୍ତ୍ୱ ମଧ୍ୟରେ ବିଷ୍ଣୁଙ୍କର ପ୍ରଧାନ, ପୁରୁଷ ଓ କାଳ ଏହି ତିନୋଟି ରୂପ ସଶ୍ଳିଷ୍ଟ । ପ୍ରଧାନ ହେଉଛି ପ୍ରକୃତିର ନାମାନ୍ତର । ଅନେକ ପଣ୍ଡିତ ଜଗନ୍ନାଥଙ୍କ ବିଷ୍ଣୁଙ୍କର 'କାଳ' ସ୍ୱରୂପ, ସୁଭଦ୍ରାଙ୍କୁ ବିଷ୍ଣୁଙ୍କର 'ପ୍ରକୃତି' ସ୍ୱରୂପ ଓ ବଳଭଦ୍ରଙ୍କୁ ବିଷ୍ଣୁଙ୍କର 'ପୁରୁଷ' ସ୍ୱରୂପ ଭାବରେ କଳ୍ପନା କରିଥାଆନ୍ତି । (୪୨)

କେହି କେହି କାଳଚକ୍ରର ବିଭିନ୍ନ ଅବସ୍ଥା ରୂପେ ଚତୁର୍ଦ୍ଧା ମୂର୍ତ୍ତିଙ୍କୁ ଗ୍ରହଣ କରିଥାନ୍ତି–

''କୃଷ୍ଣା କୃଷ୍ଣୋ ଜଗନ୍ନାଥଃ ଘସ୍ରଃ ଶୁଭ୍ରୋ ବଳାନ୍ତକଃ
ସାୟଂ ସୁଭଦ୍ରା ହାରିଦ୍ରା କାଳଚକ୍ରଃ ସୁଦର୍ଶନଃ ।''

ଅର୍ଥାତ୍ କୃଷ୍ଣବର୍ଣ୍ଣର ଜଗନ୍ନାଥ ହେଉଛନ୍ତି ରାତ୍ରି, ଶୁକ୍ଳବର୍ଣ୍ଣର ବଳଭଦ୍ର ହେଉଛନ୍ତି ଦିବସ, ହରିଦ୍ରା ବର୍ଣ୍ଣର ସୁଭଦ୍ରା ହେଉଛନ୍ତି ସନ୍ଧ୍ୟା ଓ ସୁଦର୍ଶନ ହେଉଛନ୍ତି ସନ୍ଧ୍ୟା ଓ ସୁଦର୍ଶନ ହେଉଛନ୍ତି କାଳଚକ୍ରର ପ୍ରତୀକ ।

ଜଗନ୍ନାଥଙ୍କୁ କ୍ଲୀଁ ବୀଜ, ସୁଭଦ୍ରାଙ୍କୁ ହ୍ରୀଁ ବୀଜ ରୂପେ ଗ୍ରହଣ କରାଯାଇଥିଲାବେଳେ ବଳଭଦ୍ରଙ୍କୁ ଶ୍ରୀଁ ବୀଜ ରୂପେ ଗ୍ରହଣ କରାଯାଇଅଛି । ଯଥା :–

''ଶ୍ରୀଁକାର ବଳଦେବ ଜାଣ । ସୁଭଦ୍ରା ହ୍ରୀଁ ବୀଜ ପ୍ରମାଣ ।'' (୪୩)

## ବଳଭଦ୍ରଙ୍କ ମୂର୍ତ୍ତି ତତ୍ତ୍ୱ

ଜଗନ୍ନାଥ ମନ୍ଦିର ତ୍ରିମୂର୍ତ୍ତି ଓ ଚତୁର୍ଦ୍ଧା ମୂର୍ତ୍ତି ଗଠନ ସମ୍ପର୍କରେ ବିଭିନ୍ନ ପୁରାଣ ଓ କିମ୍ବଦନ୍ତୀରେ କୌତୂହଳପୂର୍ଣ୍ଣ ବିବରଣମାନ ରହିଅଛି । ସ୍କନ୍ଦପୁରାଣ ଅନୁଯାୟୀ ବିଶ୍ୱକର୍ମା ବୁଢ଼ା ବଢ଼େଇ ବେଶରେ ଆସି ୧୫ ଦିନରେ ୪ଟି ମୂର୍ତ୍ତି ଗଢ଼ିଥିଲେ । ନିର୍ଦ୍ଦିଷ୍ଟ ଦିନ (୨୧ ଦିନ) ପୂର୍ବରୁ ରାଣୀଙ୍କ ଅନୁରୋଧରେ ରାଜା ମନ୍ଦିରର କବାଟ ଖୋଲିଦେବାରୁ ସେମାନେ ଅପୂର୍ଣ୍ଣ ରହିଗଲେ । (୪୪) ବ୍ରହ୍ମ ପୁରାଣ ଅନୁଯାୟୀ ବିଷ୍ଣୁ ଓ ବିଶ୍ୱକର୍ମା ଦୁଇଜଣ ବ୍ରାହ୍ମଣ ବେଶରେ ଆସି ତ୍ରିମୂର୍ତ୍ତି ଗଠନ କରିଥିଲେ । (୪୫) ସ୍କନ୍ଦ ପୁରାଣ ଅନୁଯାୟୀ ଜଗନ୍ନାଥ ଓ ବଳଭଦ୍ର ହେଉଛନ୍ତି ଚତୁର୍ଭୁଜ । (୪୬) ବ୍ରହ୍ମପୁରାଣ ଅନୁଯାୟୀ ଜଗନ୍ନାଥ ଓ ବଳଭଦ୍ର ଦ୍ୱିଭୁଜ । (୪୭)

ବ୍ରହ୍ମ ପୁରାଣର ବର୍ଣ୍ଣନା ଅନୁଯାୟୀ ବଳଭଦ୍ର ହେଉଛନ୍ତି ଶୁଭ୍ର ବର୍ଣ୍ଣ । ତାଙ୍କର ଗୋଟିଏ ଭୁଜରେ ଗଦା, ଅନ୍ୟ ଭୁଜରେ ମୂଷଳ । ଅନନ୍ତ ବାସୁଦେବ ମନ୍ଦିରର ବଳଦେବ ମୂର୍ତ୍ତି ସହିତ ଏହି ବର୍ଣ୍ଣନା ସାମଞ୍ଜସ୍ୟ ରକ୍ଷା କରୁଅଛି । (୪୮

## ଓଡ଼ିଶାରେ ବଳଭଦ୍ର ପୂଜାର ପ୍ରାଚୀନତା

ବୌଦ୍ଧ ତ୍ରିରତ୍ନ ମଧ୍ୟରୁ 'ସଙ୍ଘ' ରତ୍ନ ଭାବରେ ଖ୍ରୀ: ପୂ: ଦ୍ୱିତୀୟ ଶତାବ୍ଦୀରୁ ଓ ସଙ୍କର୍ଷଣ ଭାବରେ ଖ୍ରୀ: ପୂ: ଦ୍ୱିତୀୟ ଶତାବ୍ଦୀରୁ ବଳଭଦ୍ର ଓଡ଼ିଶାରେ ପୂଜା ପାଉଥିଲେ ବୋଲି ଅନୁମାନ କରାଗଲେ ମଧ୍ୟ ବଳଭଦ୍ର ବା ବଳଦେବ ନାମରେ ତାଙ୍କର ପୂଜା ୮ମ ଶତାବ୍ଦୀରୁ ପୂର୍ବବର୍ତ୍ତୀ ନୁହେଁ । ୮ମ ଶତାବ୍ଦୀର ନେଉଳପୁର ଦାନ ପଟା ସର୍ବ ପ୍ରଥମେ ବଳଭଦ୍ର ଓ ହଳଧର ଦେବତା ଓଡ଼ିଶାରେ ପୂଜା ପାଉଥିବାର ସୂଚନା ଦିଏ । ଏକାଦଶ ଶତାବ୍ଦୀରେ ରଣ ଭଞ୍ଜ ୧ମ ବିଷ୍ଣୁ, ଶିବ ଓ ସ୍ତମ୍ଭେଶ୍ୱରୀଙ୍କର ପୂଜା କରୁଥିଲେ । ସମ୍ଭବତଃ ସେତେବେଳେ ଜଗନ୍ନାଥ ବିଷ୍ଣୁ ରୂପେ, ବଳଭଦ୍ର ଶିବ ରୂପେ ଓ ସୁଭଦ୍ରା ସ୍ତମ୍ଭେଶ୍ୱରୀ ରୂପେ ପୂଜା ପାଉଥିଲେ । (୪୯)

ବୁଦ୍ଧ ରୂପେ ପରିକଳ୍ପିତ ଜଗନ୍ନାଥ ବୈଷ୍ଣବାୟିତ ହେବା ପରେ ବିଷ୍ଣୁ, କୃଷ୍ଣ ପ୍ରଭୃତିଙ୍କର ସମପର୍ଯ୍ୟାୟବାଚୀ ହୋଇଗଲେ । ଜଗନ୍ନାଥ ଏକାଦଶ-ଦ୍ୱାଦଶ ଶତାବ୍ଦୀ ବେଳକୁ ଓଡ଼ିଶାରେ ବୈଷ୍ଣବ ଧର୍ମର ମୁଖ୍ୟ ଦେବତା ଭାବେ ପ୍ରସିଦ୍ଧି ଲାଭ କରିଥିଲେ । ଏହି ସମୟଠାରୁ କେବଳ ବୈଷ୍ଣବମାନେ ନୁହନ୍ତି ଶୈବ ଓ ଶାକ୍ତମାନେ ମଧ୍ୟ ଜଗନ୍ନାଥଙ୍କୁ ନିଜର କରି ଦେଖାଇବା ପାଇଁ କମ୍ ପ୍ରଚେଷ୍ଟା କରିନାହାନ୍ତି । ସ୍ୱ ସ୍ୱ ଧର୍ମର ପ୍ରଧାନ ଉପାସ୍ୟ ଦେବତାଙ୍କ ସହିତ ଜଗନ୍ନାଥଙ୍କୁ ଏକତ୍ର ପ୍ରତିଷ୍ଠା କରି ଉପାସନାର ଧାରା ବଦଳାଇବାକୁ ମଧ୍ୟ ବହୁ ଯତ୍ନ କରାଯାଇଛି । (୫୦) କୋଣାର୍କ ମନ୍ଦିରରେ ଖୋଦିତ ଶିବଲିଙ୍ଗ ଓ ମହିଷାସୁର-ମର୍ଦ୍ଦିନୀ ମୂର୍ତ୍ତି ସହିତ ଜଗନ୍ନାଥ ମୂର୍ତ୍ତିର ଏକତ୍ର ସମାବେଶ ଏହାର ଏକ ଉଜ୍ଜ୍ୱଳ ପ୍ରମାଣ ।

ପ୍ରଥମେ ବଳଭଦ୍ର ଶିବ ଭାବରେ ଓ ସୁଭଦ୍ରା ଦୁର୍ଗା (ଶକ୍ତି) ଭାବରେ ପୂଜା ପାଉଥିବା ଅନୁମାନ କରାଯାଏ । ଓଡ଼ିଶାରେ ବୈଷ୍ଣବ, ଶୈବ ଓ ଶାକ୍ତ ଧର୍ମ ଏକତ୍ର ପୂଜା ପାଉଥିଲେ । ଓଡ଼ିଶାରେ ବିଷ୍ଣୁଙ୍କର ଅବତାର ଭାବରେ ଜଗନ୍ନାଥ ପ୍ରସିଦ୍ଧି ଲାଭ କରିଥିଲେ । ତେଣୁ ଜଗନ୍ନାଥ, ଶିବଲିଙ୍ଗ ଓ ଦୁର୍ଗା (ଶକ୍ତି) ଏକତ୍ର ପୂଜା ପାଉଥିଲେ । କ୍ରମଶଃ ଶୈବଧର୍ମ ଓ ଶାକ୍ତଧର୍ମ ଉପରେ ବୈଷ୍ଣବ ଧର୍ମ

ପ୍ରାଧାନ୍ୟ ଅର୍ଜନ କରିବାରୁ ଶିବ ଓ ଦୁର୍ଗାଙ୍କୁ ମଧ୍ୟ ବୈଷ୍ଣବାୟିତ କରି ଦିଆଗଲା ଅର୍ଥାତ୍ ଶିବ ବଳରାମ ବଳଦେବ ଓ ବଳଭଦ୍ର ଭାବରେ ଜଗନ୍ନାଥ (ବିଷ୍ଣୁ, କୃଷ୍ଣ)-ଙ୍କର ଭାଇ ହୋଇଗଲେ ଓ ଦୁର୍ଗା ସୁଭଦ୍ରା ଭାବରେ ଜଗନ୍ନାଥ ଓ ବଳଭଦ୍ର (ବଳରାମ, ବଳଦେବ)ଙ୍କର ଭଉଣୀ ହୋଇଗଲେ । ତିନିହେଁ ବୈଷ୍ଣବ ଦେବତା ଭାବରେ ପୂଜିତ ହେବାକୁ ଲାଗିଲେ । ସମ୍ଭବତଃ ଏ ତିନି ମୂର୍ତ୍ତିଙ୍କର ବୈଷ୍ଣବାୟିତ ରୂପ ପରିକଳ୍ପନା ଷୋଡ଼ଶ ଶତାବ୍ଦୀ ବେଳକୁ ଦୃଢୀଭୂତ ହୋଇଥିଲା ।

ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ସମ୍ପର୍କୀୟ ତଥ୍ୟାବଳୀ ବହୁ ଅନୁମାନ, କଳ୍ପନା, ଗବେଷଣା ଓ ଆଲୋଚନା ସତ୍ତ୍ୱେ ଅଦ୍ୟାପି ରହସ୍ୟାଚ୍ଛନ୍ନ ହୋଇ ରହିଛି ଓ ରହିଥିବ । ଏହି ରହସ୍ୟାଚ୍ଛନ୍ନତା ହିଁ ଜଗନ୍ନାଥ ଚେତନାର ବୈଚିତ୍ର୍ୟ ଓ ବୈଶିଷ୍ଟ୍ୟ ।



## ସଂକେତସୂଚୀ

(୧) ଜଗନ୍ନାଥ ମନ୍ଦିର ଓ ଜଗନ୍ନାଥତତ୍ତ୍ୱ, ପୃ ୨୭-୨୮ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ । (୨) ପଶ୍ଚିମ ଓଡ଼ିଶାର ଲୋକଗୀତ ଓ ସୁଭଦ୍ରା (ପୌରୁଷ, ୧୪ଶ ବର୍ଷ, ୧ମ ସଂଖ୍ୟା, ପୃ ୮)—ପ୍ରହ୍ଲାଦ ପ୍ରଧାନ ।

(୩) The Indian culture, vol xv, No 1-4, p. 97. (୪) O. H. R. J. Vol II, pp. 31-46. (୫) E. I. Vol XXVIII, p.331, (୬) The cult of Jagannath, p14—Dr. K. C. Mishra. (୭) Ibid, p 15. (୮) Ibid, p22, (୯) Dynastic History of Northern India, calcutta, 1931-32, p414 ff—Dr H. C. Roy, (b E. I. Vol XV, No 1, pp. 1-6. (c) History of Orissa, Calcutta 1930-31— R. D. Banerjee. (୧୦) The cult of Jagannath, p.36

(୧୧) ବୃହତ୍ ସଂହିତା, ୫୮ ଅଧ୍ୟାୟ/୩୭ ଶ୍ଳୋକ—ବରାହ ମିହିର, (୧୨) ଓଡ଼ିଶା ଇତିହାସ, ୧ମ ଖଣ୍ଡ. ପୃ ୫୫୬—ଡଃ. ହରେକୃଷ୍ଣ ମହତାବ ।

(୨୩) ତତ୍ରୈବ, ପୃଷ୍ଠା ୫୮୦-୫୮୪, (୨୧) ବୌଦ୍ଧ ସଙ୍ଗସଙ୍ଗରେ ସୁଭଦ୍ରା ପୌରୁଷ' ୨୪ଶ ବର୍ଷ, 'ମ ସଂଖ୍ୟା, ପୃ ୮-୯—ଅଧ୍ୟାପକ ପ୍ରହ୍ଲାଦ ପ୍ରଧାନ ।

(୨୪) The History of Medieval Vaishnavism in Orissa, p. 4-Prabhat Mukherjee, ଓଡ଼ିଶା ଇତିହାସ, ୨ୟ ଖଣ୍ଡ, ପୃ୫୫୭ । ୨୬ ତତ୍ରୈବ ।

(୨୬) Early History of the Vaisnava sect, p. 180-Dr. H. C. Ray Chaudhury, (୨୮) China stone Inscription of Yajnashree Satakarni (୨୯) The History of Medieval Vaishnavism in Orissa, pp 5-7. (୨୦) The Nasic Cave Inscription, E. I. Vol VII p.60 (୨୧) ବୃହତ୍ ସଂହିତା, LVIII, 36, 37 (୨୨) The History of Medieval Vaishnavism in Orissa, p7.

(୨୩) ଓଡ଼ିଶା ଇତିହାସ, ପୃ ୫୫୯ (୨୪) ବୁଦ୍ଧ ବଳଭଦ୍ର (ସାହିତ୍ୟାୟନ, ପୃ୭—୮)-ପ୍ରହ୍ଲାଦ ପ୍ରଧାନ (୨୫) ତତ୍ରୈବ (୨୬) ଲିଙ୍ଗପୁରାଣ ୭/୩୩. (୨୭) ବାୟୁ ପୁରାଣ ୨୩/୨୮୭ (୨୮) ଲିଙ୍ଗ ପୁରାଣ, ୪୯/୬୫. (୨୯) ଶିବ ପୁରାଣ, ୮/୫, ଲିଙ୍ଗ ପୁରାଣ, ୬/୩୪ ।

(୩୦) Buddhist Survival in Bengal, Law Commemoration Volume, p.78.

(୩୧) ସାହିତ୍ୟାୟନ, ପୃ ୨୬-ପ୍ରହ୍ଲାଦ ପ୍ରଧାନ (୩୨) ତତ୍ରୈବ, ପୃ ୧୪ରେ ଉଦ୍ଧୃତ, (୩୩) ସାରଳା ମହାଭାରତ, ମଧ୍ୟପର୍ବ (୩୪) ତତ୍ରୈବ, (୩୬) ଚିତ୍ତବିନୋଦ ବା ଚିତ୍ତବୋଧ—ଅଚ୍ୟୁତାନନ୍ଦ ଦାସ (୩୭) ମନ୍ମଥ ଚନ୍ଦ୍ରିକା ଅଚ୍ୟୁତାନନ୍ଦ ଦାସ । (୩୮) ପ୍ରେମ ଭକ୍ତି ବ୍ରହ୍ମଗୀତା—ଯଶୋବନ୍ତ ଦାସ । (୩୯) ଓଡ଼ିଆ ସାହିତ୍ୟରେ ଧର୍ମଧାର 'ଡଃ କାହ୍ନୁଚରଣ ମିଶ୍ର) ଗ୍ରନ୍ଥର ପୃ ୧୦୩-୧୦୪ରେ ଉଦ୍ଧୃତ (୪୦) ଏକାକ୍ଷର ପ୍ରଶ୍ନ—ଜଗନ୍ନାଥ ଦାସ (୪୧) ରହସ୍ୟମଞ୍ଜରୀ, ୧/୨୮ ।

(୪୨) Mystecism in the Temple of Jagannath at Pùri (Sadgranth Prachara Sangha, Chhatrapur) Chapter II, p. 21, Chapter III p. 45 Sorvus Servorom.

(୪୩) ଜଗନ୍ନାଥ ଚରିତାମୃତ, ପୃ ୧୯୭–ଦିବାକର ଦାସ (୪୪) ସ୍କନ୍ଦପୁରାଣ ୧୯ଶ ଅଧ୍ୟାୟ, (୪୫) ବ୍ରହ୍ମପୁରାଣ, ଅଧ୍ୟାୟ ୫୮/୬ ଶ୍ଳୋକ ୪୮-୫୪, (୪୬) ସ୍କନ୍ଦ ପୁରାଣ, ଅ ୧୯/୨ଶ୍ଳୋକ ୮ ୧୦, (୪୭) ବ୍ରହ୍ମ ପୁରାଣଃ ଅ ୫୦/ଶ୍ଳୋ ୪୯-୫୨, (୪୮) ଦାରୁ ଦେବତା, ପୃ ୧୫୭ ଡଃ. ବେଣୀ ମାଧବ ପାଢ଼ୀ ।

(୪୯) Orissa in the making, p. 129-B. C. Majumdar.

(୫୦) ଦାରୁଦେବତା, ପୃ ୧୫୪-ଡଃ· ବେଣୀ ମାଧବ ପାଢ଼ୀ ।

